# ଉତ୍କଳ ପ୍ରସଙ୍ଗ

ପୌଷ ୧୯୦୮ ଶକାବ୍ଦ ୪୩ ଭାଗ ୬ ସଂଖ୍ୟା ଜାନୁଆରୀ ୧୯୮୭




**ପ୍ରକାଶକ :** ସୂଚନା ଓ ଲୋକ ସମ୍ପର୍କ ବିଭାଗ,
ଓଡ଼ିଶା ସରକାର, ଭୁବନେଶ୍ୱର

**ମୁଦ୍ରଣ :**
ଓଡ଼ିଶା ସରକାରୀ ମୁଦ୍ରଣାଳୟ, କଟକ

ବାର୍ଷିକ ଦେୟ : ୨୦.୦୦

ପ୍ରତି ଖଣ୍ଡ : ୨.୦୦

# ସୂଚୀପତ୍ର



# ଜନରାଜ୍ୟ ଦିବସ ଉପଲକ୍ଷେ

# ରାଜ୍ୟପାଳଙ୍କ ବାର୍ତ୍ତା

ଓଡ଼ିଶାର ରାଜ୍ୟପାଳ ଶ୍ରୀ ବିଶ୍ୱମ୍ଭର ନାଥ ପାଣ୍ଡେ ୧୯୮୭ ଜନରାଜ୍ୟ ଦିବସ ଉପଲକ୍ଷେ ରାଜ୍ୟବାସୀଙ୍କ ଉଦ୍ଦେଶ୍ୟରେ ନିମ୍ନୋକ୍ତ ବାର୍ତ୍ତା ଦେଇଛନ୍ତି :—

"ଜନରାଜ୍ୟ ଦିବସ ଉପଲକ୍ଷେ ମୁଁ ଓଡ଼ିଶାର ଜନସାଧାରଣଙ୍କୁ ମୋର ହାର୍ଦ୍ଦିକ ଅଭିନନ୍ଦନ ଓ ଶୁଭେଚ୍ଛା ଜ୍ଞାପନ କରୁଛି ।

"୩୭ ବର୍ଷ ତଳେ ଆଜିର ଏହି ଐତିହାସିକ ଦିବସରେ ଆମେ ଆମ ନିଜ ପାଇଁ ସମ୍ବିଧାନ ପ୍ରଣୟନ କରିଥିଲୁ ଏବଂ ଭାରତକୁ ଏକ ସାର୍ବଭୌମ ଗଣତାନ୍ତ୍ରିକ ରାଷ୍ଟ୍ର ଭାବରେ ଘୋଷଣା କରିବା ସଙ୍ଗେ ସଙ୍ଗେ ଏହାର ସମସ୍ତ ନାଗରିକଙ୍କ ପାଇଁ ନ୍ୟାୟ, ସ୍ୱାଧୀନତା, ସାମ୍ୟ ଓ ଭ୍ରାତୃତ୍ୱ ପ୍ରତିଷ୍ଠା ପାଇଁ ନିଷ୍ଠାର ସହ ଶପଥ ନେଇଥିଲୁ । ସମ୍ବିଧାନ ପ୍ରଣେତାଗଣ ଯେଉଁ ଗଣତନ୍ତ୍ରର କଳ୍ପନା କରିଥିଲେ, ତାହା କେବଳ ରାଜନୈତିକ ଗଣତନ୍ତ୍ର ନୁହେଁ । ଜଣେ ସମ୍ବିଧାନ ପ୍ରଣେତା ଯଥାର୍ଥରେ କହିଥିଲେ ଯେ ତାହା ହେଉଛି ସାମାଜିକ ଗଣତନ୍ତ୍ର । ପ୍ରତ୍ୟେକ ନାଗରିକ ବଞ୍ଚିବା ପାଇଁ ସାଧାରଣ ସୁବିଧା ସୁଯୋଗ ନପାଇଲା ଯାଏଁ ଏବଂ ଦାରିଦ୍ର୍ୟ ଓ ଅଜ୍ଞତା ଦୂର ନହେବା ଯାଏଁ ଏଭଳି ଏକ ଗଣତାନ୍ତ୍ରିକ ରାଷ୍ଟ୍ରର ରୂପାୟନ ସଂପୂର୍ଣ୍ଣ ହେବନାହିଁ । ସମ୍ବିଧାନ ପ୍ରଣେତାଙ୍କ ଏହି କଳ୍ପନାକୁ ରୂପାୟନ କରିବା ଉଭୟ କଷ୍ଟସାଧ୍ୟ ଓ ଆହ୍ୱାନ ମୂଳକ । ସମସ୍ତ ଅସୁବିଧା, ଘାତ ପ୍ରତିଘାତ ସତ୍ତ୍ୱେ ବିଗତ ୩୭ ବର୍ଷ ଧରି ସାହସ ଓ ସଂକଳ୍ପର ସହିତ ସମ୍ବିଧାନ ପ୍ରଣେତାମାନଙ୍କର ପରିକଳ୍ପିତ ଲକ୍ଷ୍ୟ ହାସଲ କରିବା ପାଇଁ ଭାରତ ଅଗ୍ରସର ହୋଇ ଚାଲିଛି । ଆମ ଦେଶରେ ବିଭିନ୍ନ କ୍ଷେତ୍ରରେ ଯେଉଁଳି ଉନ୍ନତି ସାଧିତ ହୋଇ ପାରିଛି, ସେଥିପାଇଁ ଆମେ ଯଥାର୍ଥରେ ଗର୍ବିତ ହେବା କଥା । ତଥାପି ଆହୁରି ଅନେକ କିଛି କରିବାର ଅଛି ।

"ସୁଖର କଥା ଯେ ବିଭିନ୍ନ ସମସ୍ୟା ସତ୍ତ୍ୱେ ଦେଶର ଅର୍ଥନୈତିକ ଓ ସାମାଜିକ ବିକାଶ କ୍ଷେତ୍ରରେ ଓଡ଼ିଶାର ଅବଦାନ ବେଶ୍ ଉଲ୍ଲେଖନୀୟ । ପ୍ରକୃତିର ଆଶୀର୍ବାଦରୁ ଆମ ରାଜ୍ୟରେ ପ୍ରଚୁର ଖଣିଜ ସଂପଦ, ସମୃଦ୍ଧ ଜଙ୍ଗଲ, ମୂଲ୍ୟବାନ ଜଳ ସଂପଦ, ପରିଶ୍ରମୀ, ସଚେତନ ତଥା ଶାନ୍ତିପ୍ରିୟ ଲୋକ ଶକ୍ତିର ସମନ୍ୱୟ ଘଟିଛି । ରାଜ୍ୟ ତଥା ରାଜ୍ୟବାସୀଙ୍କ ଉନ୍ନତିକଳ୍ପେ ଏବଂ ସର୍ବୋପରି ଦେଶର ବିକାଶ ସାଧନ ଦିଗରେ ଏ ସମସ୍ତ ସଂପଦର ସର୍ବାଧିକ ଉପଯୋଗ ପାଇଁ ଏହି ରାଜ୍ୟ ଅବିରତ ଉଦ୍ୟମ କରି ଆସିଛି ।

"କୃଷି କ୍ଷେତ୍ରରେ ଶସ୍ୟ ପଦ୍ଧତିର ପରିବର୍ତ୍ତନ, ଆଧୁନିକ ବୈଜ୍ଞାନିକ ପଦ୍ଧତିର ଉପଯୋଗ, ଉନ୍ନତ କୃଷି ଉପକରଣ ଓ ସଂପ୍ରସାରଣ ସେବାର ଆବଶ୍ୟକତାକୁ ନେଇ ଏକ ସମନ୍ୱିତ ଆଭିମୁଖ୍ୟ ଜରିଆରେ କୃଷି କ୍ଷେତ୍ରରେ ଦ୍ରୁତ ଅଗ୍ରଗତି ହୋଇ ପାରିଛି । ଅଧିକ କର୍ମ ସଂସ୍ଥାନ ସୃଷ୍ଟି, ଗ୍ରାମ୍ୟ ଅର୍ଥନୀତିର ପୁନର୍ଗଠନ ଓ ଏକ ନିର୍ଦ୍ଦିଷ୍ଟ ସମୟସୀମା ମଧ୍ୟରେ ଆଞ୍ଚଳିକ ବୈଷମ୍ୟ ଦୂରୀକରଣର ଲକ୍ଷ୍ୟ ନେଇ ଏକ ପ୍ରଗତିଶୀଳ ଶିଳ୍ପନୀତି ପ୍ରଚଳନ କରାଯାଇଛି ଏବଂ ରାଜ୍ୟରେ ଶିଳ୍ପର ପ୍ରଭୂତ ବିକାଶ ଘଟିଛି । ଭାରତର ଶିଳ୍ପ ଉନ୍ନୟନ ବ୍ୟାଙ୍କ, ଅନ୍ୟାନ୍ୟ ବାଣିଜ୍ୟିକ ବ୍ୟାଙ୍କ ତଥା ରାଜ୍ୟ ସରକାରଙ୍କ ବିଭିନ୍ନ ଆନୁଷ୍ଠାନିକ ସଂସ୍ଥା ଜରିଆରେ ରୁଗ୍ଣ ଶିଳ୍ପଗୁଡ଼ିକୁ କାର୍ଯ୍ୟକାରୀ କରିବା ପାଇଁ ବ୍ୟାପକ ଉଦ୍ୟମ କରାଯାଇଛି ଏବଂ ରାଜ୍ୟରେ ଶିଳ୍ପର ଦ୍ରୁତ ପ୍ରସାର ପାଇଁ ଏକ ଅନୁକୂଳ ବାତାବରଣ ସୃଷ୍ଟି କରାଯାଇ ପାରିଛି । କ୍ଷୁଦ୍ର ଓ କାରିଗରୀଭିତ୍ତିକ ଶିଳ୍ପକୁ ମଧ୍ୟ ଯଥୋଚିତ ଗୁରୁତ୍ୱ ଦିଆଯାଇଛି ।

"ଓଡ଼ିଶାର ଜନସଂଖ୍ୟାର ପ୍ରାୟ ଶତକଡ଼ା ୪୦ ଭାଗ ହେଉଛନ୍ତି ହରିଜନ ଓ ଆଦିବାସୀ ଏବଂ ସେମାନଙ୍କର ସାମାଜିକ ଓ ଅର୍ଥନୈତିକ ଉନ୍ନତି ପାଇଁ ରାଜ୍ୟ ସରକାର ବିଶେଷ ଦୃଷ୍ଟି ଦେଉଛନ୍ତି । ହରିଜନ ଓ ଆଦିବାସୀ ପରିବାରଙ୍କୁ ଦାରିଦ୍ର୍ୟ ସୀମାରେଖା ଉର୍ଦ୍ଧ୍ୱକୁ ଆଣିବା ପାଇଁ ବିଭିନ୍ନ ଆୟକାରୀ ପରିକଳ୍ପନା କାର୍ଯ୍ୟକାରୀ କରିବା ଦିଗରେ ବିଶେଷ ଗୁରୁତ୍ୱ ଦିଆଯାଇଛି । ଏସବୁ ମଧ୍ୟରେ ଆଦିବାସୀ ଉପଯୋଜନା, ତଫସିଲଭୁକ୍ତ ଜାତିଙ୍କ ପାଇଁ ଉଦ୍ଦିଷ୍ଟ ସମନ୍ୱିତ ଯୋଜନା, ମାଇକ୍ରୋ ପ୍ରୋଜେକ୍ଟ, ସଂଶୋଧିତ ଅଞ୍ଚଳ ଉନ୍ନୟନ କାର୍ଯ୍ୟକ୍ରମ ଏବଂ ବିଶେଷ ଧରଣର ଶିକ୍ଷା କାର୍ଯ୍ୟକ୍ରମ ଅନ୍ତର୍ଭୁକ୍ତ ।

"ନୂତନ ଜାତୀୟ ଶିକ୍ଷା ନୀତିର ପ୍ରବର୍ତ୍ତନ ସହିତ ସାର୍ବଜନୀନ ପ୍ରାଥମିକ ଶିକ୍ଷା, ପ୍ରୌଢ଼ଶିକ୍ଷା ଭଳି ମାନବ ସମ୍ବଳ ବିକାଶ କାର୍ଯ୍ୟକ୍ରମ ପ୍ରତି ଯଥେଷ୍ଟ ଗୁରୁତ୍ୱ ଦିଆ ଯାଇଛି ।

"୨୦୦୦ ଖ୍ରୀଷ୍ଟାବ୍ଦ ସୁଦ୍ଧା ସମସ୍ତଙ୍କ ପାଇଁ ସ୍ୱାସ୍ଥ୍ୟ ସେବାର ଲକ୍ଷ୍ୟ ହାସଲ ନିମନ୍ତେ ବହୁ ପଦକ୍ଷେପ ଗ୍ରହଣ କରାଯାଇଛି । ସଂକ୍ରାମକ ରୋଗ ତଥା ଅନ୍ଧତ୍ୱର ନିୟନ୍ତ୍ରଣ ଓ ନିରାକରଣ ପ୍ରତି ଅଗ୍ରାଧିକାର ଦିଆଯାଇଛି ।

"ରାଜ୍ୟ ସରକାର ଯଥାର୍ଥରେ ଜଳସେଚନ ଓ ବିଦ୍ୟୁତ୍ ଉତ୍ପାଦନ ପ୍ରତି ବିଶେଷ ଗୁରୁତ୍ୱ ଦେଉଛନ୍ତି । ଅସଂପୂର୍ଣ୍ଣ ଯୋଜନାକୁ ସଂପୂର୍ଣ୍ଣ କରିବା ପାଇଁ ବିଶେଷ କରି ଆଦିବାସୀ ଓ ମରୁଡ଼ି ପ୍ରବଣ ଅଞ୍ଚଳରେ ନୂଆ ଯୋଜନାମାନ କାର୍ଯ୍ୟକାରୀ କରିବା ପାଇଁ ପର୍ଯ୍ୟାପ୍ତ ଅର୍ଥ ବିନିଯୋଗ କରାଯାଇଛି ।

"ଆମେ ବହୁ ଉଲ୍ଲେଖନୀୟ ସଫଳତା ହାସଲ କରି ପାରିଛୁ, ତଥାପି ଆକାଂକ୍ଷିତ ଲକ୍ଷ୍ୟ ହାସଲ ପାଇଁ ଆମକୁ ଆହୁରି ଅନେକ କିଛି କରିବାକୁ ପଡ଼ିବ । ମୋର ଦୃଢ଼ ବିଶ୍ୱାସ ଯେ ସାହସ, ନିଷ୍ଠା ଓ କଠୋର ଶ୍ରମ ଦ୍ୱାରା ଆମେ ଏହି ଲକ୍ଷ୍ୟ ହାସଲ କରି ପାରିବୁ । ଏକ ଦୃଢ଼, ସକ୍ରିୟ ଓ ସମୃଦ୍ଧିଶାଳୀ ଓଡ଼ିଶା ତଥା ଭାରତ ଗଠନ କରିବା ପାଇଁ, ଆସନ୍ତୁ ଆମେ ସମସ୍ତେ ଆଜିର ଏହି ପବିତ୍ର ଦିବସ ଅବସରରେ ନିଜ ନିଜକୁ ପୁନର୍ବାର ଉତ୍ସର୍ଗ କରିବା ନିମନ୍ତେ ସଂକଳ୍ପ ନେବା ।

ଜୟହିନ୍ଦ୍ "



# ଜନରାଜ୍ୟ ଦିବସ ଉପଲକ୍ଷେ

# ମୁଖ୍ୟମନ୍ତ୍ରୀଙ୍କ ବାର୍ତ୍ତା

୩୮ତମ ଜନରାଜ୍ୟ ଦିବସ ଉପଲକ୍ଷେ ଓଡ଼ିଶାର ଜନସାଧାରଣଙ୍କୁ ମୁଁ ହାର୍ଦ୍ଦିକ ଶୁଭେଚ୍ଛା ଜଣାଉଛି ।

ଜନରାଜ୍ୟ ଦିବସ ଆମର ଗଣତାନ୍ତ୍ରିକ ପରଂପରା, ସମାଜବାଦ ଓ ଧର୍ମନିରପେକ୍ଷତାର ପ୍ରତୀକ । ପୃଥିବୀର ବହୁ ରାଷ୍ଟ୍ରରେ ଗଣତନ୍ତ୍ରର ବିପର୍ଯ୍ୟୟ ଘଟିଥିବାବେଳେ ଭାରତୀୟ ଜନସାଧାରଣ ଗଣତାନ୍ତ୍ରିକ ମୂଲ୍ୟବୋଧ ପ୍ରତି ସଦାସର୍ବଦା ଯେପରି ପ୍ରଗାଢ଼ ଆସ୍ଥା ଜ୍ଞାପନ କରିଆସିଛନ୍ତି, ତାହା ସମଗ୍ର ବିଶ୍ୱରେ ଭାରତର ସମ୍ମାନ ଓ ମର୍ଯ୍ୟାଦାକୁ ସୁପ୍ରତିଷ୍ଠିତ କରିଛି । ଏହି ମୂଲ୍ୟବୋଧକୁ ଅଧିକ ସୁଦୃଢ଼ କରି ଭାରତର ଏକତା ଓ ଅଖଣ୍ଡତାର ସୁରକ୍ଷା ପାଇଁ ଜନରାଜ୍ୟ ଦିବସ ଆମ ସମସ୍ତଙ୍କ ପକ୍ଷରେ ଏକ ସଂକଳ୍ପର ଦିବସ ।

ବିଗତ ଲୋକସଭା ନିର୍ବାଚନବେଳେ ପ୍ରଧାନମନ୍ତ୍ରୀ ଶ୍ରୀ ରାଜୀବ ଗାନ୍ଧୀ ଭାରତର ଜନସାଧାରଣଙ୍କୁ କେତେଗୁଡ଼ିଏ ପ୍ରତିଶ୍ରୁତି ଦେଇଥିଲେ । ତାହା ମଧ୍ୟରେ ପଞ୍ଜାବ ଓ ଆସାମ ସମସ୍ୟାର ସନ୍ତୋଷଜନକ ସମାଧାନ, ଦୁର୍ନୀତି ନିବାରଣ, ଶିକ୍ଷାନୀତିରେ ସଂସ୍କାର ଆଦି ଅନ୍ତର୍ଭୁକ୍ତ । ଏ ସମସ୍ତ ପ୍ରତିଶ୍ରୁତି ପୂରଣ କରିବା ପାଇଁ ସେ ଦୃଢ଼ ପଦକ୍ଷେପ ଗ୍ରହଣ କରିଛନ୍ତି । ଏ ଉଭୟ ରାଜ୍ୟରେ ଗଣତାନ୍ତ୍ରିକ ପନ୍ଥାରେ ନିର୍ବାଚିତ ସରକାରମାନ ପ୍ରତିଷ୍ଠିତ ହୋଇଛି ଓ ପଞ୍ଜାବରେ ଆତଙ୍କବାଦର ମୂଳପୋଛ ପାଇଁ କେନ୍ଦ୍ର ଓ ରାଜ୍ୟ ପକ୍ଷରୁ ମିଳିତ ଉଦ୍ୟମ ଜାରି କରାଯାଇଛି । ଆମକୁ ମନେ ରଖିବାକୁ ହେବ ଯେ ଆତଙ୍କବାଦର ମୂଳପୋଛ ଏତେ ସହଜସାଧ୍ୟ ନୁହେଁ । ବ୍ରିଟେନ ପୁରୁଷ ପୁରୁଷ ଧରି ଆଇରିସ୍ ଆତଙ୍କବାଦର ସମ୍ମୁଖୀନ ହୋଇ ତାକୁ ମୂଳପୋଛ କରିପାରି ନାହିଁ । ଦେଶର ସ୍ୱାଧୀନତା ଓ ସଂହତି ରକ୍ଷା ପାଇଁ ଆପୋଷହୀନ ସଂଗ୍ରାମ ଓ ଉଦ୍ୟମ ଜାରି ରଖିବାକୁ ହେବ । ଏ ମଧ୍ୟରେ ମିଜୋରାମ ସମସ୍ୟାର ସମାଧାନ କରାଯାଇ ସେଠାରେ ଆତଙ୍କବାଦକୁ ଶେଷ କରାଯାଇଛି । ଦଳ ବଦଳ ନିରୋଧ ଆଇନ ପ୍ରଚଳିତ କରାଯାଇଛି ଓ ନୂତନ ଶିକ୍ଷାନୀତି ପ୍ରବର୍ତ୍ତିତ ହୋଇଛି । ଯେଉଁ ଯୋଜନାବଦ୍ଧ ଅର୍ଥନୀତି ଉପରେ ଦେଶ ବିଶ୍ୱାସ କରି ସମାଜବାଦର ଲକ୍ଷ୍ୟ ଆଡ଼କୁ ଆଗେଇ ଚାଲିଛି, ବର୍ତ୍ତମାନ ସେହି ଲକ୍ଷ୍ୟ ହାସଲ ଦିଗରେ ଏହି ୫ ବର୍ଷ ପାଇଁ ସପ୍ତମ ଯୋଜନା କାର୍ଯ୍ୟକାରୀ ହେଉଛି । ଆଗାମୀ ୧୫ ବର୍ଷ ମଧ୍ୟରେ ଦେଶରୁ ବେକାରୀ ଓ ଦାରିଦ୍ର୍ୟ ଦୂର କରାଯାଇ ସ୍ୱାସ୍ଥ୍ୟ, ଶିକ୍ଷା, ବାସଗୃହ ଆଦି କ୍ଷେତ୍ରରେ ଲୋକଙ୍କ ମୌଳିକ ଆବଶ୍ୟକତା ଯୋଗାଇ ଦିଆଯିବାର ସଂକଳ୍ପ ନିଆଯାଇଛି । ଆଗାମୀ ଶତାବ୍ଦୀର ପ୍ରଥମ ବର୍ଷରେ ଭାରତ ଯେପରି ଏକ ଶ୍ରେଷ୍ଠ ଅତ୍ୟାଧୁନିକ ରାଷ୍ଟ୍ରରେ ପରିଣତ ହେବ, ଏହା ହିଁ ଦେଶର ନୂତନ ଯୁବନେତୃତ୍ୱ ଓ ଦେଶବାସୀଙ୍କ ସଂକଳ୍ପ ।

ଓଡ଼ିଶାର ଅର୍ଥନୈତିକ, ସାମାଜିକ ତଥା ସାଂସ୍କୃତିକ [illegible] ଦିଗରେ ଆମର ଉଦ୍ୟମ ସର୍ବଜନବିଦିତ । ରାଜ୍ୟରେ ଜଳସେଚନ ବ୍ୟବସ୍ଥା ଓ ବିଦ୍ୟୁତ୍‌ଶକ୍ତିର ପ୍ରସାର, କୃଷି ଉତ୍ପାଦନ ଓ ଶିଳ୍ପର ବିକାଶ ନିମନ୍ତେ ବ୍ୟାପକ କାର୍ଯ୍ୟକ୍ରମ ହାତକୁ ନିଆଯାଇଛି । ଶିକ୍ଷା, ପର୍ଯ୍ୟଟନ, ଶିଳ୍ପ ଏବଂ ଆଦିବାସୀ ଓ ହରିଜନ ସଂପ୍ରଦାୟର ଲୋକଙ୍କ ସାମାଜିକ ତଥା ଅର୍ଥନୈତିକ ବିକାଶ କ୍ଷେତ୍ରରେ ବିଶେଷ ଉଦ୍ୟମ ଚାଲୁ ରହିଛି । ଗ୍ରାମାଞ୍ଚଳରେ ବାସ କରୁଥିବା ଦରିଦ୍ରତମ ଲୋକଙ୍କ

ଅର୍ଥନୈତିକ ଅଭ୍ୟୁତ୍ଥାନ ପାଇଁ ଗତ ଛ'ବର୍ଷ ଧରି ଚାଲିଥିବା ଆମର କାର୍ଯ୍ୟକ୍ରମ ଜରିଆରେ ଲକ୍ଷ ଲକ୍ଷ ଦରିଦ୍ର ଜନସାଧାରଣଙ୍କର ଉନ୍ନତି ସାଧନ କରାଯାଇଛି । ସର୍ବୋପରି ରାଜ୍ୟରେ ବେକାର ସମସ୍ୟାର ସମାଧାନ ପାଇଁ ବିଭିନ୍ନ କାର୍ଯ୍ୟକ୍ରମ ଜରିଆରେ ବିପୁଳ ଉଦ୍ୟମ ଆରମ୍ଭ କରାଯାଇଛି । ଆମ ରାଜ୍ୟ ଆଜି ସମୃଦ୍ଧିର ଦ୍ୱାରଦେଶରେ ଉପନୀତ ।

ଆଜି ପବିତ୍ର ଜନରାଜ୍ୟ ଦିବସ । ଏହା ଆମ୍ଭମାନଙ୍କ ପକ୍ଷରେ ଏକ ସଂକଳ୍ପ ଓ ସାଭିମାନର ଦିନ ହେଉ ।

ଜୟହିନ୍ଦ

ଜାନକୀବଲ୍ଲଭ ପଟ୍ଟନାୟକ

# ମୋ ଦୃଷ୍ଟିରେ ....

ଗଣତନ୍ତ୍ର ଦିବସର ଶ୍ରଦ୍ଧା ଓ ଶୁଭେଚ୍ଛା ଜଣାଇ, ଏ ସଂଖ୍ୟା ଉତ୍କଳ ପ୍ରସଙ୍ଗ ଆତ୍ମ ପ୍ରକାଶ କରୁଚି ।

ଗଣତନ୍ତ୍ର ଦିବସର ସତତିରିଶିତମ ଅବସରରେ ଜାତି ଧର୍ମ ନିର୍ବିଶେଷରେ ଭାରତ ଓ ଓଡ଼ିଶାର ଜନ ସାଧାରଣ ଭାରତୀୟ ଗଣତନ୍ତ୍ରର ଉଚ୍ଚ ଓ ମହାନ୍ ପରମ୍ପରା ପ୍ରତି ସମ୍ମାନ ପ୍ରଦର୍ଶନ କରୁଛନ୍ତି । କିନ୍ତୁ ମୁଷ୍ଟିମେୟ ଏକ ଦଳ ଗଣତନ୍ତ୍ର ଦିବସକୁ ବାସନ୍ଦ କରିବାକୁ ଏ ବର୍ଷ ଡ଼ାକରା ଦେଇଛନ୍ତି । ତା'ର ଘୋର ନିନ୍ଦା କରି ସେହି ବାସନ୍ଦ ଡ଼ାକକୁ ବାସନ୍ଦ କରିବାକୁ ପ୍ରତ୍ୟେକ ଭାରତୀୟ ନାଗରିକଙ୍କୁ ପ୍ରଧାନମନ୍ତ୍ରୀ ଶ୍ରୀ ରାଜୀବ ଗାନ୍ଧୀଙ୍କ ଭାଷଣ ପ୍ରତି ଉତ୍କଳ ପ୍ରସଙ୍ଗ ଦୃଢ ସମର୍ଥନ ଜଣାଉଅଛି । ଆମର ଗର୍ବ ଓ ଦାୟିତ୍ୱ ଏହି ଗଣତନ୍ତ୍ରର ସୁରକ୍ଷା ନିମନ୍ତେ ଉତ୍କଳ ପ୍ରସଙ୍ଗ ପ୍ରତିଶ୍ରୁତିବଦ୍ଧ ।

ଏ ବର୍ଷ ଜାନୁଆରୀ ଦୁଇ ତାରିଖରେ ଓଡ଼ିଶା ଓ ଭାରତର ଏକ ବଳିଷ୍ଠ ଜନନାୟକ ଡ଼କ୍ଟର ହରେକୃଷ୍ଣ ମହତାବଙ୍କ ବିୟୋଗ ଆମ ଜାତୀୟ ଜୀବନରେ ଯେଉଁ ଅପୂରଣୀୟ କ୍ଷତି ଘଟାଇଲା ତା'ର ଏକ ସ୍ମୃତି ସ୍ମରଣ ମୁଖ୍ୟମନ୍ତ୍ରୀ ଶ୍ରୀ ଜାନକୀ ବଲ୍ଲଭ ପଟ୍ଟନାୟକ ସେହି ଦିନ ସଂଧ୍ୟାରେ ଆକାଶବାଣୀ କଟକରୁ କରିଥିଲେ । ସେହି ବକ୍ତୃତାର ପ୍ରତିଲିପି ଏହି ସଂଖ୍ୟାରେ ଆମେ ଦେଇ ସେହି ମହାନ୍ ଆତ୍ମା ପ୍ରତି ଆମର ଶ୍ରଦ୍ଧାଞ୍ଜଳି ଅର୍ପଣ କରୁଛୁ ! ୰ଡକ୍ଟର ମହତାବ ଜାତୀୟ ଜୀବନ ସ୍ରୋତର ଏକ ଦିଗନ୍ତବ୍ୟାପୀ ମହାମାନବ ଥିଲେ । ସମ୍ଭବତଃ ପଣ୍ଡିତ ଗୋପବନ୍ଧୁ ଦାସ ଓ ବାରିଷ୍ଟର ମଧୁସୂଦନ ଦାସଙ୍କ ପରେ ଓଡ଼ିଶାରେ ଏପରି ଯୋଗଜନ୍ମା ପୁରୁଷ ଜନ୍ମ ହୋଇ ନଥିଲେ, ଯେ କି ରାଜନୀତି, ସାହିତ୍ୟ, ଇତିହାସ, ସମାଜ ସଂସ୍କାର, ସାମ୍ବାଦିକତା ତଥା ଜାତୀୟ ଉନ୍ନୟନ କ୍ଷେତ୍ରରେ ନିଜ ବଳିଷ୍ଠ ସ୍ୱାକ୍ଷର ଲିପିବଦ୍ଧ କରି ଯାଇଛନ୍ତି ।

ଆମର ମନ୍ତ୍ରୀ ଶ୍ରୀ ଶରତ୍‌ଚନ୍ଦ୍ର ପଣ୍ଡାଙ୍କର ଓଡ଼ିଶାରେ ମତ୍ସ୍ୟ ଉନ୍ନୟନ ବିଷୟରେ ଏକ ପ୍ରବନ୍ଧ ଏହି ସଂଖ୍ୟାରେ ପ୍ରକାଶ ପାଉଛି । ଓଡ଼ିଶାରେ ମତ୍ସ୍ୟ ଚାଷ କରି ଜନସାଧାରଣ ତାଙ୍କର ଅର୍ଥନୈତିକ ଉନ୍ନତି ସହ ପୌଷ୍ଟିକ ଆହାରର ଉନ୍ନତି ନିମନ୍ତେ ଏହି ପ୍ରବନ୍ଧ ଯଥେଷ୍ଟ ସହାୟକ ହେବ ବୋଲି ଉତ୍କଳ ପ୍ରସଙ୍ଗ କାମନା କରୁଛି ।

ଓଡ଼ିଶା ଯୋଜନା ବୋର୍ଡର ସଦସ୍ୟ ଶ୍ରୀ ପ୍ରହ୍ଲାଦ ମଲିକ "ଗାଆଁର ସ୍ୱାସ୍ଥ୍ୟ" ସମ୍ବନ୍ଧରେ କେତେକ ଗୁରୁତ୍ୱପୂର୍ଣ୍ଣ ତଥ୍ୟ ଓ ପ୍ରଶ୍ନ ଉତ୍‌ଥାପନ କରିଛନ୍ତି ଏବଂ ସେଥିପ୍ରତି ଆମେ ଆମ ପାଠକମାନଙ୍କର ଦୃଷ୍ଟି ଆକର୍ଷଣ କରିବୁ ।

ଗଣତନ୍ତ୍ର ଦିବସରେ ଅଧ୍ୟାପକ ଶ୍ରୀ ଶତ୍ରୁଘ୍ନ ନାଥଙ୍କର "ସଂହତିର ଶପଥ", ଶ୍ରୀ ବିଚିତ୍ରାନନ୍ଦ କରଙ୍କର "ଆମେ, ଆମ ଅଧିକାର ଓ ଦାୟିତ୍ୱ", ଶ୍ରୀ ଚନ୍ଦ୍ରଶେଖର ନାୟକଙ୍କ "ଜାନୁଆରୀ ଛବିଶର ଶପଥ", ତଥା ଶ୍ରୀ ଗିରିଶ ଚନ୍ଦ୍ର ସିଂହଙ୍କର "ସଂଗ୍ରାମ ସରିନାହିଁ"ପ୍ରବନ୍ଧଗୁଡ଼ିକ କେବଳ ସୁଖପାଠ୍ୟ ନୁହେଁ, ବରଂ ପ୍ରେରଣା ଓ ଦିଗ୍‌ଦର୍ଶନ ଦେବ ବୋଲି ଆମର ବିଶ୍ୱାସ ।

ଏହି ମାସଠାରୁ "ଉତ୍କଳ ପ୍ରସଙ୍ଗ"ର ଦାମ୍ ଦୁଇ ଟଙ୍କା ରଖା ଯାଇଛି । କାଗଜ ଓ ଛାପାର ବହୁଗୁଣ ବୃଦ୍ଧି ସତ୍ତ୍ୱେ ଆଜି ପର୍ଯ୍ୟନ୍ତ ଉତ୍କଳ ପ୍ରସଙ୍ଗର ଦାମ୍ ମାତ୍ର ଏକ ଟଙ୍କା ଥିଲା । କିନ୍ତୁ ବ୍ୟବସାୟିକ ଦୃଷ୍ଟିରୁ କେବଳ ଦାନ ଦ୍ୱାରା ଅନୁଗୃହୀତ ନ ହୋଇ ଉତ୍କଳ ପ୍ରସଙ୍ଗ ନିତାନ୍ତ ବାଧ୍ୟ ହୋଇ ତା'ର ଦାମ୍ ବଢାଇ, ସହୃଦୟ ପାଠକମାନଙ୍କର ସହଯୋଗ କାମନା କରୁଛି ।

ଜୟହିନ୍ଦ୍

## • ଜାତୀୟ ସଙ୍ଗୀତ

ଜନ-ଗଣ-ମନ-ଅଧିନାୟକ ଜୟ ହେ
ଭାରତ-ଭାଗ୍ୟ-ବିଧାତା

ପଞ୍ଜାବ-ସିନ୍ଧୁ-ଗୁଜରାଟ-ମରାଠା
ଦ୍ରାବିଡ଼-ଉତ୍କଳ-ବଙ୍ଗ

ବିନ୍ଧ୍ୟ-ହିମାଚଳ-ଯମୁନା-ଗଙ୍ଗା
ଉଚ୍ଛଳ ଜଳଧି ତରଙ୍ଗ

ତବ ଶୁଭ ନାମେ ଜାଗେ
ତବ ଶୁଭ ଆଶୀଷ ମାଗେ
ଗାହେ ତବ ଜୟ ଗାଥା

ଜନଗଣ-ମଙ୍ଗଳଦାୟକ ଜୟ ହେ,
ଭାରତ-ଭାଗ୍ୟ-ବିଧାତା

ଜୟ ହେ ଜୟ ହେ ଜୟ ହେ,
ଜୟ ଜୟ ଜୟ ଜୟ ହେ ।

# ଭାରତର ସଂଶୋଧିତ ପ୍ରସ୍ତାବନା

ଭାରତୀୟ ସମ୍ବିଧାନର ପ୍ରସ୍ତାବନା (PREAMBLE) ବା ଉପକ୍ରମଣିକା ୪୨ତମ ସମ୍ବିଧାନ ସଂଶୋଧନ ବିଲ୍ ଅନୁଯାୟୀ ୧୯୭୬ ଡିସେମ୍ବର ୧୮ ତାରିଖରୁ ସଂଶୋଧିତ ହୋଇ କାର୍ଯ୍ୟକାରୀ ହେଉଛି ।

ତାହା ହେଲା ••

"ଆମେ ଭାରତର ଜନସାଧାରଣ ଭାରତକୁ ଗୋଟିଏ ସାର୍ବଭୌମ, ଗଣତାନ୍ତ୍ରିକ, ଧର୍ମନିରପେକ୍ଷ, ସମାଜବାଦୀ, ସାଧାରଣତନ୍ତ୍ର ରୂପେ ଗଠନ କରିବା ନିମିତ୍ତ ଏବଂ ଏ ଦେଶର ସମସ୍ତ ନାଗରିକଙ୍କ ପାଇଁ ସାମାଜିକ, ଅର୍ଥନୈତିକ ଓ ରାଜନୈତିକ ନ୍ୟାୟ, ଚିନ୍ତା ଅଭିବ୍ୟକ୍ତି, ବିଶ୍ୱାସ, ଧର୍ମ ଓ ଉପାସନାର ସ୍ୱାଧୀନତା, ସାମାଜିକ ପ୍ରତିଷ୍ଠା ଓ ସୁଯୋଗ ଦିଗରେ ସମତା ହାସଲ କରିବା ତଥା ବ୍ୟକ୍ତିବିଶେଷର ମର୍ଯ୍ୟାଦା ଓ ଜାତିର ଏକତା ଏବଂ ଅଖଣ୍ଡତା ପାଇଁ ନିଶ୍ଚିତ ବ୍ୟବସ୍ଥା କରି ସେମାନଙ୍କ ମଧ୍ୟରେ ଭ୍ରାତୃଭାବର ବିକାଶ ସାଧନ ନିମନ୍ତେ ଦୃଢ଼ ସଂକଳ୍ପ ହୋଇ - ଆମ୍ଭମାନଙ୍କର ଏହି ସମ୍ବିଧାନ ସଭାରେ ଅଦ୍ୟ ୧୯୪୯ ମସିହା ନଭେମ୍ବର ମାସର ଷଡ଼ବିଂଶ ଦିବସରେ ଏତଦ୍ୱାରା ଏହି ସମ୍ବିଧାନକୁ ଅଙ୍ଗୀକୃତ, ଅଧିନିୟମିତ ଓ ଆତ୍ମାର୍ପିତ କରୁଛୁ ।"




# ସ୍ମୃତି ଚାରଣା

ଶ୍ରୀ ଜାନକୀ ବଲ୍ଲଭ ପଟ୍ଟନାୟକ

ଅଠାଅଶୀ ବର୍ଷ ବୟସରେ ଡକ୍ଟର ମହତାବ ଚାଲିଗଲେ । ପ୍ରତିବର୍ଷ ତାଙ୍କର ଜୟନ୍ତୀ ଉତ୍ସବରେ ମୋ ସହିତ ହଜାର ହଜାର ନରନାରୀ ସେ ଶତାୟୁ ହୁଅନ୍ତୁ ବୋଲି କାମନା କରିଛନ୍ତି । ବୈଦିକ ପ୍ରାର୍ଥନା ଖାଲି ଶହେ ବର୍ଷ ବଞ୍ଚିବା ନୁହେଁ, ଶହେ ବର୍ଷ ଭଲଭାବରେ ଦେଖି ପାରିବା, ଭଲଭାବରେ ଶୁଣି ପାରିବା, ଭଲଭାବରେ କାମ କରିପାରିବା । ସେ ମଧ୍ୟ ପ୍ରାର୍ଥନା କରୁଥିଲେ ଯେ ଖାଲି ଦୀର୍ଘ କାଳ ବଞ୍ଚି ରହିବାର କୌଣସି ଅର୍ଥ ନାହିଁ । ହାତଗୋଡ ଚଳୁଥିବା ଦରକାର, ଦୃଷ୍ଟି, ଶ୍ରୁତି, ମସ୍ତିଷ୍କ, ବୁଦ୍ଧି ସବୁ କାମ କରୁଥିବା ଦରକାର । ଏ ଦୀର୍ଘ ୮୭ ବର୍ଷ କାଳ ସେ ସେହିପରି କର୍ମମୟ ଜୀବନ ଯାପନ କରିଛନ୍ତି । ଚଲାବୁଲାରେ କେତେକ ଅସୁବିଧା ଥିଲେ ମଧ୍ୟ ବୁଦ୍ଧି ଓ ମସ୍ତିଷ୍କ କେବେହେଲେ ନିସ୍ତେଜ ହୋଇ ନାହିଁ । ଶେଷରେ ମାତ୍ର ଅଳ୍ପ କେତେ ଦିନ ଶଯ୍ୟାଶାୟୀ ହେବାକୁ ପଡ଼ିଛି, ସେଥିରେ ମଧ୍ୟ ବହୁତ ସଂକୋଚ । ତାଙ୍କର ଦେହ ଖରାପ ହେବାର ଖବର କାହାରିକୁ ଦେବାକୁ ପଡ଼ିବ ନାହିଁ, କି ଡାକ୍ତରଖାନାକୁ ତାଙ୍କୁ ଯିବାକୁ ହେବ ନାହିଁ । ଦୁଃଖ, ରୋଗ, ଶୋକ ସମ୍ପୂର୍ଣ୍ଣ ବ୍ୟକ୍ତିଗତ । ଏହାକୁ ସାଧାରଣ ଭାବରେ ମନାଏ ଯାଏ ନାହିଁ । କାଲି ରାତିରେ ତାଙ୍କର ଅବସ୍ଥା ଯେତେବେଳେ ଅତିଶୟ ଖରାପ ହୋଇଗଲା, ସେ ଅଚେତ ହୋଇଗଲେ ଏବଂ ଘରେ ଚିକିତ୍ସା କରାଯିବା ସମ୍ଭବ ହେଲା ନାହିଁ, ତାଙ୍କୁ ଡାକ୍ତରଖାନାକୁ ଅଣାଗଲା । କିନ୍ତୁ ସେ ବୋଧ ହୁଏ ସେଠାରେ ରହିବାକୁ ଚାହିଁଲେ ନାହିଁ । ରାତି ବିତିଗଲା, ସକାଳ ୧୦ ଟା ବେଳକୁ ସେ ଟିକିଏ ଭଲ ଆଡକୁ ଆସୁଥିବା ମନେ ହେଲା । ମୃତ୍ୟୁର ୧୫ ମିନିଟି ଆଗରୁ ମୁଁ ତାଙ୍କର ଶଯ୍ୟା ପାଖରୁ ଆସିଲି । ଭାବିଲି, ବହୁ ଯୁଦ୍ଧରେ ଲଢ଼ି ଜୀବନରେ ସେ ବିଜୟୀ ହୋଇଛନ୍ତି, ଏ ଲଢ଼େଇରେ ମଧ୍ୟ ଜିଣିଯିବେ ! ମାତ୍ର ତାହା ହେଲା ନାହିଁ । ଶହେବର୍ଷ ହୋଇ ପାରିଲା ନାହିଁ । ଶେଷକୁ ଜରା ଏବଂ ମରଣର ଜୟ ହେଲା । କବିଙ୍କର ଭାଷାରେ; କେତେକ ଲୋକ ମରିଯା'ନ୍ତି ସତ, ମାତ୍ର ତାଙ୍କ ଯଶ ଦେହରେ ଜରା ଆଉ ମରଣର ଭୟ ରହେ ନାହିଁ । ଡକ୍ଟର ମହତାବ ଥିଲେ ସେହିମାନଙ୍କ ମଧ୍ୟରୁ ଅନ୍ୟତମ । ସେଥିପାଇଁ ଶହେ ବର୍ଷ ନୁହେଁ — ସହସ୍ର ସହସ୍ର ବର୍ଷ ମଧ୍ୟ ଏହି କୀର୍ତ୍ତିମାନ ପୁରୁଷଙ୍କର କୃତି ଓଡ଼ିଶାର ଇତିହାସ କୀର୍ତ୍ତନ କରୁଥିବ ।

### କୋଟିକରେ ଗୋଟିଏ ସନ୍ତାନ

ମଧୁସୂଦନ ଲେଖିଥିଲେ 'କୋଟିଏ ସନ୍ତାନ ମା'ଗୋ ଧରିଅଛୁ କୋଳେ, ଗୋଟିଏ ସନ୍ତାନ ମା ଗୋ ନ ଦେଖିଲୁ ଡୋଳେ' । ସେ ନିଜେ ଗୋଟିଏ ସନ୍ତାନ ହେବାପାଇଁ ଚେଷ୍ଟା କରିଥିଲେ । ସେହିପରି ଗୋପବନ୍ଧୁ ଓ ତାଙ୍କର ସାଥିମାନେ । ଏତେ ବଡ ଓଡ଼ିଶା । କି ବିଶାଳ ଅତୀତ । କଳା ଏବଂ ଶୌର୍ଯ୍ୟରେ ଯେଉଁ ରାଜ୍ୟ ଭାରତର ଇତିହାସରେ ଏକ ସ୍ୱର୍ଣ୍ଣିମ ଅଧ୍ୟାୟ ରଚନା କରିଥିଲା, ଶେଷକୁ ତାକୁ ତାର ନିଜସ୍ୱ ଶକ୍ତି, ନିଜର ସ୍ୱାତନ୍ତ୍ର୍ୟ ହରାଇବାକୁ ହେଲା । ଊନବିଂଶ ଶତାବ୍ଦୀର ଓଡ଼ିଶା ହେଲା ଏକ କ୍ଷୁଦ୍ରାତିକ୍ଷୁଦ୍ର ରାଜ୍ୟ । ଅନ୍ୟର ଅଂଶବିଶେଷ ଖଣ୍ଡ ବିଖଣ୍ଡିତ, ପରମୁଖାପେକ୍ଷୀ, ଏକ ସୁପ୍ତ ଆତ୍ମବିସ୍ମୃତ ଜାତି । ତାକୁ ଜଗାଇବା ପାଇଁ, ବହୁ ବୀର ପୁରୁଷ ଜନ୍ମ ହେଲେ, ଭାଷା, ସାହିତ୍ୟ, ସମାଜ ସେବା ଓ ରାଜନୀତି କ୍ଷେତ୍ରରେ — ଡକ୍ଟର ହରେକୃଷ୍ଣ ମହତାବ ଥିଲେ ସେମାନଙ୍କ ମଧ୍ୟରୁ ଜଣେ । ଗତ ଶତାବ୍ଦୀର ଶେଷରେ ତାଙ୍କର ଜନ୍ମ, ସ୍ୱାଧୀନତା ସଂଗ୍ରାମ ଆରମ୍ଭରେ ଭାରତର ବହୁ ଶ୍ରେଷ୍ଠ ବ୍ୟକ୍ତିଙ୍କ ପରି ତାଙ୍କର କର୍ମଜୀବନର ଆରମ୍ଭ, ଜେଲରେ ହେଉ ବା ବାହାରେ ହେଉ ତାଙ୍କର ବ୍ୟକ୍ତିତ୍ୱର ସେ ଅଦମ୍ୟ ତେଜ, ଅସାଧାରଣ କର୍ମଠତା କ୍ଷଣେ ହେଲେ ନିଷ୍ପ୍ରଭ ହୋଇନାହିଁ । ବିବେକାନନ୍ଦ, ମହାତ୍ମାଗାନ୍ଧୀ, ଗୋପବନ୍ଧୁ, ମଧୁସୂଦନ ସମସ୍ତେ ତାଙ୍କର ଜୀବନକୁ ପ୍ରଭାବିତ କରିଛନ୍ତି ତ୍ୟାଗ, ତିତିକ୍ଷା, ପ୍ରଚଣ୍ଡ କର୍ମର ପ୍ରେରଣା ଓ ତା' ମଧ୍ୟରେ ଏକ ପଛୁଆ ଜାତିକୁ ଉଠାଇବାର ସଂକଳ୍ପ । ସେଥିରେ ସେ ମୁହୂର୍ତ୍ତେ ମଧ୍ୟ ପଛାଇ ନାହାନ୍ତି । ଏପରି କର୍ମମୟ ଜୀବନ, ଏପରି ଲଢ଼ିବାର ଶକ୍ତି, ନିଜର ସଂକଳ୍ପିତ କାର୍ଯ୍ୟରେ କେହି ବାଧା ଦେଲେ ବା ବିଘ୍ନ ଦେଖାଗଲେ ସେଥିପ୍ରତି ଏକ ବେଖାତିର, ବେପରବା ମନୋଭାବ ଖୁବ୍ କ୍ୱଚିତ୍ ଦେଖାଯାଏ । ନିଜେ କେବଳ ଉତ୍ସାହିତ ନୁହନ୍ତି, ଏକ ଉତ୍ସାହର ସ୍ରୋତ । ଯେ କିଛି ଭଲ କାମ କରୁଚି, ତାକୁ ସାହସ ଦେବା, ଉତ୍ସାହ ଦେବା । ସେ ସବୁବେଳେ କହୁଥିଲେ ଓଡ଼ିଶାରେ ଆବଶ୍ୟକ ଏକ କର୍ମର ପ୍ଲାବନ ସ୍ରୋତ । ସ୍ୱାମୀ ବିବେକାନନ୍ଦଙ୍କର ସେ ଉଦାହରଣ ଦେଉଥିଲେ— ଯେଉଁଠି ତମୋ ଗୁଣର

ଜଡ଼ତା, ଲୋକେ ନିଶ୍ଚେତ, ନିରୁପାୟ, ଭାଗ୍ୟବାଦୀ, ସୁପ୍ତ – ସେଠାରେ ନଟେଶ୍ୱରର ତାଣ୍ଡବନୃତ୍ୟ ଦରକାର ।

### ସଂଗ୍ରାମର ଶେଷ ସାକ୍ଷୀ

ସ୍ୱାଧୀନତା ସଂଗ୍ରାମ ବେଳେ ସେ ସାମାନ୍ୟ ସୈନିକରୁ ଉଠି ହେଲେ ଓଡ଼ିଶାର ଅନନ୍ୟସାଧାରଣ ନେତା । ପ୍ରଦେଶ କଂଗ୍ରେସର ସଭାପତି ଓ ତତ୍କାଳୀନ କଂଗ୍ରେସ କାର୍ଯ୍ୟକାରୀ କମିଟିର ସଭ୍ୟ – ଭାରତର ଯେଉଁ ଯେଉଁ ବଡ଼ ବଡ଼ ନେତା ଓ ଯୋଦ୍ଧାମାନେ ତାର ସଭ୍ୟ ଥିଲେ ୧୯୪୨ ଆନ୍ଦୋଳନରେ ଅହମଦନଗର ଦୁର୍ଗରେ ଆସମୁଦ୍ର ହିମାଚଳରୁ ଯେଉଁ ୨୧ ଜଣ ନେତା କାରାରୁଦ୍ଧ ହୋଇଥିଲେ, ସେମାନଙ୍କ ମଧ୍ୟରେ ସେ ଥିଲେ ଜଣେ । ସେମାନଙ୍କ ମଧ୍ୟରୁ ୧୯ ଜଣ ସ୍ୱର୍ଗିଯାଇଥିଲେ । ସେ ଏବଂ ଖାଁ ଅବଦୁଲ୍ ଗଫୁର ଖାଁ ଥିଲେ । ମାତ୍ର ତାଙ୍କ ପରେ ସେହି ଗୌରବମୟ ଦିବସ ଓ ସଂଗ୍ରାମର ସାକ୍ଷୀରୂପେ ଆଉ ଏ ଦେଶରେ କେହି ଜୀବିତ ନାହାନ୍ତି । କେବଳ ସେ ସମୟ ଖାଲି ଇଟାର ନାହାନ୍ତି । ପଣ୍ଡିତ ନେହେରୁ ଲେଖିଥିଲେ 'ଡିସ୍କଭରି ଅଫ୍ ଇଣ୍ଡିଆ' । ସେ ଲେଖିଲେ ଓଡ଼ିଶାର ଏକ ନୂତନ ସାମାଜିକ ଇତିହାସ ।

### ଏକ ମହାନ୍ ସମର୍ପିତ ଜୀବନ

ସେ ଥିଲେ ସେହି ଶ୍ରେଣୀର ବ୍ୟକ୍ତି, ଯେଉଁମାନେ ସମସ୍ତଙ୍କର ଊର୍ଦ୍ଧ୍ୱରେ ରହନ୍ତି, ସମସ୍ତଙ୍କ ନେତୃତ୍ୱ ନେବା ପାଇଁ ଜନ୍ମ । 'ମୂର୍ଦ୍ଧ୍ନି ବା ସର୍ବଲୋକସ୍ୟ, ଶୀର୍ଯ୍ୟତେ ବନ ଏବ ବା' । ମଧୁସୂଦନ, ଗୋପବନ୍ଧୁଙ୍କ ପରେ ହେଲେ ସେ ଓଡ଼ିଶାର ନେତା । ସ୍ୱାଧୀନତା ପୂର୍ବରୁ ଓ ସ୍ୱାଧୀନତା ପରେ । ପ୍ରଥମ ମୁଖ୍ୟମନ୍ତ୍ରୀ ଭାବରେ ସ୍ୱପ୍ନ ଏକ ସାମାନ୍ୟ ଦିଗ୍‌ବଳୟର । ଗଡ଼ଜାତ ସବୁ ମିଶି ବିଶାଳ ଓଡ଼ିଶା ଗଢ଼ା ହେବ, ନୂଆ ରାଜଧାନୀ ଐତିହା ଭୁବନେଶ୍ୱର ନଗରରେ ହେବ, ମହାନଦୀର ବିପୁଳ ଜଳରା ବଂଧାଯାଇ ଓଡ଼ିଶାକୁ କୃଷି ଓ ଶିଳ୍ପରେ ସମୃଦ୍ଧ କରାଯିବ । ଚୌଦ୍ୱାର ହେବ ନୂଆ ଲୁଗାକଳ । ଲୁଗାକଳ ଖାଲି ବମ୍ବେ, ଅହମ୍ମଦାବ କଲିକତାରେ ହେଉଥିବ । ଓଡ଼ିଶାରେ ହେବ ନାହିଁ ? ନୂଆ ସମ୍ବାଦ ବାହାରିବ, ଓଡ଼ିଶାର ନବଯୁଗର ବାର୍ତ୍ତା ନେଇ, ନୂଆ ସାହିତ୍ୟ ପ ବାହାରିବ ସାହିତ୍ୟିକମାନଙ୍କୁ ନୂତନ ଦିଗ୍‌ଦର୍ଶନ ଦେବାପାଇଁ । ସାହି ସଂସ୍କୃତି, କଳା, ଶିଳ୍ପ, ସ୍ଥାଗିମାନ ସବୁ କ୍ଷେତ୍ରରେ ଓଡ଼ିଶାକୁ ଆଗ ନେବାକୁ ହେବ । ଯେତେଦିନ ସେ କ୍ଷମତାରେ ରହିଥିଲେ ଓଡ଼ିଶ ଏବଂ ଦିଲ୍ଲୀରେ ବା ବମ୍ବେରେ ଗଭର୍ଣ୍ଣର ଭାବରେ ବା କ୍ଷମତାର ବାହା ରହିଲେ – ସେଥିପାଇଁ ନିଜକୁ ସଂପୂର୍ଣ୍ଣ ସମର୍ପଣ କରିଥିଲେ । କେ ଓଡ଼ିଶାକୁ ନୁହେଁ ଭାରତର ନୀତି ନିର୍ଣ୍ଣୟରେ ଦେଶର ଜଣେ ବିଶିଷ୍ଟ ନେ ଭାବରେ ତାଙ୍କର ଦାନ କମ୍ ନଥିଲା । ତାଙ୍କ ଜୀବନରେ ବିଶ୍ରାମ ନଥି ଅବସର ନଥିଲା, ତାହା ଥିଲା ଦେଶ ପାଇଁ ଜାତି ପାଇଁ ଏକ ମ ସମର୍ପିତ ଜୀବନ । ତାଙ୍କ ଯୋଗୁ ଓଡ଼ିଶାବାସୀ ଭାବରେ ଆମେ ସମ୍ମା ଓ ଗର୍ବିତ । ଓଡ଼ିଶାର ଏହି ଅସାଧାରଣ ବ୍ୟକ୍ତିତ୍ୱ ଓ ନେତୃତ୍ୱର ସ କାମ କରିବାର ସୁଯୋଗ ମୋତେ ଦୀର୍ଘକାଳ ଧରି ମିଳିଥିଲା । ତେ ଆଜି ଏହି ତିରୋଧାନର ଦିବସରେ ମୁଁ ତାଙ୍କ ପ୍ରତି ମୋର ଅନ୍ତରର ଗ ଶ୍ରଦ୍ଧା ଓ ପ୍ରଣତି ଜଣାଉଛି ଏବଂ ପ୍ରାର୍ଥନା କରୁଛି – ହେ ଈଶ୍ୱର ତୁ ଏହିପରି ବୀରପୁରୁଷମାନଙ୍କୁ ଏ ଭୂମିରେ ବାରମ୍ବାର ଜନ୍ମଦିଅ ।

[ତା ୨.୧.୮ ତାରିଖ ସଂଧ୍ୟାରେ ପ୍ରସାରିତ ବେତାର ଭାଷଣରୁ ସଂଗୃହୀତ]



ଏକର୍ମୀମ ଆରୋଗ୍ୟ ଚିକିତ୍ସାଳୟ ରାଜ୍ୟ ସରକାରଙ୍କୁ ହସ୍ତାନ୍ତର ଉତ୍ସବରେ ମୁଖ୍ୟମନ୍ତ୍ରୀ . . .



# ଓଡ଼ିଶାରେ ମତ୍ସ୍ୟଚାଷ ଉନ୍ନୟନ

ଶ୍ରୀ ଶରତ ଚନ୍ଦ୍ର ପଣ୍ଡା

ଜନସଂଖ୍ୟାର କ୍ରମାଗତ ବିସ୍ଫୋରଣ ଫଳରେ ଖାଦ୍ୟାଭାବ ଉତ୍କଟରୂପ ଧାରଣ କରିଛି । ଖାଦ୍ୟ ବିଶେଷତଃ ପୁଷ୍ଟିକର ଖାଦ୍ୟର ଅଭାବ କଥା ସମସ୍ତେ ଅଳ୍ପେ ବହୁତେ ଉପଲବ୍ଧି କରୁଥିବେ । ଖାଦ୍ୟ ସମସ୍ୟାର ସମାଧାନ ନିମିତ୍ତ ନିଆଯାଉଥିବା ବିଭିନ୍ନ ପଦକ୍ଷେପ ମଧ୍ୟରେ ମତ୍ସ୍ୟଉତ୍ପାଦନ ବୃଦ୍ଧି ଉପରେ ବିଶେଷ ଗୁରୁତ୍ୱ ଦିଆଯାଉଛି । ଏହି ପ୍ରାଣୀଜପୁଷ୍ଟିସାର ଖାଦ୍ୟ ଶରୀର ଗଠନ ପକ୍ଷେ ବିଶେଷ ସହାୟକ । ତେଣୁ ବୁଭୁକ୍ଷୁ ମଣିଷ ଧାଇଁ ଆସିଛି ସମୁଦ୍ର ପାଖକୁ । ନଦୀ ପାଖକୁ । ହ୍ରଦ ପାଖକୁ । ପୁଷ୍କରିଣୀ ପାଖକୁ । ବଡ ସୁଖର କଥା, ଏଇ ଭିତ୍ତିଭୂମି ଉପରେ ଏ ବର୍ଷର ବିଶ୍ୱଖାଦ୍ୟ ଦିବସ ଆଧାରିତ । ଏ ବର୍ଷ ଉତ୍ସବର ତାତ୍ପର୍ଯ୍ୟ ହେଲା, ମତ୍ସ୍ୟ ଉନ୍ନୟନ ଓ ମତ୍ସ୍ୟଜୀବୀ କଲ୍ୟାଣ ।

ମାଛରେ ପୁଷ୍ଟିସାର ଶତକଡା ୨୦ ଭାଗ । ଏହା ସହଜରେ ହଜମ ହୁଏ । ମନୁଷ୍ୟ ଶରୀର ଗଠନ ନିମିତ୍ତ ଆବଶ୍ୟକୀୟ ୧୨ ଗୋଟି ଏମିନୋ ଏସିଡ୍ ମଧ୍ୟରୁ ଏଥିରେ ୮ ଗୋଟି ଥାଏ । ମାଛରୁ ମିଳୁଥିବା ସ୍ନେହସାର ଗୁଡ଼ିକ ଶରୀରର ଆବଶ୍ୟକତା ପୂରଣକରେ କିନ୍ତୁ ରକ୍ତରେ କୋଲେଷ୍ଟରଲ ବଢାଏ ନାହିଁ । ଅନ୍ୟାନ୍ୟ ସ୍ନେହସାର ଖାଦ୍ୟଭଳି ଦେହର ରକ୍ତଚାପ ବୃଦ୍ଧି ଆଶଙ୍କା ନଥାଏ । ତେଣୁ ଖାଦ୍ୟ ହିସାବରେ ମାଛର ସ୍ଥାନ ବିଶ୍ୱରେ ଯଥେଷ୍ଟ ଊର୍ଦ୍ଧ୍ୱରେ । ଏକ ସ୍ୱାସ୍ଥ୍ୟକର ଜୀବନର ଏହା ଚିର ସହଚର । ମତ୍ସ୍ୟଲୋଭୀ ଓଡ଼ିଆ ମାନଙ୍କର ଏହା ଏକ ପ୍ରିୟ ଖାଦ୍ୟ ।

ମତ୍ସ୍ୟ ଆହରଣ ଦ୍ୱିବିଧ । ଗୋଟିଏ ହେଲା:—ପୋଖରୀ, ଗଡ଼ିଆରେ ମାଛଚାଷ (                ) ଏବଂ ଅନ୍ୟଟି ହେଲା : ନଦୀ, ହ୍ରଦ, ସମୁଦ୍ରରେ ମାଛଧରା (                ) । ଏହି ଦ୍ୱିବିଧ ଉପାୟରେ ରାଜ୍ୟର ମତ୍ସ୍ୟ ଉନ୍ନୟନ କାର୍ଯ୍ୟକ୍ରମ ପର୍ଯ୍ୟବେଶିତ ।

ରାଜ୍ୟରେ ମତ୍ସ୍ୟଉନ୍ନୟନ ନିମିତ୍ତ କ୍ଷେତ୍ର ପର୍ଯ୍ୟାପ୍ତ ଓ ସଂପଦ ମଧ୍ୟ ପର୍ଯ୍ୟାପ୍ତ, ଅନୁଧ୍ୟାନରୁ ଯାହା ଜଣାଯାଇଛି । ଆମ ରାଜ୍ୟରେ ୩୨,୩୮୦ ହେକ୍ଟର ପୋଖରୀ, ୨,୫୬,୦୦୦ ହେକ୍ଟର ଜଳ ଭଣ୍ଡାର, ୧,୮୦,୦୦୦ ହେକ୍ଟର ହ୍ରଦ ଓ ପାର୍ଙ୍କ ଏବଂ ୧,୫୫,୪୦୦ ହେକ୍ଟର ନଦୀ ଓ ନାଳ ରହିଛି । ଏତଦ୍‌ବ୍ୟତୀତ ୪୮୦ କିଲୋ ମିଟର ପରିବ୍ୟାପ୍ତ ସମୁଦ୍ର ଉପକୂଳ ପର୍ଯ୍ୟାପ୍ତ ମତ୍ସ୍ୟ ସଂପଦର ଗନ୍ତାଘର । ଉପରୋକ୍ତ ସମ୍ବଳକୁ ଆଖି ଆଗରେ ରଖି ମତ୍ସ୍ୟ ଉନ୍ନୟନ କାର୍ଯ୍ୟକ୍ରମ ଗ୍ରୁଲିଛି ।

ବିଗତ ଦଶନ୍ଧିରୁ ମତ୍ସ୍ୟ ଉନ୍ନୟନ କ୍ଷେତ୍ରରେ ଏକ ବୈପ୍ଳବିକ ପରିବର୍ତ୍ତନ ଦେଖାଦେଇଛି । ପୋଖରୀରେ ବୈଜ୍ଞାନିକ ପ୍ରଣାଳୀରେ ସଘନ ମିଶ୍ରିତ ମାଛଚାଷ ଆଜି ଗ୍ରାମାଞ୍ଚଳର ଅର୍ଥନୈତିକ ବିକାଶଲାଗି ସମର୍ଥ, ଏହା ପ୍ରତ୍ୟକ୍ଷ ପ୍ରମାଣିତ ହୋଇଛି । ଧାନଚାଷ ସହିତ ମତ୍ସ୍ୟଚାଷ ତୁଳନାତ୍ମକ ଭାବେ ବିଚାର କରି ଦେଖାଗଲାଣି, ମତ୍ସ୍ୟଚାଷରୁ ପର୍ଯ୍ୟାପ୍ତ ଲାଭ ମିଳି ପାରୁଛି । ମତ୍ସ୍ୟଚାଷ ନିମିତ୍ତ ପ୍ରଥମ ଆବଶ୍ୟକତା ଜାତିଆ ମାଛର ଜାଆଁଳ । ପ୍ରାକୃତିକ ଉପାୟରେ ନଦୀରୁ ସଂଗୃହୀତ ଜାଆଁଳ ଉପରେ ଗୁରୁତ୍ୱ ନ ଦିଆଯାଇ କୃତ୍ରିମ ପ୍ରଭାବିତ ପ୍ରଜନନ ଉପରେ ଅଧିକ ଗୁରୁତ୍ୱ ଆରୋପ କରାଯାଉଛି । କାରଣ ଏହା ବିଶୁଦ୍ଧ । ରାଜ୍ୟର କ୍ରମବର୍ଦ୍ଧିଷ୍ଣୁ ଜାଆଁଳ ଚାହିଦା ମେଣ୍ଟାଇବା ଉଦ୍ଦେଶ୍ୟରେ ବିଶ୍ୱବ୍ୟାଙ୍କ୍ ପ୍ରକଳ୍ପଭାବେ ଓଡ଼ିଶା ମତ୍ସ୍ୟବିହନ ଉନ୍ନୟନ ନିଗମ ଏକ ଅଭିନବ ପଦକ୍ଷେପ । ଚଳିତ ବର୍ଷ ଜାଆଁଳ ଉତ୍ପାଦନ କ୍ଷେତ୍ରରେ ଉଲ୍ଲେଖନୀୟ ଅଗ୍ରଗତି ହୋଇପାରିଛି । କୃତ୍ରିମ ପ୍ରଭାବିତ ପ୍ରଣାଳୀରେ ୩୪୨୪.୫୨ ଲକ୍ଷ ଗୁଣ୍ଡ ଜାଆଁଳ ଉତ୍ପାଦନ ହୋଇଛି । ଚାହିଦା ଅନୁଯାୟୀ ରାଜ୍ୟର ମତ୍ସ୍ୟଚାଷୀଙ୍କୁ ଏହା ଯଥା ସମୟରେ ଯୋଗାଇ ଦିଆଯାଉଛି ।

ଗ୍ରାମାଞ୍ଚଳରେ ପୋଖରୀରେ ମତ୍ସ୍ୟଚାଷ ଆନ୍ଦୋଳନକୁ କ୍ଷିପ୍ରତର କରିବା ଉଦ୍ଦେଶ୍ୟରେ ବିଶ୍ୱବ୍ୟାଙ୍କ ପ୍ରକଳ୍ପ ଭାବେ ମତ୍ସ୍ୟଚାଷୀ ଉନ୍ନୟନ ସଂସ୍ଥା ଏକ ବଳିଷ୍ଠ ଭୂମିକା ଗ୍ରହଣ କରିଛି । ଏହି ତ୍ୱରାନ୍ୱିତ କାର୍ଯ୍ୟକ୍ରମ ଫଳରେ ରାଜ୍ୟର ପତିତ ପୁଷ୍କରିଣୀ ଗୁଡ଼ିକ ଉତ୍ପାଦନକ୍ଷମ ହୋଇ ପାରିଛି । ଏହି କାର୍ଯ୍ୟକ୍ରମରେ ୩୭,୧୩୩ ହେକ୍ଟର ପୋଖରୀ ସର୍ଭେ କରାଯାଇ ପାରିଛି । ୧୭,୩୭୪ ହେକ୍ଟର ଉନ୍ନତ ପୋଖରୀରେ ମିଶ୍ରିତ ମାଛଚାଷ କରାଯାଉଛି । ଏହି କାର୍ଯ୍ୟକ୍ରମ ମାଧ୍ୟମରେ ୩୯,୯୯୩ ଜଣ ଉପଭୋକ୍ତା ଉପକୃତ ହୋଇଛନ୍ତି । ଏହି କାର୍ଯ୍ୟକ୍ରମରେ ୬,୩୫୫ ଜଣ ତପସିଲଭୁକ୍ତ ଜାତି ଓ ୫,୭୦୭ ଜଣ ତପସିଲଭୁକ୍ତ ଉପଜାତି ଉପକୃତ ହୋଇଛନ୍ତି । ଏହି ଆନ୍ଦୋଳନ ଫଳରେ ଗତ ୬ ବର୍ଷ ତଳେ ଥିବା ମତ୍ସ୍ୟ ଉତ୍ପାଦନ ସ୍ତର ୧୪,୫୦୦ ମେଟ୍ରିକ୍ ଟନ୍ ଆଜି ୨୪,୫୦୦ ମେଟ୍ରିକ୍ ଟନ୍‌ରେ ଆସି ପହଞ୍ଚିପାରିଛି ।

ଗ୍ରାମାଞ୍ଚଳ ଆର୍ଥିକ ଥଇଥାନ କାର୍ଯ୍ୟକ୍ରମର ପୋଖରୀରେ ମାଛଚାଷ କରିଆରେ ୨୧୪୮ ଜଣ ସମୁଦ୍ରରେ ମାଛଚାଷ କାର୍ଯ୍ୟକ୍ରମରେ ୩୭୯ ଜଣ ଏବଂ ଜଳଭଣ୍ଡାରରୁ ମାଛଧରା କାର୍ଯ୍ୟକ୍ରମରେ ୨୧ ଜଣ ଉପକୃତ

ହୋଇଛନ୍ତି । ସମନ୍ବିତ ଗ୍ରାମ୍ୟ ବିକାଶ ଯୋଜନାରେ ପୋଖରୀରେ ମାଛଚାଷ କାର୍ଯ୍ୟକ୍ରମରେ ୨୮ ଜଣ ଓ ମାଛଧରା କାର୍ଯ୍ୟକ୍ରମରେ ୧୭,୫୩୮ ଜଣ ଉପଭୋକ୍ତା ଉପକୃତ ହୋଇଛନ୍ତି ।

ଓଡ଼ିଶାରେ ଲୁଣିପାଣି ଚିଙ୍ଗୁଡ଼ି ଚାଷ ଆଜି ଦାରିଦ୍ର୍ୟ ଦୂରୀକରଣ କାର୍ଯ୍ୟକ୍ରମର ଏକ ଅଭିନବ ପଦକ୍ଷେପ । ଏହି କାର୍ଯ୍ୟକ୍ରମ ଫଳରେ ଦରିଦ୍ର ମତ୍ସ୍ୟଜୀବୀ ଦୃଢ ଆତ୍ମବିଶ୍ୱାସ ଫେରିପାଇବା ସଙ୍ଗେ ସଙ୍ଗେ ଆର୍ଥିକ ସ୍ୱଚ୍ଛଳତା ଫେରି ପାଇଛି ।

ଓଡ଼ିଶାରେ ଥିବା ୨୦,୦୦୦ ହେକ୍ଟର ପତିତ ଲୁଣିପାଣି କ୍ଷେତ୍ର ମଧ୍ୟରୁ ୧୭,୦୦୦ ହେକ୍ଟର କ୍ଷେତ୍ରର ସର୍ଭେ କାର୍ଯ୍ୟ ଶେଷ ହୋଇଛି । ଏଯାବତ୍ ୫୨୩.୯୭ ହେକ୍ଟର କ୍ଷେତ୍ରରେ ଲୁଣିପାଣି ଚିଙ୍ଗୁଡ଼ି ଚାଷ କରାଯାଉଛି । କ୍ରମବର୍ଦ୍ଧିଷ୍ଣୁ ଚିଙ୍ଗୁଡ଼ି ଜାଆଁଳ ସୁବିଧା ପରିପୂରଣ ଉଦ୍ଦେଶ୍ୟରେ ଭାରତ ସରକାରଙ୍କ ଏମ.ପି.ଇ.ଡି.ଏ. ସଂସ୍ଥା ଆନୁକୂଲ୍ୟରେ ଚିଙ୍ଗୁଡ଼ି ଜାଆଁଳ ଉତ୍ପାଦନ କେନ୍ଦ୍ର (ହ୍ୟାଚେରୀ) ପ୍ରତିଷ୍ଠା କରାଯାଉଛି ଏବଂ ଦାମୋଦରପୁରଠାରେ ରାମଚଣ୍ଡୀ ପ୍ରାଥମିକ ମତ୍ସ୍ୟଜୀବୀ ସମବାୟ ସମିତି ଦ୍ୱାରା ଏକ ଚିଙ୍ଗୁଡ଼ି ଜାଆଁଳ ଉତ୍ପାଦନ ବ୍ୟାଙ୍କ ପ୍ରତିଷ୍ଠିତ ହେଉଅଛି । ଏମ.ପି.ଇ.ଡି.ଏ. ତରଫରୁ ଅନ୍ୟ ଏକ ଚିଙ୍ଗୁଡ଼ି ଉତ୍ପାଦନ ହ୍ୟାଚେରୀ ପାରାଦ୍ୱୀପଠାରେ ଏବଂ ଅନ୍ୟ ଏକ ଚିଙ୍ଗୁଡ଼ି ଜାଆଁଳ ଉତ୍ପାଦନ ବ୍ୟାଙ୍କ ବାଲେଶ୍ୱରଠାରେ ପ୍ରତିଷ୍ଠିତ ହେବାର ପ୍ରସ୍ତାବ ରହିଛି ।

୪୮୦ କିଲୋମିଟର ଦୈର୍ଘ୍ୟ ବିସ୍ତୃତ ଉପକୂଳରେ ସାମୁଦ୍ରିକ ମାଛଧରା କାର୍ଯ୍ୟକ୍ରମର ବ୍ୟାପକ ବିକାଶ ଓ ମାଛଧରା ପୋତ ଓ ନୌକାର ଆଶ୍ରୟ ତଥା ଖଲାସୀ ବ୍ୟବସ୍ଥା ନିମିତ୍ତ ସାମୁଦ୍ରିକ ମାଛଧରା କେନ୍ଦ୍ର ଓ ପୋତମାନଙ୍କରେ ମାଛଧରା ବନ୍ଦର ଓ ଜେଟୀ ନିର୍ମାଣ କାର୍ଯ୍ୟକ୍ରମ ଉପରେ ଗୁରୁତ୍ୱ ଆରୋପ ପୂର୍ବକ ମତ୍ସ୍ୟଜୀବୀ କଲ୍ୟାଣ ସାଧନ କରାଯାଉଛି । କାରଣ ଓଡ଼ିଶା ଉପକୂଳରେ ସମୁଦ୍ର ମାଛଧରା କାର୍ଯ୍ୟକ୍ରମରେ ଏହା ବିରାଟ ଅନ୍ତରାୟ ସୃଷ୍ଟି କରୁଛି । ବାଲେଶ୍ୱରସ୍ଥ ଧାମରା ମାଛଧରା ବନ୍ଦର କାର୍ଯ୍ୟକ୍ଷମ ହେବା ପରେ ପରେ ପୁରୀ ଜିଲ୍ଲା ନୂଆଗଡ (ଅସ୍ତରଙ୍ଗ), କଟକ ଜିଲ୍ଲାର ପାରାଦ୍ୱୀପ ଓ ଗଞ୍ଜାମ ଜିଲ୍ଲାର ଗୋପାଳପୁରଠାରେ ଅନୁରୂପ ମାଛଧରା ବନ୍ଦର ନିର୍ମାଣ ଲାଗି ପଦକ୍ଷେପ ନିଆଯାଉଛି । ତେବେ କେନ୍ଦ୍ର ସରକାରଙ୍କ ସହାୟତାରେ ଏହି କାର୍ଯ୍ୟକ୍ରମ ଗୁଡ଼ିକୁ ତ୍ୱରାନ୍ୱିତ କରିବା ଦିଗରେ ବିହିତ ବ୍ୟବସ୍ଥା କରାଯାଉଛି ।

ଓଡ଼ିଶାର ସାମୁଦ୍ରିକ ମତ୍ସ୍ୟଜୀବୀ ସମ୍ପ୍ରଦାୟର ସଂଖ୍ୟା ପ୍ରାୟ ୫୦,୦୦୦ । ରାଜ୍ୟର ୩୨୯ ଗୋଟି ଗ୍ରାମରେ ଏମାନଙ୍କ ଅଧିବାସ । ଅତବର୍ଷା ଶୀତକାଳର ମଧ୍ୟରେ ଜୀବନକୁ ବିପନ୍ନ କରି ସମୁଦ୍ରରେ ଏମାନେ ମାଛ ଧରନ୍ତି ଏବଂ ପାରମ୍ପରିକ ନୌକା ସାହାଯ୍ୟରେ ଏମାନେ ୩୦,୦୦୦ ମେଟ୍ରିକ୍ ଟନ୍ ମାଛ ଧରନ୍ତି, ଯାହାର ଆନୁମାନିକ ମୂଲ୍ୟ ୨୭ କୋଟି ଟଙ୍କା ।

ସାମୁଦ୍ରିକ ମତ୍ସ୍ୟଜୀବୀମାନଙ୍କ କଲ୍ୟାଣ ଉଦ୍ଦେଶ୍ୟରେ କେଉଁଗୁଡ଼ିଏ ଯୋଜନା ସଂପ୍ରତି କାର୍ଯ୍ୟ କରୁଛି, ସେ ସମ୍ପର୍କରେ ସୂଚନା ଦିଆଯାଉଛି । ମତ୍ସ୍ୟଜୀବୀମାନେ ସାଧାରଣତଃ ମାଛଧରା ବିରୋଟ ଓ ମନ୍ଦା ସମୟରେ ସେମାନଙ୍କୁ ଆର୍ଥିକ ମଧ୍ୟରେ ଗତି କରିବାକୁ ପଡ଼ିଥାଏ । ଏହି ବିରୋଟ କାଳରେ ଦେବା ଉଦ୍ଦେଶ୍ୟରେ ସାହାଯ୍ୟ ଓ ସଂଚୟ ଯୋଜନା ଉଦ୍ଦିଷ୍ଟ । ମତ୍ସ୍ୟଜୀବୀକୁ ପାଣ୍ଠିର ଅର୍ଦ୍ଧେକ ଭାଗ ସରକାରଙ୍କୁ ବହନ ପଡ଼ିଥାଏ । ମାଛଧରା ସମୟରେ କୌଣସି ଆକସ୍ମିକ ଦୁର୍ଘଟ ଦୁର୍ଘଟଣା ଜନିତ ଅକ୍ଷମତା ଯୋଗୁଁ ମତ୍ସ୍ୟଜୀବୀମାନଙ୍କ ପାଇଁ ବୀମା ଏକ ଆଶୀର୍ବାଦ ତୁଲ୍ୟ । ଏହି ବୀମା ଫଳରେ ମୃତ ମ ପରିବାର ୧୫ ହଜାର ଟଙ୍କା ଓ ଅକର୍ମଣ୍ୟ ମତ୍ସ୍ୟଜୀବୀ ୭,୫୦ କ୍ଷତିପୂରଣ ପାଇବାର ବ୍ୟବସ୍ଥା ଅଛି । ଏହି ଯୋଜନା ପ୍ରବର୍ତ୍ତନ ଓଡ଼ିଶାରେ ୪୭ ଗୋଟି ମତ୍ସ୍ୟଜୀବୀ ପରିବାର ଉପକୃତ ହେ ପାରମ୍ପରିକ ମତ୍ସ୍ୟଜୀବୀମାନଙ୍କ ସ୍ୱାର୍ଥ ସଂରକ୍ଷଣ ନିମିତ୍ତ ଉପକୂଳଠାରୁ ୫ କିଲୋମିଟର ମଧ୍ୟରେ ଯନ୍ତ୍ରଚାଳିତ କାର୍ଯ୍ୟକ୍ରମ ନିଷିଦ୍ଧ କରାଯାଇଛି ।

ବିଶ୍ୱଖାଦ୍ୟ କୃଷି ସଂସ୍ଥାର ବଙ୍ଗୋପସାଗରୀୟ କାର୍ଯ୍ୟକ୍ରମ ଏକ ମତ୍ସ୍ୟଜୀବୀ କଲ୍ୟାଣକର ଯୋଜନା । ଏଇ ଯୋଜନାର ଲକ୍ଷ ମତ୍ସ୍ୟଜୀବୀମାନଙ୍କୁ ଉପଯୁକ୍ତ ଜୀବିକା ଯୋଗାଇ ଶୋଷଣରୁ ମୁକ୍ତ କରି ଶିକ୍ଷିତ କରି ବ୍ୟବହୃତ ନୌକାର ନ ଘଟାଇବା ଆର୍ଥିକ ଅବସ୍ଥାର ଉନ୍ନତି ଘଟାଇବା । ଏହି କାର୍ଯ୍ୟ ଗୋପାଳପୁର, ପୁରୀ, କଟକ ଜିଲ୍ଲାର ପାରାଦ୍ୱୀପ ପ୍ରଭୃତି ମତ୍ସ୍ୟଜୀ ଅଞ୍ଚଳମାନଙ୍କରେ ପର୍ଯ୍ୟାୟକ୍ରମେ ୨୦ ଗୋଟି ବିଚଲ୍ୟାଣ୍ଡିଂ ଯୋଗାଇ ଦିଆଯାଉଛି । ଏହା ଫଳରେ ଦୈନିକ ହାରାହାରି ୧ ଟଙ୍କା ମୂଲ୍ୟର ମାଛ ଧରାଯାଇ ପାରୁଛି । ଯାହାକି ବିନା ଯ ନୌକା ଦ୍ୱାରା ଧରା ଯାଉଥିବା ମାଛର ପରିମାଣଠାରୁ ୫ ଗୁଣ ଏଇ ଯନ୍ତ୍ରଚାଳିତ ଡଙ୍ଗୀ ପାଇଁ ଶତକଡା ୫୦ ଭାଗ ରିହାତି ଓ ୪ ଋଣ ବ୍ୟବସ୍ଥା ଅଛି । ଏତଦ୍‌ବ୍ୟତୀତ ମତ୍ସ୍ୟଜୀବୀମାନେ କି ସମୟରେ ମାଛଧରା ସ୍ଥଳକୁ ଯାଇପାରିବେ ଓ ଅଧିକ ମାଛ କରିପାରିବେ, ସେଥିପାଇଁ ପାରମ୍ପରିକ ନୌକାକୁ ଯନ୍ତ୍ର ଚାଳିତ ବ୍ୟବସ୍ଥା ହେଉଛି । ଏଯାବତ୍ ୨୦ ଗୋଟି ନୌକା ଯ କରାଗଲାଣି । ସପ୍ତମ ଯୋଜନା ଅନୁରୂପ ୬୬୦ ଗୋଟି ଯନ୍ତ୍ରଚାଳିତ କରିବାର ପ୍ରସ୍ତାବ ରହିଛି ।

ସମୁଦ୍ର ଉପକୂଳବର୍ତ୍ତୀ ମତ୍ସ୍ୟଜୀବୀ ବହୁଳ ଗ୍ରାମମାନଙ୍କୁ ଗମ ପାଇଁ ରାସ୍ତା, ପାନୀୟ ଜଳ, ବାସଗୃହ, ବିଦ୍ୟୁତ ସଂଯୋଗ କରାଯାଉଛି । ମାଛ ସଂରକ୍ଷଣ ନିମିତ୍ତ ଶୀତଳ ଭଣ୍ଡାର, ଶୁ ସିମେଣ୍ଟ ଚଟାଣର ସୁବିଧା କରାଯାଉଛି । ୬୦ ବର୍ଷ ଧୀବରମାନଙ୍କ ନିମିତ୍ତ ବାର୍ଦ୍ଧକ୍ୟ ଭତ୍ତାର ପ୍ରଚଳନ ବ୍ୟବସ୍ଥା ରହିଛି ।



ମୁଖ୍ୟମନ୍ତ୍ରୀଙ୍କ ସହ ଆଲୋଚନାରେ କେନ୍ଦ୍ରମନ୍ତ୍ରୀ ଶ୍ରୀ ...



# ଗାଆଁର ସ୍ୱାସ୍ଥ୍ୟ

ଶ୍ରୀ ପ୍ରହ୍ଲାଦ ମଲିକ

ଯିଏ କୌଣସି ଗ୍ରାମ ଭିତରକୁ ପ୍ରବେଶ କଲାବେଳେ ଗ୍ରାମ ମୁଣ୍ଡରୁ ହିଁ ସେ ଗ୍ରାମର ସାଧାରଣ ସ୍ୱାସ୍ଥ୍ୟ ଅବସ୍ଥା କ'ଣ ସହଜରେ ଅନୁମାନ କରିହେବ । ଗ୍ରାମ ମୁଣ୍ଡ ରାସ୍ତା ପାଖରେ ଗାଆଁର ପିଲାଛୁଆ ଏବଂ ସ୍ତ୍ରୀ ଲୋକମାନେ ମଳମୂତ୍ର ତ୍ୟାଗ କରିବାର ଦେଖାଯାଇଥାଏ । ଏହା ଅତ୍ୟନ୍ତ ଅସ୍ୱାସ୍ଥ୍ୟକର ପରିବେଶର କାରଣ ହୋଇଥାଏ । କିନ୍ତୁ କୌଣସି ଏକ ଆଦିବାସୀ ବସ୍ତିରେ ପ୍ରବେଶ କରିବା ସମୟରେ ଏଭଳି ଅସ୍ୱାସ୍ଥ୍ୟକର ପରିବେଶ ଦୃଷ୍ଟି ଗୋଚର ହୁଏ ନାହିଁ । ଯଦିଓ ଉତ୍କଟ ଦାରିଦ୍ର୍ୟ ଓ ଅଭାବ ଭିତରେ ବଣ ଜଙ୍ଗଲ ଓ ପାହାଡ ପର୍ବତରେ ଆମର ଅସଂଖ୍ୟ ଆଦିବାସୀ ଭାଇଭଉଣୀମାନେ ବହୁ କଷ୍ଟରେ କାଳାତିପାତ କରନ୍ତି; ସେମାନଙ୍କର ଏକ ଉନ୍ନତ ସଂସ୍କୃତି ଓ ସ୍ୱାସ୍ଥ୍ୟରକ୍ଷା ଜ୍ଞାନ ଦେଖିବାକୁ ମିଳେ ।

ଆମର କେତେକ ସ୍ଥାନରେ ଗ୍ରାମ ଭିତରେ ଥିବା ଦଳପୋଖରୀମାନ ସଫା ନହେଉଥିବାରୁ ଏବଂ ଗ୍ରାମ ଦାଣରେ ଗୋବର, ଖତ ଖଡିଆଠୀ ପ୍ରଭୃତି ଆବର୍ଜନାମାନ ଗଦା ହୋଇ ଥିବାରୁ ସେ ସବୁ ମଶା ପ୍ରଭୃତି ରୋଗଉତ୍ପାଦନକାରୀ ଜୀବାଣୁବାହକ ବଢ଼ିବାରେ ଓ ଅଣ୍ଡାଦେବାରେ ସହାୟକ ହୋଇଥାନ୍ତି । ଫଳରେ ସଂଧ୍ୟା ହେବା ମାତ୍ରେ ଗ୍ରାମର ପାଞ୍ଚ ପଚିଶ ଲୋକ ଏକାଠି ବସି କିଛି ଏକ ଆଲୋଚନା କରିବା ଏଭଳି ମଶାଙ୍କ ଉପଦ୍ରବରୁ ସମ୍ଭବ ହୋଇପାରେ ନାହିଁ । ଗାଆଁରେ ଅଧିକାଂଶ ଗରିବ ଶ୍ରେଣୀର ଲୋକେ ବାସ କରୁଥିବାରୁ ସେମାନଙ୍କ ପକ୍ଷେ ମଶାରୀ ପ୍ରଭୃତି ବ୍ୟବସ୍ଥା କରିବା ସମ୍ଭବ ନୁହେଁ । ତେଣୁ ରାତି ସାରା ଶାନ୍ତିରେ ଶୋଇବା ଏକ ଅସମ୍ଭବ ବ୍ୟାପାର ହୋଇଉଠେ । ଏଥିପାଇଁ ଅନେକ ଲୋକ ମ୍ୟାଲେରିଆ, ଫାଇଲେରିଆ ଏବଂ ଅନ୍ୟାନ୍ୟ ଜ୍ୱର ପ୍ରଭୃତିରେ ଆକ୍ରାନ୍ତ ହୋଇ ବହୁ କଷ୍ଟ ଭୋଗନ୍ତି । ତେଣୁ ଗ୍ରାମବାସୀମାନଙ୍କର ସ୍ୱାସ୍ଥ୍ୟ ବ୍ୟବସ୍ଥା ପ୍ରତି ଦୃଷ୍ଟି ଦେବାକୁ ହେଲେ ପ୍ରଥମେ ଏଭଳି କେତେକ ମୌଳିକ ସମସ୍ୟାର ସମାଧାନ କରିବାକୁ ହେବ ।

ବିଭିନ୍ନ ଗ୍ରାମର ଲୋକମାନେ ଚିକିତ୍ସାଳୟ ବା ସ୍ୱାସ୍ଥ୍ୟକେନ୍ଦ୍ର ପାଇଁ ଦାବୀମାନ ଉପସ୍ଥାପିତ କରୁଛନ୍ତି । ସରକାର ମଧ୍ୟ ନୀତିଗତ ଭାବରେ ନିଷ୍ପତ୍ତି ନେଇଛନ୍ତି ଯେ ଚିକିତ୍ସାର ସୁଯୋଗ ଗାଆଁ ଗହଳିରେ ବାସକରୁଥିବା ଲୋକଙ୍କ ପାଖରେ ପହଞ୍ଚାଇବାକୁ ହେବ । ଇଂଲଣ୍ଡ ପ୍ରଭୃତି ଉନ୍ନତ ଦେଶମାନଙ୍କରେ ପ୍ରତ୍ୟେକ ଦୁଇ ହଜାର ଜନସଂଖ୍ୟା ପାଇଁ ଜଣେ ଡାକ୍ତର ଓ ଜଣେ ନର୍ସ ଯୋଗାଇ ଦେବାର ଦାୟିତ୍ୱ ଆମ ରାଷ୍ଟ୍ର ଗ୍ରହଣ କରିଛି । ଆମେ ଅବଶ୍ୟ ସେ ଅବସ୍ଥାକୁ ଏବେ ପହଞ୍ଚି ନାହୁଁ । ଆମର କିନ୍ତୁ ମୌଳିକ ଲକ୍ଷ୍ୟ ହେଉଛି ପଞ୍ଚାୟତରେ ଗୋଟିଏ ସ୍ୱାସ୍ଥ୍ୟ କେନ୍ଦ୍ର ଖୋଲିବାକୁ ପଡ଼ିବ ଏବଂ ପଞ୍ଚାୟତର ଜନସାଧାରଣଙ୍କୁ ଏହି ସ୍ୱାସ୍ଥ୍ୟ କେନ୍ଦ୍ର ମାଧ୍ୟମରେ ଚିକିତ୍ସାର ସୁଯୋଗ ଦେବାକୁ ପଡ଼ିବ । ସେଥିପାଇଁ ପ୍ରତିବର୍ଷ ନୂଆ ନୂଆ ସ୍ୱାସ୍ଥ୍ୟକେନ୍ଦ୍ରମାନ ଖୋଲୁଛି । ଯେତେ ଅଧିକ ସ୍ୱାସ୍ଥ୍ୟକେନ୍ଦ୍ର ଖୋଲୁଛି, ଲୋକଙ୍କର ଦାବି ସେତେ ଅଧିକ ବଢ଼ୁଛି । ଏହା ସର୍ବଦା ସ୍ୱାଗତ ଯୋଗ୍ୟ ।

ଏକଥା ଅବଶ୍ୟ ସତ୍ୟ ଯେ ଜନସାଧାରଣଙ୍କ ପାଇଁ ସର୍ବଦା ଚିକିତ୍ସା କେନ୍ଦ୍ର ଆବଶ୍ୟକତା ରହିଛି । କିନ୍ତୁ ସ୍ୱାସ୍ଥ୍ୟ କେନ୍ଦ୍ର ମାଧ୍ୟମରେ ଆମେ ଯେତିକି ଔଷଧ ପତ୍ର ଓ ଅନ୍ୟାନ୍ୟ ଆନୁସଂଗିକ ଉପକରଣ ଯୋଗାଉଥାଏ, ସେଥିରେ ସେହି ସବୁ ଲୋକଙ୍କ ଆବଶ୍ୟକତା ମେଣ୍ଟୁଛି କି ? କେତେଗୁଡ଼ା ଆବଶ୍ୟକତାବେଳେ ସ୍ୱାସ୍ଥ୍ୟ କେନ୍ଦ୍ରର ଅଭାବ ଲୋକେ ଅନୁଭବ କରନ୍ତି । କିନ୍ତୁ ତାହା ଏକମାତ୍ର ବାଟ ନୁହେଁ, ଯାହା ମାଧ୍ୟମରେ ଗାଆଁର ସ୍ୱାସ୍ଥ୍ୟ ବଢ଼ାଇଯାଇ ପାରିବ । ଗୋଟିଏ ଗୋଟିଏ ସ୍ୱାସ୍ଥ୍ୟକେନ୍ଦ୍ର ମାଧ୍ୟମରେ ଯେତିକି ଔଷଧପତ୍ର ଲୋକମାନଙ୍କ ପାଇଁ ଯୋଗାଇ ଦିଆଯାଏ, ତାହା ରୋଗୀମାନଙ୍କ ଆବଶ୍ୟକତା ପାଇଁ ଯଥେଷ୍ଟ ନୁହେଁ । ଏତଦ୍‌ବ୍ୟତୀତ ସ୍ୱାସ୍ଥ୍ୟକେନ୍ଦ୍ରର ଡାକ୍ତର, ସେବିକା ଏବଂ ଅନ୍ୟାନ୍ୟ କର୍ମଚାରୀ ରହିଲେ ସେମାନଙ୍କର ଯଦି ଉଚିତ ଜନସାଧାରଣମାନଙ୍କ ପାଇଁ ଆନ୍ତରିକ ଦରଦ ନଥାଏ, ତେବେ ଏ ସ୍ୱାସ୍ଥ୍ୟକେନ୍ଦ୍ର ପ୍ରତିଷ୍ଠା ଯୋଜନାର ଲକ୍ଷ୍ୟ ପୂରଣ କରିବାରେ ସମର୍ଥ ହେଉନି ଲୋକେ ସେଥିରେ ଲାଭ ପାଉ ନାହିଁ । ଘଟଣାଚକ୍ରରେ ମୁଁ ନିକଟରେ ଫୁଲବାଣୀ ଜିଲ୍ଲାକୁ ଯାଇଥିଲି । ସେଠାରେ ଜାଣିବାକୁ ପାଇଲି ଯେ ୪୭ଟି ସ୍ୱାସ୍ଥ୍ୟ କେନ୍ଦ୍ରରେ ଡାକ୍ତର ନାହାନ୍ତି । ଯେଉଁମାନଙ୍କୁ ସେସବୁ ଡାକ୍ତରଖାନାରେ ପୋଷ୍ଟ କରାଯାଉଛି, ସେମାନେ ବିଭିନ୍ନ କାରଣ ଦର୍ଶାଇ କାର୍ଯ୍ୟରେ ଯୋଗ ଦେଉ ନାହାନ୍ତି । ଫୁଲବାଣୀ ପରି ଏକ ଆଦିବାସୀ ଅଧ୍ୟୁଷିତ ଅଞ୍ଚଳରେ ଯେଉଁଠାରେ ଗରିବ ଆଦିବାସୀ ଜନସାଧାରଣଙ୍କୁ ଅଧିକ ସେବା ଦେବାକୁ ପଡ଼ିବ, ସେଠାରେ ଡାକ୍ତରମାନେ କାର୍ଯ୍ୟରେ ଯୋଗ ନଦେବା ଅତ୍ୟନ୍ତ ଦୁର୍ଭାଗ୍ୟ ଜନକ । ଏଠାରେ ଡାକ୍ତର କିମ୍ବା କୌଣସି କର୍ମଚାରୀମାନଙ୍କର ଦୟା ଉପରେ କେହି ନିର୍ଭର କରିବା ପାଇଁ ପ୍ରସ୍ତୁତ ନାହିଁ । ଯେଉଁମାନଙ୍କ ପାଇଁ ଏ ଦରିଦ୍ର ସାଧାରଣଙ୍କ ରାଜକୋଷରୁ ଲକ୍ଷ ଲକ୍ଷ ଟଙ୍କା

ଗର୍ବ କରାଯାଉ ସେମାନଙ୍କୁ ଡାକ୍ତର ଇଂଜିନିୟର ଓ ବିଶେଷଜ୍ଞ ରୂପେ ପ୍ରସ୍ତୁତ କରାଯାଉଛି, ସେମାନଙ୍କ ଭିତରେ ପୁଣି କର୍ତ୍ତବ୍ୟ ଓ ଦାୟିତ୍ୱବୋଧର ଏବେ ଅଭାବ । ଏହା କୌଣସି ଅନୁକୂଳ ତଥା ବିକାଶଶୀଳ ରାଷ୍ଟ୍ର ପାଇଁ ଶୁଭ ସୂଚନା ନୁହେଁ । ଯେଉଁମାନଙ୍କ ଭିତରେ କର୍ତ୍ତବ୍ୟବୋଧର ଏବେ ଅଭାବ ରହିଛି, ସେମାନେ ପୁଣି ଦରିଦ୍ର ଲୋକଙ୍କ ପାଇଁ ଅନୁଭବ କରିବେ ଓ ତାଙ୍କ ପାଇଁ ଦରଦୀ ହୋଇ ଉଠିବେ—ଏହା ବିଡମ୍ବନା ମାତ୍ର । ଦେଶର ତଥାକଥିତ ବୁଦ୍ଧିଜୀବୀ ଶ୍ରେଣୀ ଯେତେବେଳେ ପର୍ଯ୍ୟନ୍ତ ଏହା ଅନୁଭବ କରିବାପାଇଁ ସମର୍ଥ ହୋଇ ନାହାନ୍ତି ସେତେଦିନ ପର୍ଯ୍ୟନ୍ତ ଯୋଜନା ମାଧ୍ୟମରେ ଏକ ବିକଶିତ ପ୍ରତିଷ୍ଠିତ ରାଷ୍ଟ୍ର ଗଢି ତୋଳିବା ସୁଦୂର ପରାହତ ହେବ ।

ମୁଁ ସେଇଥି ପାଇଁ କହିବାକୁ ଚାହୁଁଛି, ଆମେ ଗାଆଁବାଲା ଆମକୁ ରକ୍ଷାକରିବା ପାଇଁ କଅଣ କରିବା ? ଏଥିରେ ଆମର ପ୍ରଥମ କର୍ତ୍ତବ୍ୟ ହେଉଛି ଭଗବାନଙ୍କ ସୃଷ୍ଟିରେ ଯେତେବେଳେ ରୋଗ ଅଛି ସେତିକିବେଳେ ତାହାର ନିରାକରଣ ବ୍ୟବସ୍ଥା ମଧ୍ୟ ରହିଛି । ପ୍ରଥମ କଥାଟି ହେଉଛି ରୋଗ ନ ହେବା ପାଇଁ କଅଣ କରିବା ଓ ରୋଗ ହେଲେ ତାହାର କିଭଳି ଚିକିତ୍ସା କରିବା ? ପ୍ରତ୍ୟେକ ରୋଗର ଘର ହେଉଛି ପେଟଗୋଳମାଳ । ପେଟ ଗୋଳମାଳ ଯେତିକି ଦୂର କରିପାରିବା, ଆମର ସାଧାରଣ ରୋଗ ସେତିକି କମିଯିବ । ପେଟ ଗୋଳମାଳର ମୁଖ୍ୟ କାରଣ ଖାଦ୍ୟ ଓ ପାନୀୟରେ ସଂଯମର ଅଭାବ । ଅଖାଦ୍ୟ ବା ପଚାସଢା ଖାଦ୍ୟ ନଖାଇବା ପାଇଁ ଆମେ ସମସ୍ତ ପ୍ରକାର ଯତ୍ନବାନ ହେବା । ବିଶେଷକରି ଆମ ବାଡ଼ିରେ କରିଥିବା ଟଟକା ପନିପରିବା ଓ ଶାଗ ଇତ୍ୟାଦି ଆମ ଖାଦ୍ୟର ଏକ ମୁଖ୍ୟ ଅଂଶ ହେବା ଉଚିତ । ଏହା ଛଡ଼ା ପାନୀୟ ଜଳ ଏକ ମୁଖ୍ୟ ସମସ୍ୟା । ଟିଉବ୍ ୱେଲ କିମ୍ବା ଭଲ ପାଣି ପଡୁଥିବା କୂଅରୁ ପାଣି ସଂଗ୍ରହ କରି ପାନୀୟ ରୂପେ ବ୍ୟବହାର କରିବା ବାଞ୍ଛନୀୟ । ଏଥିପାଇଁ ବିଭିନ୍ନ ଗ୍ରାମରେ ଯୋଜନା ମାଧ୍ୟମରେ ସରକାରଙ୍କ ତରଫରୁ ଆବଶ୍ୟକ ଭଳି ପାନୀୟ ଜଳ ପାଇଁ ନଳକୂପ ଓ ସାଧାରଣ କୂପମାନ କରାଯାଇଛି । ଆମେ ଏହାର ସୁଯୋଗ ନେବା ଉଚିତ । ଏହା ଛଡ଼ା ଗ୍ରାମରେ ଜ୍ୱର, ଶର୍ଦ୍ଦି ଓ କାଶ ପ୍ରଭୃତି କେତେକ ନିତି ଦିନିଆ ରୋଗରେ ଲୋକମାନଙ୍କୁ ଦୁଃଖ ଭୋଗିବାକୁ ପଡେ । ଏହା ମଧ୍ୟ ଅସ୍ୱାସ୍ଥ୍ୟକର ପରିବେଶରୁ ସୃଷ୍ଟି ହୋଇଥାଏ । ପୂର୍ବରୁ ଯାହା କହିଛି ଦଳ ପରିପୂର୍ଣ୍ଣ ନାଳ, ନର୍ଦ୍ଦମା, ପୋଖରୀ ଏବଂ ଗାଆଁ ଦାଣ୍ଡରେ ପଡ଼ି ରହିଥିବା ଲୋକଙ୍କର ଅଳିଆ ପ୍ରଭୃତି ଏ ସବୁ ରୋଗ ପାଇଁ ମୁଖ୍ୟତଃ ଦାୟୀ । ଏହିଥିରୁ ବିଭିନ୍ନ ଜୀବାଣୁ ଓ ମଶା ଜନ୍ମି ଲୋକଙ୍କୁ କାମୁଡ଼ିବା ଫଳରେ ଏହି ସବୁ ରୋଗହୁଏ । ରାସ୍ତା କଡ଼ରେ ଝାଡ଼ା ଫେରିବା ଦ୍ୱାରା ସେହି ମଳକୁ ଖାଲି ଗୋଡ଼ରେ ମାଡ଼ିଲେ ଜୀବାଣୁ ସବୁ ଲୋମକୂପ ଦେଇ ଶରୀରରେ ପ୍ରବେଶ କରନ୍ତି ଓ ରକ୍ତ ଶୋଷି ନିଅନ୍ତି । ଏହି ରକ୍ତହୀନତା ରୋଗରେ ଗାଆଁର ପ୍ରାୟ ନବେରୁ ପଞ୍ଚାନବେ ଭାଗ ଲୋକେ ଆକ୍ରାନ୍ତ ହୋଇଥାନ୍ତି । ତେଣୁ ଗାଆଁ ପରିବେଶକୁ ସୁନ୍ଦର ଉପଭୋଗ୍ୟ କରି ଗଢ଼ିବାକୁ ହେଲେ ସର୍ବନିମ୍ନ ଏହି କେତୋଟି ବିଷୟ ପ୍ରତି ଦୃଷ୍ଟି ଦେବାକୁ ପଡ଼ିବ ।

୧—ଗାଆଁ ପୋଖରୀ, ରାସ୍ତା ଓ ଗାଆଁ ଦାଣ୍ଡରେ ଗଦା ହୋଇଥିବା ଅଳିଆ ଓ ଦଳ ପ୍ରଭୃତି ସଫା କରିବା । ଗାଆଁର ଯୁବକମାନେ ଏକ ଯୁଟ ହୋଇ ଗାଆଁ ଲୋକଙ୍କ ସାହାଯ୍ୟରେ ଏ ସମସ୍ତ କାର୍ଯ୍ୟ କରିବାକୁ ସମର୍ଥ ହୋଇପାରିବେ ।

୨—ପ୍ରତ୍ୟେକ ପରିବାର ନିଜ ବାଡ଼ିରେ ନିଜ ପାଇଁ ପାଇଖାନା ଯିବାର ବ୍ୟବସ୍ଥା କରିବେ । ଏଥିପାଇଁ ଏକ ପ୍ରକାର ପାଇଖାନା ବା ପ୍ୟାନ୍ ବାଙ୍ଗାଲୋରରେ ତିଆରି ହେଉଥିବାର ଦେଖିଲୁ । ଯାହାକୁ ଗୋଟିଏ ବଜାରରେ ସୁଲଭ ମଧ୍ୟ ମିଳାଯାଇ ପାରିବ । ସେହି ଭଳି ଗୋଟେ ଗୋଟେ ପ୍ୟାନ୍ ଆଣି ପ୍ରତ୍ୟେକ ବାଡ଼ିରେ ଗୋଟିଏ ଗୋଟିଏ ପାଇଖାନା ତିଆରି କରାଯାଇ ପାରିବ । ଏବଂ ପରିବାରର ପିଲାଛୁଆ ସମସ୍ତେ ସେହି ପାଇଖାନାକୁ ଅଭ୍ୟାସଗତ ଭାବରେ ବ୍ୟବହାର କରିବା ଉଚିତ । ଏହିଭଳି ପ୍ୟାନ୍ ଯୋଗାଇଦେବା ଏବଂ ପ୍ୟାନ୍ ବସାଇବା ପାଇଁ ଆବଶ୍ୟକୀୟ ପରାମର୍ଶ ଦେବା ଦିଗରେ ସରକ ସହାୟକ ହେବା ବାଞ୍ଛନୀୟ ।

୩—ଯେଉଁସବୁ ଗ୍ରାମରେ ପାନୀୟ ଜଳର ଅଭାବ ଅଛି, ସେ ଗ୍ରାମରେ ଆବଶ୍ୟକତା ଅନୁସାରେ କୂଅ ବା ନଳକୂଅ କରାଯି ବାଞ୍ଛନୀୟ । ଆଜି ନଳକୂପ ଉପରେ ଅଧିକ ଜୋର୍ ଦିଆଯାଉ କିନ୍ତୁ ଅଳ୍ପଦିନ କାମ କଲା ପରେ ନଳକୂପଗୁଡ଼ିକ ଖରାପ ହୋ ଯାଉଛି କିମ୍ବା ତହୁଁ ଲୁଣା ପାଣି ଆସିଯାଉଛି । ତେଣୁ ଯେ ଗ୍ରାମରେ କୂଅ ବା କୂଅ ଦ୍ୱାରା ଭଲ ପାଣି ପଡ଼ି ପାରିବ, ସେଠା କୂଅ ଉପରେ ଅଧିକ ଗୁରୁତ୍ୱ ଦେବା ବାଞ୍ଛନୀୟ । ଯେଉଁଠାରେ ବା ନଳକୂଅ ଉଭୟ ସମ୍ଭବ ହୋଇ ପାରୁନି, ସେଠାରେ ଗା ପାନୀୟ ଜଳର ପରିମାଣକୁ ହିସାବକୁ ନେଇ ବର୍ଷା ପାଣି ଧ କରି ରଖିବା ପାଇଁ ୧୦/୧୫ ଫୁଟ ଉଚ୍ଚରେ ଏକ ପକ୍କା ତିଆରି କରିବା ଆବଶ୍ୟକ ।

୪—ପ୍ରତ୍ୟେକ ଲୋକ ପାଇଁ ସୁଷମ ଖାଦ୍ୟ:— ଗାଆଁରେ ଯେଉଁ ପରିବେ ଭିତରେ ଆମେ ରହୁଚେ, ଯଦି ଆମ ଉତ୍ପାଦିତ ଜିନିଷକୁ ଏ ଅପହରଣ ନକରନ୍ତି ତା'ହେଲେ ଆମ ପାଇଁ ସୁଷମ ଖାଦ୍ୟର ବ୍ୟ ସହଜରେ କରି ପାରିବା । ଆମ ବାଡ଼ିରେ କିଛି ପରିବା କରୁଛେ ତାହା ଆମେ ହାଟ କିମ୍ବା ବଜାରକୁ ବିକ୍ରି କରିବାକୁ ନେଉଛେ । ପଇସା ମିଳିଲେ ସେ ପଇସାରେ ପରିବାରର ଅତ୍ୟନ୍ତ ଆବଶ୍ୟ ପଦାର୍ଥ ତ କିଣାଯାଉଛି ଓ ସେଥି ସଙ୍ଗେ ସଙ୍ଗେ ଅନାବଶ୍ୟକ ପ ମଧ୍ୟ କିଣାଯାଉଛି । ସେହି ଭଳି ଆମ ଗାଈ କ୍ଷୀର ଦେଉଛି । ଆ ସେ କ୍ଷୀରକୁ ବଜାରକୁ ବିକ୍ରି କରିବାକୁ ଦେଉଛେ । ଫଳରେ ଅ ପିଲାମାନେ ଟିକେ କ୍ଷୀର ପାଇବାରୁ ବଞ୍ଚିତ ହେଉଛନ୍ତି । ସେଥି ଗାନ୍ଧିଜୀ କହୁଥିଲେ "ମଣିଷର ଆବଶ୍ୟକତା କମାଇବା ପାଇଁ ତା'ହେଲେ ଶାନ୍ତିପୂର୍ଣ୍ଣ ଜୀବନଯାପନ କରିବା ସମ୍ଭବ ହେ ବଜାରକୁ କ୍ଷୀର ବିକ୍ରି କରିବାକୁ ଯାଇ କ୍ଷୀର ବିକ୍ରି ଧନରେ ଯଦି ସିଗାରେଟ୍, ମଦ ପ୍ରଭୃତି ମାଦକ ଦ୍ରବ୍ୟ ସେବନ କରାଗଲ ବିଳାସପୂର୍ଣ୍ଣ ପ୍ରସାଧନ ଦ୍ରବ୍ୟ ପରି ମାନବ ଜୀବନ ଅନାବଶ୍ୟକ ପଦାର୍ଥ କିଣାଗଲା, ତାହା ସଦୁପଯୋଗ ହେଲା ବୁଝିବାକୁ ହେବ ନାହିଁ । ସେହିପରି କୌଣସି ଅପମିଶ୍ରିତ ତେ ଖାଦ୍ୟପେୟ ଆମମାନଙ୍କର ବ୍ୟବହାର କରିବା ଆଦୌ ନୁହେଁ ।

୫—ଗ୍ରାମର ଗୃହସବୁ ଏଭଳି ଭାବେ ନିର୍ମାଣ କରିବାକୁ ଯେଉଁଥିରେ ପ୍ରଚୁର ଆଲୋକ ଓ ପବନ ଲୋକମାନଙ୍କୁ ମି ସୁଯୋଗ ରହିବ ।

୬—ପ୍ରାକୃତିକ ଭାରସାମ୍ୟ ରକ୍ଷାକରିବା ପାଇଁ ଗ୍ରାମ ନିକ ବୃକ୍ଷରୋପଣ ଓ ଜଙ୍ଗଲ ସୃଷ୍ଟି କରିବାକୁ ପଡ଼ିବ ।

୭—ନିଜେ ପରିଷ୍କାର ପରିଚ୍ଛନ୍ନ ଓ ଶୁଦ୍ଧପୂତ ଜୀବନଯାପନ ଉଚିତ । କେବଳ ଗାଆଁର ପରିବେଶକୁ ପରିଷ୍କାର ରଖିଲେ ନାହିଁ ପିଲାଛୁଆ ସମସ୍ତେ ନିଜର ପୋଷାକପତ୍ର ଓ ନିଜେ ପ ପରିଚ୍ଛନ୍ନ ରଖିବା ଉଚିତ୍ ।

ଏହି କେତେଗୋଟି ସର୍ବନିମ୍ନ କଥାଗୁଡ଼ିକ ପ୍ରତି ଦୃଷ୍ଟି ନିକ୍ଷେପ ଏବଂ ପୂର୍ବ କାଳର କେତେକ ଅନ୍ଧ ବିଶ୍ୱାସକୁ ସଂପୂର୍ଣ୍ଣ ଜା କରିପାରିଲେ ଆମେମାନେ ଆମ ଗାଆଁ ପାଇଁ ସୁନ୍ଦର ସ୍ୱାସ୍ଥ୍ୟ ଓ ଯ ସୃଷ୍ଟି କରିବାକୁ ସମର୍ଥ ହେବା ।

ସଦସ୍ୟ
ରାଜ୍ୟ ଯୋଜନା ବୋର୍ଡ,
ଭୁବନେଶ୍ୱର-୭୫୧୦୦୧

# ସଂହତିର ଶପଥ

ଶ୍ରୀ ଶତ୍ରୁଘ୍ନ ନାଥ

ମିଳିମିଶି ଚଳିବାର ଶପଥ । ପାଦ ଓ ପାଣି ସମତାଳରେ ପଡ଼ିବ । ବୁଦ୍ଧି, ମନ ଓ ଚିତ୍ତରେ ଗୋଟିଏ ଚେତନା, ଚିନ୍ତା ଓ ଚୈତନ୍ୟ । ବିଭିନ୍ନ ଆକାର ଓ ପ୍ରକାର ମଧ୍ୟରେ ଏକ ଅଣାକାରର ପ୍ରେରଣା ବିରାଜିବ । କିଏ କେଉଁଠି ହେଲେ ହେଁ ଆମେ ବିଭାଜିତ ନହୋଇ ଅବିଭକ୍ତ ହୋଇ ରହିବା । ଫୁଲଗୁଡ଼ିକର ରଙ୍ଗ, ଗଠନ ଓ ମହକ ଠିକ୍ ଏକ ନୁହେଁ । ଏସବୁ କେହି କାହା ସଙ୍ଗେ ସମାନ ନୁହନ୍ତି । ମାଳାକାରର କଳା ଏ ସବୁର ସମାବେଶ କରିଥାଏ । ଲୁଚି ରହିଥାଏ ସୂତାଖିଅଟିଏ ସବୁରି ଅନ୍ତରରେ । ପ୍ରଚ୍ଛନ୍ନ ଆତ୍ମା ସ୍ୱରୂପରେ । ସେଠୁ ଜନ୍ମ ଲାଭ କରେ ମାଳାକାର ମାଳା; ଶୋଭା, ସୌନ୍ଦର୍ଯ୍ୟ ଓ ସୌଷ୍ଠବର ଭଣ୍ଡାର । ସମସ୍ତଙ୍କ ମନଲୋଭା ଓ ଚିରବିମୋହନକାରୀ ସେ ପୁଷ୍ପର ମାଳା । ଦେବ ଦାନବ ଓ ମାନବର ଚିରସ୍ପୃହା । କିନ୍ତୁ ଜାତି, ବର୍ଣ୍ଣ ଓ ସୁବାସରେ ଯେତେ ଉଚ୍ଚ ଶ୍ରେଣୀର ପୁଷ୍ପଟିଏ ହେଲେ ହେଁ ଓ ଏହାର **ସଂଖ୍ୟାଧିକ୍ୟ**; ଯେତେ ବେଶୀ ହେଉ ପଛକେ ମାଳାକାରର କଳା ତଥା ପ୍ରଚ୍ଛନ୍ନ ସୂତ୍ର ସେପରି ଶୋଭା ଆଣି ଦେବ ନାହିଁ । ସେପରି ପୁଲକ ଓ ପବିତ୍ରତା ମନରେ ଉକୁଟିବ ନାହିଁ । ତେଣୁ ପୁଷ୍ପଗୁଡ଼ିକର ବିଭିନ୍ନତା ମାଳାକାରର କଳାରେ ରଞ୍ଜିତ ହୋଇ ଅପୂର୍ବ ଶକ୍ତି, ଶୋଭା ଓ**ସାମର୍ଥ୍ୟ ସୃଷ୍ଟି କରିଛି** ।ଏହାହିଁ ଆମ ସଂହତି ସହିତ ତୁଳନୀୟ । ସେହି ସଂହତିର ସୁରକ୍ଷା ଓ ସମୃଦ୍ଧି ପାଇଁ ଶପଥ । ଏହା ସମସ୍ତଙ୍କୁ ସମାନ କରେ ନାହିଁ କିମ୍ବା ସମସ୍ତଙ୍କର ସଂଖ୍ୟା କ୍ରମେ ଗଣା କରି ଶେଷରେ ମାତ୍ର ଗୋଟିଏ କରେ ନାହିଁ ।**ଆମେ**ସମସ୍ତେ ଅନେକ । ଆମ ବେଶ, ଭୂଷା, ଭାଷା ଓ ଭାବ ମଧ୍ୟ ଅନେକ । କିନ୍ତୁ ଆମେ ଗୋଟିଏ ଭାବରଜ୍ଜୁରେ ଗୁନ୍ଥା ହୋଇ ସୃଷ୍ଟି କରିଛୁ ଐକ୍ୟ ଓ ଏକାତ୍ମତା । ସମଷ୍ଟି ଓ ବ୍ୟଷ୍ଟି ପାଇଁ ଏଥିରେ ରହିଛି ଶକ୍ତି ଓ ସାମର୍ଥ୍ୟ । ଏଥିରେ କେହି ନଗଣ୍ୟ , ଅଗଣ୍ୟ ଓ ଅବହେଳିତ ନ ହୋଇ ପ୍ରତ୍ୟେକଙ୍କ ପାଇଁ ମିଳିଛି ପୂର୍ଣ୍ଣ ପରିପ୍ରକାଶର ସୁଯୋଗ ଓ ଏହା ସଙ୍ଗେ ସଙ୍ଗେ ଗଢି ଉଠିଛି ଦୃଢତା ଓ ଅବିଭକ୍ତତା । ଏହା ହି ବିଭେଦ ମଧ୍ୟରେ ଅଭେଦତା । ଏଥିପାଇଁ **ପ୍ରାଣପାତର ପ୍ରତିଜ୍ଞା** ।

କାରଣ ଆମେ ବିବେକୀ ମାନବ । ଜ୍ଞାନ ଓ ବିଜ୍ଞାନ ଦ୍ୱାରା ଆମେ ଆଲୋକିତ । ଆମ ଅନ୍ତରର ଉତ୍ସକୁ ଆମେ ଅବହିତ ହୋଇ ପାରିଛୁ । ଦିପାବଳୀର (ଟର୍ଚ୍ଚ) ଆଲୋକକୁ ଆମେ ଭିତରେ ଓ ବାହାରେ ପକାଇ ପାରିବା । ବିଜ୍ଞାନ ଦ୍ୱାରା ଆମେ ଆମ ପରିବେଶକୁ ଜାଣି **ପାରୁଛୁ** ଓ ନିଜ ଆୟତ୍ତରେ **ରଖିପାରୁଛୁ** । ଏହାଛଡା ଆମ ଆତ୍ମଜ୍ଞାନ ବଳରେ ଆମେ ଇନ୍ଦ୍ରିୟ ସକଳକୁ ବଶୀଭୂତ କରି ଆତ୍ମବୋଧ ଓ ଆତ୍ମଶକ୍ତି ଲାଭ କରି ପାରିଛୁ । ଏହି ସୁଯୋଗ ଲାଭ କରି ଆମେ ବଳୀୟାନ୍ । ଆମକୁ ବିଚ୍ଛିନ୍ନତା କେବେ ହେଁ ବିଚ୍ଛିନ୍ନ କରି ପାରିବ ନାହିଁ । ବିଶେଷ କରି ବିଜ୍ଞାନ ସହିତ ଓ ଆତ୍ମଜ୍ଞାନର ସମନ୍ୱୟ ଦ୍ୱାରା ଆମ ହୃଦୟରେ ''ଜାତୀୟ ମମତା ଓ ବିଶ୍ୱଜନପ୍ରୀତି'' ଦୃଢୀଭୂତ ହୋଇ ପାରିବ । ପ୍ରାତଃକାଳର ସୂର୍ଯ୍ୟକିରଣ ଦ୍ୱାରା ଯେପରି ଅନ୍ଧକାର ଅପସରିଯାଏ, ସେପରି ବିଜ୍ଞାନ ଓ ଆତ୍ମଜ୍ଞାନର ସମନ୍ୱିତ ବିକାଶ ଯୋଗୁଁ ଅହମିକା ଓ ଅଭିମାନ ଦୂରୀଭୂତ ହୋଇଯିବ । ଏହା ଫଳରେ ଚିତ୍ତ ସୁନ୍ଦର, ସୁନିର୍ମଳ ଓ ସୁବିସ୍ତୃତ ହେବ । ବସ୍ତୁତଃ ସ୍ୱାମୀ ବିବେକାନନ୍ଦଙ୍କ ଭାଷାରେ ସଂପ୍ରସାରଣ ହି ଜୀବନ ଓ ସଂକୋଚନ ହି ମୃତ୍ୟୁ । ଆତ୍ମଜ୍ଞାନ ହେଉଛି ସଂପ୍ରସାରିତ ଜୀବନର ଭିତ୍ତି । ସେଠି ସେହି ବ୍ରହ୍ମ ଦର୍ଶନ ଯେଉଁଠାରେ ଯଃ ମାଂ ପଶ୍ୟତି ସର୍ବତ୍ର, ସର୍ବଂଚ ମୟି ପଶ୍ୟତି'' (ଗୀତା) । ଏହାହିଁ ପ୍ରତିଧ୍ୱନିତ ହୁଏ ସନ୍ଥକବି ଭୀମଭୋଇଙ୍କ ଭଜନରେ:

ଅନନ୍ତ ନାମ ନୁହେଁ ବରି
ଅଲେଖ ବ୍ରହ୍ମ ଠାକୁର ରୂପରେଖ ନାହିଁ ତାର
ଆତ୍ମାସ୍ୱରୂପେ ବେହାର, ସର୍ବଭୂତେ ପୂରି ।''

ରାମକୃଷ୍ଣ ପରମହଂସ ମଧ୍ୟ ଜୀବକୁ ଶିବ ରୂପେ ଦେଖୁଥିଲେ । ଏହି **ଦୃଷ୍ଟି ଦ୍ୱାରା ପ୍ରାଣିମାନଙ୍କ ମଧ୍ୟରେ ପ୍ରାଚୀର ରହେ ନାହିଁ । ମନରେ ଆସେ ବିସ୍ମିତ ଓ ବିଶ୍ୱାତୀତ ଚେତନା । ''ବସୁଧୈବ କୁଟୁମ୍ବକମ୍'' ବାସ୍ତବ ହୁଏ । ସଂକୀର୍ଣ୍ଣତା ରହେ ନାହିଁ ।**

ଏହି ''ନାରାୟଣ'' ଚେତନାରୁ ନିମ୍ନକୁ ଖସି ଆସି ନର ଯଦି ନାରକୀୟ ଗର୍ତ୍ତରେ ପଡ଼ିଯାଏ, ତେବେ ସେ ପାଶବିକ ପ୍ରବୃତ୍ତି ଦ୍ୱାରା ପରିଚାଳିତ ହୋଇ ପଶୁଭାବାପନ୍ନ ହୋଇଯାଏ । ସେ ଦାନବ ହୁଏ । ସେ ନିଜେ ଓ ନିଜ ଭୋଗ ହି ତା ପାଇଁ ମୁଖ୍ୟ ହୁଏ । ପ୍ରବୃତ୍ତି, ପ୍ରତିଷ୍ଠା ଓ ପରିଚୟର ବହିରାବରଣରେ ସେ ବାଇ ହୁଏ । ନାମ ଓ ରୂପ ତା ପାଇଁ ମୋହ ସୃଷ୍ଟି କରେ । ଅଜ୍ଞାନ-ଅନ୍ଧକାରରେ ସେ ନିଜକୁ ଚିହ୍ନିପାରେ ନାହିଁ । ଏଥିଯୋଗୁଁ

ସେ କୂପ ମଣ୍ଡୁକ ହୋଇଯାଏ । ନିଜର ସ୍ୱାର୍ଥ ତା'ର ସକଳ ପ୍ରଚେଷ୍ଟାର ମୂଳ କାରଣ ହୁଏ । ଏଥିପାଇଁ ତାର ସମସ୍ତ ସାଧନା, ତପ, ଜପ, ବ୍ରତାଦି ନିୟୋଜିତ କରାଯାଏ । ସଂକୀର୍ଣ୍ଣ ସ୍ୱାର୍ଥ ସିଦ୍ଧି ପାଇଁ ସେ ସମସ୍ତ ଶପଥ କରିଥାଏ । ଏପରିକି ପତିପତ୍ନୀ, ପିତାପୁତ୍ର, ଜନକ ଜନନୀ ଓ ପୁତ୍ରକନ୍ୟା ଏପରି ନିକଟ ସମ୍ପର୍କ ମଧ୍ୟରେ ନିଜେ ହିଁ ବସ୍ତୁବାଦ ସଂକଳ୍ପକୁ ପ୍ରଥମେ ସ୍ୱୀକାର କରେ । ଗୁଆ ଟେକା ଯାଏ । କଳସ ବସେ । ପୁରାଣର ପାରାୟଣ ହୁଏ । ଦେବାଧିବାସ କରାଯାଏ । ଏପରି ସବୁ କ୍ରିୟା କର୍ମ ଆଡମ୍ବରରେ ପରିଣତ ହୁଏ । ଲୋକ ଦେଖାଣିଆକୁ ବାହାରର ଚାକଚକ୍ୟ । ସବୁ କିଛି ମେଣ୍ଢା ଚର୍ମ ପରିହିତ ସିଂହର ଦୃଶ୍ୟ । ପୁରାପୁରି ଛଦ୍ମ ବେଶର ପ୍ରତାରଣା । ଏହି ଦୃଷ୍ଟିରୁ ବୁଝାଯାଏ, ମା-ଝିଅ ଏକ ସଙ୍ଗେ ଦେବେଳକୁ ଯାଆନ୍ତି ଓ ଯେଷ୍ଠା ସୁଖ ମନାସନ୍ତି । ଚରମ ସ୍ୱାର୍ଥ ସିଦ୍ଧିର ଦୃଷ୍ଟାନ୍ତ । ଏହା ଫଳରେ ସଂହତି ଆସିବ କେଉଁଠୁ ? ମାତା ଓ କନ୍ୟା ବି ପୃଥକ ହୋଇ ଯାଆନ୍ତି । ସମସ୍ତ ଦେଶବାସୀଙ୍କୁ ଆମେ ଆପଣାର କରିବା କିପରି ? ବିଶ୍ୱବନ୍ଧୁତ୍ୱ ହୋଇ ପାରିବ କି ? ବିଶ୍ୱକୁଟୁମ୍ବ ଅସମ୍ଭବ ହେବ ! ଏପରି ଶତଧା ବା ସହସ୍ରଧା ବିଭକ୍ତ ହୋଇଯିବାରୁ ମାନବ ପଣିଆର ସୂତ୍ର ଆମକୁ ଅବିଭକ୍ତ କରି ପାରିବ ନାହିଁ ।

ମୋଗଲ ସମ୍ରାଟ ବାବରଙ୍କ କାହାଣୀ ଇତିହାସର ପାଠ୍ୟ । ପୁତ୍ର ହୁମାୟୁନ ରୋଗାକ୍ରାନ୍ତ । ମୃତ୍ୟୁ ଆସନ୍ନ । ସେ ବଞ୍ଚିବେ କିପରି ? ଚିକିତ୍ସାର ସମସ୍ତ ପର୍ବ ବିଫଳ ହୋଇଛି । ସମ୍ରାଟଙ୍କୁ ଏ ସବୁର ଅଭାବ ନାହିଁ । ଶେଷରେ ନିଜର ସର୍ବ ପ୍ରିୟକୁ ସମର୍ପଣ କରି ଏହାର ବିନିମୟରେ ପୁତ୍ରର ପ୍ରାଣ ପାଇବାର ଆଶା ବାବର ଦେଖନ୍ତି । ଯାହା କିଛି ପ୍ରିୟତମ ତାହା ଅର୍ପଣ କରି ପାରିଛନ୍ତି । ଧନ ଦୌଲତ କିଛି ନୁହେଁ । ପ୍ରାସାଦ ଓ ଅଟ୍ଟାଳିକା ମଧ୍ୟ ଅତି ନଗଣ୍ୟ । ବାକି ରହିଛି ସମ୍ରାଟଙ୍କର ସ୍ୱକୀୟ ଜୀବନ । ସମ୍ରାଟ ନିଜ ଜୀବନ ଦାନ କରିବାକୁ ପ୍ରସ୍ତୁତ, କାରଣ ଆତ୍ମଜଙ୍କ ଅପେକ୍ଷା ଅଧିକ ଆତ୍ମୀୟ ପିତାଙ୍କ ପକ୍ଷରେ କଅଣ ହୋଇପାରେ ? "ମୁଁ" ଓ "ମୋର" ସଂପ୍ରସାରଣ ସେଥିରେ ରହିଛି । ସେ ତାହାହିଁ କରିଛନ୍ତି ଓ ନିଜର ପ୍ରାଣ ବିନିମୟରେ ସେ ପ୍ରିୟତମ ପୁତ୍ର ଭାବରେ ନିଜକୁ ଲାଭ କରିଛନ୍ତି । ସବୁ ପ୍ରସଙ୍ଗରେ ବୁଝାଯାଏ ସେ ଜଣେ ଧନାଢ୍ୟ ବ୍ୟକ୍ତିଙ୍କର ଆମ ଲାଭ କଅଣ ହୋଇପାରେ ? ଧନ ଓ ଜନର ଅଭାବ ତାଙ୍କର ନାହିଁ । ସେ ନିଜ ହାତରେ ସବୁ କମାଇଛନ୍ତି । ଭୋଗ ବିଳାସରେ ସେ [illegible] । ତାଙ୍କ ପରେ ଅନ୍ତତଃ ପାଞ୍ଚ ପୁରୁଷ ସେହି ଭୋଗରେ ଭାଗୀ [illegible] ପାରିବେ । ତଥାପି ତୃଷ୍ଣା ତାଙ୍କୁ ପରିହାର କରି ନାହିଁ । ସେ [illegible] ମନ୍ଦିରରେ ଅଧିଆ ପଡ଼ିଛନ୍ତି । ଏକୋଇଶ ଦିନର ବ୍ରତ [illegible] । ମହାଦେବଙ୍କୁ ସେ ପ୍ରହଣ କରିଛନ୍ତି । ପନ୍ଦର ଦିନ ନ ପୁରୁଣୁ [illegible] ଦେବ ମହାଦେବ ସ୍ୱପ୍ନ ସ୍ୱପ୍ନରେ ଉପଗତ । "କି ଅଭାବ [illegible] ବତ୍ସ ! ଧନ ଜନ ଗୋପ ଲକ୍ଷ୍ମୀ ତ ଭରପୁର । କୁହ ବତ୍ସ ! [illegible] ପାଇଁ ଏ କଷଣ ଓ କ୍ଲେଶ । ପଚାଶ ମାତ୍ରେ ହିଁ ସବୁକିଛି ପରିପୂର୍ଣ୍ଣ [illegible] ।" [illegible] ପୂର୍ଣ୍ଣ ହୋଇଛି । ଏଥିରେ ସେହି ଧନାଢ୍ୟ ବ୍ୟକ୍ତି କାମନା [illegible] ମନ ଖୋଲି ନେଇଛନ୍ତି । "ପ୍ରଭୋ, ଆପଣ ଅନ୍ତର [illegible] କହିବା କି ପ୍ରୟୋଜନ ? ତଥାପି ଆପଣଙ୍କ ଆଜ୍ଞାରେ ସବୁ [illegible] ଓ ବିଭବ । ପୁତ୍ର ପୌତ୍ର ମଧ୍ୟ ସବୁ ଆପଣଙ୍କର ଦାନ । କେବଳ [illegible] । ଏହି ପ୍ରାସାଦ, ପଲଙ୍କ ମୋ ପାଇଁ ମିଳୁ । ମୁଁ ମୋର [illegible] ଭାବରେ ତାକୁ ନିଏ, ଏତିକି କାମନା ।" ଏହା ମଧ୍ୟ ଶପଥ । [illegible] ମୋର ଓ ମାୟାର ପରିସରକୁ ପରିବ୍ୟାପ୍ତ କରିବାର ବ୍ରତ । ମୁଁ [illegible] ରେ ରତ ହେବାର ଆନନ୍ଦ ।

ଏହି ଚେତନା ପୌରାଣିକ [illegible] । ବୁଦ୍ଧ ଦେବ କହିଛନ୍ତି ଓ ନିଜେ ସେଥିରେ ଅନୁବର୍ତ୍ତୀ ରହିଛନ୍ତି, ସର୍ବଜନ ହିତାୟ, ସର୍ବଜନ ସୁଖାୟ । ରାଜପ୍ରାସାଦ ଓ [illegible] ବିଳାସର [illegible] ଜୀବନ ତାଙ୍କୁ ତୁଚ୍ଛ ଲାଗିଛି । ସେ ଜନ ଜୀବନର [illegible] ନିଜକୁ ଆହୁତି ଦେଇଛନ୍ତି । ବେଦବେଦାନ୍ତର ମଧ୍ୟ ଘୋଷିତ [illegible]

ସର୍ବେଽତ୍ର ସୁଖିନଃ ସନ୍ତୁ ।
ସର୍ବେ ସନ୍ତୁ ନିରାମୟାଃ ॥
ସର୍ବେ ଭଦ୍ରାଣି ପଶ୍ୟନ୍ତୁ ।
ମା କଶ୍ଚିଦ୍ ଦୁଃଖଭାକ୍ ଭବେତ୍ ॥

ନାହିଁ, ନିଜ କଥା ତ ଏଥିରେ ନାହିଁ । "ସର୍ବଙ୍କ ପାଇଁ ବ୍ୟକ୍ତି ସ୍ୱାର୍ଥ [illegible] ଖଣ୍ଡିତ ଓ କ୍ଷୁଦ୍ର ହୋଇଯାଇଛି । "ସର୍ବ ପର୍ଯ୍ୟାୟରେ ସସାଗରା ଧ[illegible] ସମଗ୍ର ସଂସାର ଅନ୍ତର୍ଭୁକ୍ତ କରାଯାଇଛି । ଗୀତାରେ ମଧ୍ୟ ବ[illegible] "ସର୍ବଭୂତହିତେ ରତାଃ" ରହିବାକୁ ଉପଦେଶ ଦିଆଯାଇଛି । ମ[illegible] ଜୀବନ ବସ୍ତୁତଃ ସ୍ୱାର୍ଥାନୁସରଣର ସମୟ ଓ ସାରଣୀ ନୁହେଁ । ସ୍ୱ[illegible] ଜୀବନ ପଶୁଜଗତର ସ୍ୱଭାବ ସୁଲଭ ଗୁଣ । ପରାର୍ଥ ଜୀବନ[illegible] ମାନବିକ । ପର ପାଇଁ ମାନବ ପ୍ରାଣ ଦେଇପାରେ । ପ୍ରହଲାଦଙ୍କ ସ[illegible] ସଫଳ ହୋଇଛି । ଶେଷରୁ ନୃସିଂହ ଭକ୍ତାଧୀନ ହୋଇ ବାହାରିଛ[illegible] ହିରଣ୍ୟକଶିପୁଙ୍କୁ ବିଦାରଣ କରିଛନ୍ତି । ଶେଷରେ ପ୍ରହଲାଦଙ୍କ କ[illegible] ଜଣାଇବାକୁ ଆହ୍ୱାନ ଦିଆଯାଇଛି । ଉତ୍ତରରେ ପ୍ରହଲାଦ କହିଛନ୍ତି, [illegible] କାମୟେ ସ୍ୱର୍ଗଂ, ନ କାମୟେ ରାଜ୍ୟଂ କିନ୍ତୁ "କାମୟେ ଦୁଃଖତପ୍[illegible] ଆର୍ତ୍ତିନାଶନଂ ।" ଏହାହିଁ କାମନା, ନିଷ୍କାମ କାମନା, ଦିବ୍ୟ କାମ[illegible] ମାନବ ଜୀବନର ଚରମ ଓ ପରମ କାମନା ।

ସବୁ କଥାରେ ଆମେ ଆମ ସ୍ୱାର୍ଥ ସାଧନ ପାଇଁ ଶତତ ବେ[illegible] ରହିଛୁ । ଧନ, ମାନ, ବାହୁବଳ ଓ କ୍ଷମତାର ଶକ୍ତିକୁ ଆମ ହାତରେ[illegible] ସମସ୍ତଙ୍କ ତ୍ରୁଟି ଟାଣୁଛୁ । ସବୁଠି ଆମ ଗୌରବଗାନ ହେଉ ଏଥିପାଇଁ [illegible] ଡେରୁଛୁ । ଆମ ବିଜୟବାନା ଫରଫର ହୋଇ ଉଡୁ ଏଥିପାଇଁ [illegible] ଅନାଇ ରହିଛୁ । ବାସ୍ତବରେ ଆମେ କେତେ ଲାଞ୍ଛୁଆ ହୋଇଯା[illegible] ଆମେ ତ ମିଠା କଥା ଶୁଣିବାକୁ ଭଲ ପାଉଁ । କିନ୍ତୁ ଏହା ଯଦି ସ୍ତୁତ[illegible] ହୋଇଯାଏ, ଆମେ ସେଥିରେ ଅଧିକ ଲୋଭୀ ହେଉଛୁ । ଆମେ କାହିଁ[illegible] ସେହି ପ୍ରତାରଣାରୁ ନିଜକୁ ମୁକ୍ତ କରିପାରୁ ନାହୁଁ । କେତେ ବଡ଼ ଜା[illegible] ଆମ ପାଇଁ ବିଛା ଯାଇଛି ! କିନ୍ତୁ ଇନ୍ଦ୍ରଦ୍ୟୁମ୍ନ ରାଜା କଅଣ କଲେ ? [illegible] ବଂଶର ବିସ୍ତାର ପାଇଁ ଆମେ ସବୁ ସଂକଳ୍ପ କରୁଥିବା ସ୍ଥଳେ ସେ[illegible] ବଂଶନାଶର ପ୍ରାର୍ଥନା କଲେ । ଆମେ କଅଣ ମହାଜ୍ଞାନୀ ଓ ସେ [illegible] ମହାମୂର୍ଖ ? ନାଁ ଆମେ ବୁଝୁଛି ପହଁରୁଛୁ ଓ ସେ ବାସ୍ତବରେ ଦ[illegible] ଦେଖିପାରିଥିଲେ । ଉତ୍କଳର କଳାନିକେତନ କୋଣାର୍କର [illegible] ସେଇଆ ଲୋକ ମୁଖରେ ଘୋଷି ହେଉଛି । ବାରଶ ବଢ଼େଇଙ୍କର[illegible] ସେ ମହାନ୍ କଳାସୌଧ, କିନ୍ତୁ ନିଜ ପୁଅର ନୁହେଁ । ଆମର ବୃତ୍ତି[illegible] ଧନ ଦୌଲତ ସବୁ ପୁଅ ପାଇଁ । ଆମ ପଇସା କଉଡ଼ି ଓ ପୌ[illegible] ଉତ୍ତରାଧିକାରୀ ଆମ ପୁଅ । କିନ୍ତୁ ଉତ୍କଳର କଳା ପରମ୍ପରା ଓ ଧ[illegible] ସେହି ଉତ୍କଳୀୟଙ୍କର । ବ୍ୟକ୍ତି ବିଶେଷର ନୁହେଁ ।

ଭୀମଭୋଇ ଜଣେ ସନ୍ଥକବି, ଅନ୍ଧ ଓ କନ୍ଧ । ସାକ୍ଷାତ୍ ବ୍ର[illegible] ନିର୍ଗୁଣ, ନିରଞ୍ଜନ ଓ ନିରାଲୟ ସ୍ୱରୂପ ଭାବରେ ମହିମା ସ୍ୱାମୀଙ୍କୁ[illegible] କଅଣ ମାଗିଲେ ? "ମୋ ଜୀବନ ପଛେ ନର୍କେ ପଡ଼ିଥାଉ, [illegible] ଉଦ୍ଧାର ହେଉ ।" ବିଶ୍ୱଜୀବନ ନିରାମୟ ଓ ଲୀଳାମୟ ହୋଇ [illegible] ଅଜ୍ଞାନର ଅନ୍ଧକାର ହଟିଯାଇ ବ୍ରହ୍ମଜ୍ଞାନାଲୋକ ଉଦ୍ଭାସିତ ହେଉ [illegible] ବିବେକାନନ୍ଦଙ୍କ ବାଣୀ ଜଗତରେ ଏହି ଚେତନା ସୃଷ୍ଟି କରିଛି । ଚେ[illegible] ମଧ୍ୟ ଗାଇଛନ୍ତି:

"ନିଜ ସ୍ୱାର୍ଥ ଲାଗି କାତ ନୁହେଁ ହିନ୍ଦୁ
ବିଶ୍ୱ ଅର୍ଥେ ହିନ୍ଦୁ ଯତି ରକ୍ତ ବିନ୍ଦୁ ।"

ଅକ୍ଟୋବର ତିରିଶ ତାରିଖ, ୧୯୮୪ ମସିହା । ପୁଣ୍ୟଭୂମି [illegible] ଐତିହାସିକ ପୀଠ ଭୁବନେଶ୍ୱରରେ ଆମ ପ୍ରଧାନମନ୍ତ୍ରୀ ସ୍ୱର୍ଗୀୟା [illegible] ଗାନ୍ଧୀ ଏହି ସଂକଳ୍ପର ବାଣୀ ବଜ୍ରନାଦରେ ଘୋଷଣା କରିଗଲେ, [illegible] ପ୍ରତି ରକ୍ତବିନ୍ଦୁ ଦେଶ ପାଇଁ ଉତ୍ସର୍ଗୀକୃତ । ତାହା ହିଁ ଘଟିଛି ତହିଁ [illegible] ତାଙ୍କ ଦିଲ୍ଲୀ ବାସଭବନର ଦ୍ୱାର ଦେଶରେ ସମ୍ଭବତଃ ମାତ୍ର ବାର[illegible] ବ୍ୟବଧାନ ପରେ । ଦେଶବାସୀଙ୍କ ଲାଗି ଅକ୍ଟୋବର ୩୧ ତାରି[illegible] ସମର୍ପଣର ଦିବସ । ଅମର ଶହୀଦ୍ ଶ୍ରୀମତୀ ଇନ୍ଦିରା ଗାନ୍ଧୀଙ୍କ [illegible]

ଦାନର ଏହାହିଁ ଯଥାର୍ଥ ସ୍ମୃତି-ସ୍ମରଣ । ଏଥିପ୍ରସଙ୍ଗେ ତାଙ୍କ ଜନ୍ମ ଦିନ ନଭେମ୍ବର ୧୯ ତାରିଖ ଆମ ପାଇଁ ସଂହତିର ଶପଥ ଦିବସ । ଏହି ଜାତୀୟ ଏକତା ଦିବସର ଶପଥ ଆମେ ନିଷ୍ଠାରେ ଗ୍ରହଣ କରୁଛୁ ।

"ଜାତୀୟ ଏକତା ଓ ସଂହତିର ସୁରକ୍ଷା ତଥା ସୁଦୃଢ଼ୀକରଣ ପାଇଁ ଉତ୍ସର୍ଗୀକୃତ ଭାବରେ କାର୍ଯ୍ୟ କରିବାକୁ ମୁଁ ଏକାନ୍ତ ଭାବରେ ଶପଥ କରୁଛି ।

ଆହୁରି ମଧ୍ୟ ମୁଁ ସ୍ୱୀକାର କରୁଛି ଯେ ମୁଁ କଦାପି ହିଂସାଚରଣ କରିବି ଏବଂ ଧର୍ମ, ଭାଷା, ଅଞ୍ଚଳ ଭିତରେ ଯେଉଁସବୁ ବିବାଦ ଓ ପାର୍ଥକ୍ୟ ଉପୁଜିବ କିମ୍ବା ଅନ୍ୟ ରାଜନୈତିକ ବା ଅର୍ଥନୈତିକ ଦାବୀ ହେବ ସେସବୁର ଶାନ୍ତିପୂର୍ଣ୍ଣ ଓ ସାମ୍ବିଧାନିକ ସମାଧାନ କରାଯିବ ।"

ଏହି ଶପଥ ଓ ସମର୍ପଣ ମାମୁଲି ବିଷୟ ନୁହେଁ । କିମ୍ବା କୌଣସି ଅତିଥିଙ୍କ ପରିଗ୍ରହନାରେ ଉଚ୍ଚାରଣର ବିଷୟ ନୁହେଁ । କେତୋଟି ମୁହୂର୍ତ୍ତରେ ଏହାକୁ ଶୁଣି କହିନେବାର କଥା ନୁହେଁ । କାନରେ ଶୁଣି ବା ଶପଥପତ୍ର ପଢ଼ି ଆବୃତ୍ତି କରିବାର ବିଷୟ ନୁହେଁ । ପ୍ରତିବର୍ଷର ନଭେମ୍ବର ମାସ ୧୯ ତାରିଖ ଦିନ ପ୍ରେରଣାରେ ଏକତ୍ର ହୋଇ ବିଧିରକ୍ଷା କରିବାର ସଂକଳ୍ପ ନୁହେଁ । ଏହାହିଁ ଜାତିର ଓ ବ୍ୟକ୍ତିର ଜୀବନ ରକ୍ଷାର ଶପଥ । ପ୍ରତ୍ୟେକଙ୍କର ପ୍ରତିଟି ମୁହୂର୍ତ୍ତରେ ପ୍ରତି ଦିନର ଶପଥ । ଏହି ଅନୁସାରେ ଆମେ ଆଚରଣ କରିବାର ଶପଥ, କଥାରେ ଓ କାର୍ଯ୍ୟରେ ତଥା ଚିନ୍ତାରେ ଆମେ ଏହି ଶପଥ ଅନୁଯାୟୀ ଆମକୁ ଆସ୍ଥାର ଓ ବିଶ୍ୱାସନିଷ୍ଠ ହେବାକୁ ପଡ଼ିବ । ଏହା ହେଲେ ଆମ ଭାରତ ଓ ଆମେ ଭାରତୀୟ ବଞ୍ଚିବା, ଆଗେଇଯିବା ଓ ବିଶ୍ୱକୁ ସାହାଯ୍ୟ କରିବା । ଏଥିରେ ନିହିତ ଅଛି ସମସ୍ତଙ୍କର ଶାନ୍ତି ପ୍ରଗତି ଓ ସମୃଦ୍ଧି ।

ମହାତ୍ମା ଗାନ୍ଧୀ ଆମ ସ୍ୱାଧୀନତା ସଂଗ୍ରାମର ମହାନ୍ ସାରଥି । ସେ ଜାତିର ବାପୁ । ତାଙ୍କ ତ୍ୟାଗ, ସାହସ ଓ କଷଣ କଳନା କରି ହେବ ନାହିଁ । କିନ୍ତୁ ସେ କଅଣ ନିଜ ପାଇଁ କିଛି ଆଶା କରି ଗଲେ କି ? ତାଙ୍କ ମୂର୍ତ୍ତି ଗଢ଼ାଯିବ, ଫଳକ ଲେଖାଯିବ, ଅନୁଷ୍ଠାନ ନାମିତ ହେବ, ତାଙ୍କ ନାମରେ ସିନେମା କରାଯିବ, ତାଙ୍କ ଚିତ୍ର ସ୍ଥାନ ଅସ୍ଥାନରେ ଟଙ୍ଗାଯିବ ଇତ୍ୟାଦି । ନାଁ ନାଁ ତାଙ୍କ ଆକାଂକ୍ଷା ଓ ଶପଥ ହେଉଛି; ସ୍ୱାଧୀନ ଭାରତରେ କୌଣସି ଲୋକର ଚକ୍ଷୁରୁ ଲୋତକ ବହିବ ନାହିଁ । ସତ୍ୟ, ନ୍ୟାୟ ଓ ଅହିଂସାର ଦେଶ ଓ ବିଶ୍ୱ ହେବ । ପଣ୍ଡିତ ନେହେରୁଙ୍କ ଜନ୍ମଦିନ ହେଉଛି ଶିଶୁଦିବସ ଓ ସର୍ବପଲ୍ଲୀ ରାଧାକୃଷ୍ଣନଙ୍କ ଜନ୍ମ ଦିନ ହେଉଛି ଗୁରୁ ଦିବସ । ଏସବୁ ସେହି ଚିନ୍ତାର ଦୃଷ୍ଟାନ୍ତ, ଦେଶ ପାଇଁ ତ୍ୟାଗ । ଦେଶର ସଂହତି ପାଇଁ ଶପଥ ।

କିନ୍ତୁ ଅହମିକାଗ୍ରସ୍ତ ମାନବ **ଶପଥପାଠ** ପରେ ଏହାକୁ ଭୁଲିଯିବା ଅସମ୍ଭବ ନୁହେଁ । ଶପଥର ପ୍ରେରଣାରେ ସାମୟିକ ଓ ସାମାନ୍ୟ ପରିବର୍ତ୍ତନ ପରେ ସେ ଅନେକ ସମୟକୁ ପୂର୍ବାବସ୍ଥାକୁ ଫେରି ଆସନ୍ତି । ଲୋକାଗ୍ରହର ଊର୍ଦ୍ଧ୍ୱକୁ ସେ ଉଠି ପାରନ୍ତି ନାହିଁ । ହର୍ଷ, ବିଷାଦ, ଶୋକ ଆଦି ଆବେଗିକ ପରିସ୍ଥିତିରେ ମଧ୍ୟ ଅହମିକା ଓ ଅଭିମାନର ମୋହରେ ସେ ଅଭିଭୂତ ହୋଇ ପଡନ୍ତି । ସେଥିପାଇଁ ସମଗ୍ର ସମାଜରେ ଶପଥର ନିଷ୍ଠାକୁ ନିରନ୍ତର ଜାରି ରଖିବାକୁ ହେବ । ଅନେକ ସମୟରେ ରାଜନୀତି ଓ ରାଜନୀତିର ଉପଗ୍ରହ କ୍ଷଣିକ ପ୍ରତିଷ୍ଠାକୁ ବଜାୟ ରଖିବା ପାଇଁ ଜାତି, ଧର୍ମ, ବର୍ଣ୍ଣ ଆଦି ସଂକୀର୍ଣ୍ଣତାର ଉପଯୋଗ କରନ୍ତି । ଧନମଦ ପରି କ୍ଷମତାମଦ ଉତ୍କଟ ହୋଇପଡେ । ସାମାଜିକ ନ୍ୟାୟ ପରିବର୍ତ୍ତେ ଦୁରଭିସନ୍ଧି ଓ ସ୍ୱାର୍ଥସିଦ୍ଧି ଏକମାତ୍ର ଉଦ୍ଦେଶ୍ୟ ହୁଏ । ସତ୍ୟ, ଶାନ୍ତି ଓ ସମ୍ବିଧାନର ନିଷ୍ଠା ରହେ କି? ଅର୍ଥନୈତିକ ବୈଷମ୍ୟ ବିଭିନ୍ନ ଅଞ୍ଚଳ, ଗୋଷ୍ଠୀ ଓ ଜନପଦକୁ ଆଧାରିତ କରି ହିଂସାର ବିସ୍ଫୋରଣ ସୃଷ୍ଟିକରେ । ଯୋଜନାର ଦିଗ୍‌ବଳୟକୁ ମାନବିକତା, ସମତା ଓ ସୁଦୃଷ୍ଟି ଅପସରି ଯାଏ । ଏପରି ସ୍ଥଳରେ ମଧ୍ୟ ଶପଥ ଏକ ଜାତୀୟ କାର୍ଯ୍ୟକ୍ରମ ନହୋଇ ପିଲାଳିଆ ପ୍ରହସନରେ ପରିଣତ ହୋଇଥାଏ । ଅର୍ଥଲୋଭୀ ଯାଦୁକର ରାମ ଓ ରାବଣର ଭୂମିକାକୁ ଏକକାଳୀନ ଦର୍ଶକଙ୍କ ମନଲୋଭା କରିପାରନ୍ତି । ଶପଥ ସେ ପର୍ଯ୍ୟାୟଭୁକ୍ତ ନୁହେଁ । ଜାତୀୟ ଇତିହାସ ଓ ଗୌରବ ଆମକୁ ମଧ୍ୟ ନାନା କାରଣରୁ କଥା, କାର୍ଯ୍ୟ, ଚିନ୍ତାରେ ଅନୁପ୍ରାଣିତ କରେ ନାହିଁ ।

ଜାତୀୟ ସଂହତିରେ ଆମେ ଐକାନ୍ତିକ ଓ ଏକନିଷ୍ଠ ହେବା । ଆମ ସର୍ବବିଧ ଚିନ୍ତା ଓ ବିଗ୍ରହ ସମସ୍ତଙ୍କ ପାଇଁ ଏକ ହେବା ଉଚିତ ।

**ଶହୀଦ ନଗର,**
**ଭୁବନେଶ୍ୱର**



'ଓମ୍ଫା'ର ବାର୍ଷିକ ସମ୍ମିଳନୀରେ ମୁଖ୍ୟମନ୍ତ୍ରୀ...

# ଜାନୁଆରୀ ଛବିଶର ଶପଥ

ଶ୍ରୀ ଚନ୍ଦ୍ରଶେଖର ନାୟ

୧୯୨୯ ସାଲର ଘଟଣା । ଅଖିଳ ଭାରତ ଜାତୀୟ କଂଗ୍ରେସର ବାର୍ଷିକ ଅଧିବେଶନ ପଞ୍ଜାବର ରାଜଧାନୀ ଲାହୋରରେ ରାବି ନଦୀ କୂଳରେ ଅନୁଷ୍ଠିତ ହେଉଥାଏ । ସେତେବେଳେ ପାକିସ୍ଥାନ ନଥିଲା । ଆକୁମାରୀ ହିମାଚଳ ଭାରତ ଏକ ଓ ଅଖଣ୍ଡ ଥିଲା । ଏହା ଥିଲା କଂଗ୍ରେସର ୪୪ତମ ଅଧିବେଶନ । ସଭାପତିତ୍ୱ କରୁଥାଆନ୍ତି, ପଣ୍ଡିତ ଜବାହରଲାଲ ନେହେରୁ । ମହାତ୍ମା ଗାନ୍ଧୀଙ୍କ ପରିଚାଳନାଧୀନରେ ସ୍ୱାଧୀନତା ସଂଗ୍ରାମର ପ୍ରଥମ ଅହିଂସକ ପର୍ଯ୍ୟାୟ ଅସହଯୋଗ ଆନ୍ଦୋଳନ ସରିଯାଇଥାଏ । କେବଳ ଭାରତବାସୀ ନୁହନ୍ତି ଭାରତର ପ୍ରଶାସକ ବିଲାତବାସୀ ତଥା ବିଶ୍ୱବାସୀଙ୍କ ହୃଦୟରେ ଅଭିନବ ଅହିଂସକ ସଂଗ୍ରାମ ଗଭୀର ଆଲୋଡ଼ନ ସୃଷ୍ଟି କରିଥାଏ । ୧୮୮୫ ମସିହା ଡିସେମ୍ବର ୨୮ ତାରିଖରେ ସ୍ୱର୍ଗତ ଏ. ଓ. ହ୍ୟୁମଙ୍କ ପ୍ରେରଣାରେ ଆବେଦନ ନିବେଦନ ସୂତ୍ରରେ ଭାରତୀୟମାନଙ୍କ ପାଇଁ ଇଂରେଜର ଶାସନାଧୀନରେ ସୁବିଧା ସୁଯୋଗ ଲାଭ କରିବା ଜାତୀୟ କଂଗ୍ରେସର ପ୍ରତିଷ୍ଠିତ ଲକ୍ଷ୍ୟ ବହୁତ ବଦଳି ଯାଇଥାଏ । ଲୋକମାନ୍ୟ ବାଳଗଙ୍ଗାଧର ତିଳକଙ୍କ ପରି ବହୁ ଉଦୀୟମାନ ନେତା କଂଗ୍ରେସରେ ଉଗ୍ର ରାଷ୍ଟ୍ରୀୟତାବାଦ ଭରି ଦେଇଥାଆନ୍ତି । ତାଙ୍କ ସାଙ୍ଗକୁ ଅରବିନ୍ଦ ଘୋଷ, ଲାଲା ଲଜପତ ରାୟ ଓ ବିପିନ ଚନ୍ଦ୍ର ପାଲ ପ୍ରମୁଖ ବିପ୍ଳବୀଗଣ ଭାରତର ଅଦମ୍ୟ ସ୍ୱାଧୀନତା ପିପାସା ସୃଷ୍ଟି କରିବାରେ ଲାଗିଥାଆନ୍ତି । ସେହି ଚିନ୍ତାଧାରାର ପ୍ରତିନିଧିତ୍ୱ କଲାଭଳି ବିଶ୍ୱବାସୀଙ୍କୁ ଚକିତ କରି ଲୋକମାନ୍ୟ ତିଳକ ସର୍ବ ପ୍ରଥମେ ଘୋଷଣା କଲେ ଯେ – "ସ୍ୱରାଜ୍ୟ ଆମର ଜନ୍ମଗତ ଅଧିକାର । ଆମକୁ ତାହା ଅବଶ୍ୟ ହାସଲ କରିବାକୁ ହେବ ।" ଏହି ଆହ୍ୱାନର ସଂପୂର୍ଣ୍ଣ ପ୍ରତିଫଳନ ହୋଇଥିଲା ଲାହୋର କଂଗ୍ରେସରେ ୧୯୨୯ ସାଲରେ ।

ଏହି ଐତିହାସିକ ଅଧିବେଶନରେ ଦେଶବା
କଂଗ୍ରେସ ଆହ୍ୱାନ କଲେ ଯେ ସ୍ୱାଧୀନତା ପ୍ରାପ୍ତି ଲକ୍ଷ
ପ୍ରତିବର୍ଷ ଏକ ନିର୍ଦ୍ଦିଷ୍ଟ ଦିବସରେ ଦେଶବାସୀ ସ୍ୱାଧୀନ
ଶପଥ ଗ୍ରହଣ କରିବେ । ଜାନୁୟାରୀ ୨୬ ତାରିଖ
ଗ୍ରହଣ ପାଇଁ ଉଦ୍ଦିଷ୍ଟ ହେଲା । ଯେଉଁ ଶପଥଟି ସେ
ଦେଶବାସୀ ଗ୍ରହଣ କରିବେ ତାହା ମଧ୍ୟ ନିର୍ଦ୍ଦିଷ୍ଟ ହୋଇଚ

## ଶପଥ ପତ୍ର

"ଅନ୍ୟାନ୍ୟ ଜାତିମାନଙ୍କ ପରି ସ୍ୱାଧୀନତା ଲାଭ କ
ନିଜ ପରିଶ୍ରମର ଫଳ ଭୋଗ କରିବା ଏବଂ ଜୀବନ ଧା
ଆବଶ୍ୟକୀୟ ଜିନିଷମାନ ଲାଭ କରିବା, ଯେପରିକି ସେ
ବିକାଶର ପୂର୍ଣ୍ଣ ସୁଯୋଗ ପାଇ ପାରିବେ, ସେହି ଦୃଷ୍ଟିରୁ
ହାସଲ କରିବାର ସଂପୂର୍ଣ୍ଣ ଅଧିକାର ଭାରତବା
ମଧ୍ୟ ରହିଛି ବୋଲି ଆମ୍ଭେମାନେ ବିଶ୍ୱାସ କରୁ । ଆମ୍ଭେ
ଏକଥା ମଧ୍ୟ ବିଶ୍ୱାସ କରୁ ଯେ ଯଦି କୌଣସି ସ
କୌଣସି ଜାତିକୁ ପୂର୍ବୋକ୍ତ ଅଧିକାରରୁ ବଞ୍ଚିତ କରେ,
ସେ ସରକାରକୁ ପରିବର୍ତ୍ତନ କରିବାର ବା ତାକୁ ଲୋପ କରି
ଅଧିକାର ମଧ୍ୟ ସେ ଜାତିର ଅଛି । ଭାରତରେ ଇ
ସରକାର ଭାରତବାସୀଙ୍କୁ କେବଳ ଯେ ସ୍ୱାଧୀନତାରୁ
କରିଛନ୍ତି ତାହା ନୁହେଁ, ଜନସାଧାରଣଙ୍କୁ ଶୋଷଣ କରି
ଭିତ୍ତି ଉପରେ ନିଜକୁ ପ୍ରତିଷ୍ଠିତ କରି ଅର୍ଥନୈତିକ, ରାଜନୈ
ସଂସ୍କୃତିଗତ ଏବଂ ଆଧ୍ୟାତ୍ମିକ ସବୁ ଦିଗରୁ ଭାରତର
ସାଧନ କରିଛନ୍ତି । ତେଣୁ ଆମମାନଙ୍କର ବିଶ୍ୱାସ
ଭାରତ ଅବଶ୍ୟ ଇଂରେଜଙ୍କ ସହିତ ସମ୍ପର୍କ ତୁଟାଇବ
ପୂର୍ଣ୍ଣ ସ୍ୱରାଜ ବା ସ୍ୱାଧୀନତା ହାସଲ କରି
ଆମ୍ଭେମାନେ ସ୍ୱୀକାର କରୁ ଯେ, ହିଂସା ମାର୍ଗ ସ୍ୱାଧୀନତ
ପାଇଁ ବିଶେଷ କାର୍ଯ୍ୟକାରୀ ପନ୍ଥା ନୁହେଁ । ଶାନ୍ତି
ବିଧି ସଙ୍ଗତ ଉପାୟ ଅବଲମ୍ବନ କରି ଭାରତ ଶକ୍ତି ଓ

ବିଶ୍ୱାସ ଅର୍ଜନ କରିଛି ଏବଂ ସ୍ୱରାଜ୍ୟ ଆଡ଼କୁ ଅନେକ ଦୂର ଅଗ୍ରସର ହୋଇଛି । ସେହି ଉପାୟ ଅବଲମ୍ବନ କରିବାରେ ହିଁ ଆମ ଦେଶ ସ୍ୱାଧୀନତା ଲାଭ କରିବ । ଆମ୍ଭେମାନେ ପୁଣି ଭାରତର ସ୍ୱାଧୀନତା ଲାଭ ଶପଥ ଗ୍ରହଣ କରୁଛୁ ଏବଂ ଦୃଢ଼ତା ଓ ନିଷ୍ଠା ସହକାରେ ପ୍ରତିଜ୍ଞାବଦ୍ଧ ହେଉଛୁ ଯେ ପୂର୍ଣ୍ଣ ସ୍ୱରାଜ୍ୟ ଲାଭ ହେବାଯାଏ ଅହିଂସା ଉପାୟରେ ଏହି ସ୍ୱାଧୀନତା ସଂଗ୍ରାମକୁ ଚଳାଇବୁ । ଆମ୍ଭେମାନେ ବିଶ୍ୱାସ କରୁ ଯେ, ସାଧାରଣ ଭାବରେ ଅହିଂସା ସଂଗ୍ରାମ ଚଳାଇବାକୁ ହେଲେ ଏବଂ ବିଶେଷ ଭାବରେ ଅହିଂସା ମାର୍ଗରେ ଚାଲିବା ପାଇଁ ପ୍ରସ୍ତୁତ ହେବାକୁ ହେଲେ ଖଦି, ସଂପ୍ରଦାୟିକ ଏକତା ଏବଂ ଅସ୍ପୃଶ୍ୟତା ନିବାରଣ ଏହି ତିନୋଟି ଗଠନମୂଳକ କାର୍ଯ୍ୟକୁ ସଫଳତାର ସହିତ କରିବା ଆବଶ୍ୟକ । ଜାତି ବର୍ଣ୍ଣ ନିର୍ବିଶେଷରେ ଆମ୍ଭମାନଙ୍କୁ ପଡ଼ୋଶୀମାନଙ୍କ ଭିତରେ ସଦ୍‌ଭାବ ସ୍ଥାପନ ଲାଗି ସବୁବେଳେ ସଚେଷ୍ଟ ରହିବାକୁ ହେବ । ଯେଉଁମାନଙ୍କ ପ୍ରତି ଅବହେଳା କରାହୋଇଛି, ସେମାନଙ୍କର ଅଜ୍ଞତା ଓ ଦାରିଦ୍ର୍ୟ ଦୂର କରିବା ପାଇଁ ଆମ୍ଭେମାନେ ଚେଷ୍ଟା କରିବୁ । ଯେଉଁମାନେ ଅନୁନ୍ନତ ବା ଅତ୍ୟାଚାରିତ ବୋଲି ବିବେଚିତ ହେବେ ସବୁମତେ ସେମାନଙ୍କ ସ୍ୱାର୍ଥରକ୍ଷା ଲାଗି ଉଦ୍ୟମ କରିବୁ । ଆମ୍ଭେମାନେ ଜାଣୁ ଯେ, ସାମ୍ରାଜ୍ୟବାଦୀ ପ୍ରଥାକୁ ଧ୍ୱଂସ କରିବାପାଇଁ ଆମ୍ଭେମାନେ ବାହାରିଥିଲେ ମଧ୍ୟ ସରକାରୀ ବା ବେସରକାରୀ କୌଣସି ଇଂରେଜ ଲୋକଙ୍କ ସହିତ ଆମ୍ଭମାନଙ୍କର କୌଣସି ବିବାଦ ନାହିଁ । ଆମ୍ଭେମାନେ ଜାଣୁ ଯେ ସବର୍ଣ୍ଣ ହିନ୍ଦୁ ଏବଂ ହରିଜନମାନଙ୍କ ଭିତରେ ଯେଉଁ ଭେଦଭାବ ରହିଛି, ତାହା ଦୂର କରିବାକୁ ହେବ ଏବଂ ହିନ୍ଦୁମାନଙ୍କୁ ସେମାନଙ୍କର ଦୈନନ୍ଦିନ କାର୍ଯ୍ୟ କଳାପରେ ଏ ସବୁ ଭେଦଭାବ ଭୁଲିଯିବାକୁ ହେବ । ଆମ୍ଭମାନଙ୍କର ଧର୍ମ ବିଶ୍ୱାସ ପୃଥକ ହେଲେ ମଧ୍ୟ ଏ ସବୁ ଭେଦ ଭାବ ଅହିଂସ ଆଚରଣ ପକ୍ଷରେ ପ୍ରତିବନ୍ଧକ ଅଟେ । ଆମ୍ଭେମାନେ ପରସ୍ପର ଭିତରେ ସାଧାରଣ ଜାତୀୟତା ବନ୍ଧନରେ ଆବଦ୍ଧ ଏବଂ ସମାନ ରାଜନୈତିକ ଓ ଅର୍ଥନୈତିକ ସ୍ୱାର୍ଥ ସମ୍ପନ୍ନ ଭାରତମାତାଙ୍କ ସନ୍ତାନପରି ବ୍ୟବହାର କରିବୁ । ଭାରତର ସାତଲକ୍ଷ ଗ୍ରାମରେ ନୂତନ ଜୀବନ ସଞ୍ଚାର କରିବା ଏବଂ ଜନସାଧାରଣଙ୍କର ଶୋଚନୀୟ ଦାରିଦ୍ର୍ୟ ଦୂର କରିବା ଲାଗି ଅରଟ ଓ ଖଦୀ ଗଠନମୂଳକ କାର୍ଯ୍ୟ ପନ୍ଥାର ଅବିଚ୍ଛେଦ୍ୟ ଅଂଶ ସ୍ୱରୂପ ଅଟେ । ତେଣୁ ଆମ୍ଭେମାନେ ନିୟମିତ ଭାବରେ ସୂତା କାଟିବୁ । ନିଜର ବ୍ୟବହାର ପାଇଁ ଖଦି ଛଡ଼ା ଅନ୍ୟ କୌଣସି ଲୁଗା ବ୍ୟବହାର କରିବୁ ନାହିଁ ଏବଂ ଯେତେଦୂର ସମ୍ଭବ ହାତ ତିଆରି ଗ୍ରାମ୍ୟ ଶିଳ୍ପ ଜିନିଷ କେବଳ ବ୍ୟବହାର କରିବୁ ଏବଂ ଅନ୍ୟମାନେ ଯେପରି ଏହାହିଁ କରିବେ ସେଥିପାଇଁ ଚେଷ୍ଟା କରିବୁ । ଆମ୍ଭେମାନେ ଶୃଂଖଳାବଦ୍ଧ ଭାବରେ କଂଗ୍ରେସର ନୀତି ଓ ପନ୍ଥା ମାନି ଚଳିବାକୁ ଏବଂ ଭାରତର ସ୍ୱାଧୀନତା ଲାଗି ସଂଗ୍ରାମ କରିବା ସକାଶେ ଆହ୍ୱାନ ଆସିବା ମାତ୍ରେ ସେଥିରେ ଯୋଗ ଦେବାପାଇଁ ପ୍ରସ୍ତୁତ ରହିବୁ ବୋଲି ପ୍ରତିଜ୍ଞାବଦ୍ଧ ହେଉଛୁ ।"

ଏହି ଶପଥଟି କଂଗ୍ରେସରେ ସର୍ବସମ୍ମତିକ୍ରମେ ବିପୁଳ ଆନନ୍ଦ ଉଲ୍ଲାସ ମଧ୍ୟରେ ଗୃହୀତ ହୋଇଯିବା ପରେ ସପକ୍ଷରେ ବଳିଷ୍ଠ ଯୁକ୍ତି ଉପସ୍ଥାପନ କରିବାକୁ ଯାଇ ପଣ୍ଡିତ ନେହେରୁ ତାଙ୍କ ସଭାପତି ଅଭିଭାଷଣରେ ଏକ ଆବେଗଭରା ଉଦ୍‌ବୋଧନରେ କହିଥିଲେ —

"Brick by brick has a natural movement been built up and often on the prostrate bodies of her, martyyed Sons has India advanced. The gaints of old may not be with as, but the courage of old is with as still and India can yet produce martyres like jatindra and Vijaya. The brief day of Earopean domination is already app·oching its end . . . . we have now an open conspiracy to free this couentry from foreign rule and all over country men and country women are willing to join it. But the reward that are in store for you, are suffering and prison and it may be deatn".

" ଭାରତର ସ୍ୱାଧୀନତା ଆନ୍ଦୋଳନ ଗୋଟିକ ପରେ ଗୋଟିଏ ଇଟା ଖଞ୍ଜା ହୋଇ ଗଢ଼ି ହେଲାପରି ଧୀରେ ଧୀରେ ଅଗ୍ରଗତି କରୁଛି । ଯେଉଁ ପ୍ରତିଷ୍ଠାବାନ ମହାନ ଯୋଦ୍ଧୃବୃନ୍ଦ ସ୍ୱାଧୀନତା ସଂଗ୍ରାମରେ ପ୍ରାଣକୁ ଭରିଦେଇ ଶହୀଦତ୍ୱ ଲାଭ କରିଛନ୍ତି, ସେମାନଙ୍କ ପ୍ରତି ଗଭୀର ଶ୍ରଦ୍ଧାଞ୍ଜଳି ଜଣାଇ ପଣ୍ଡିତ ଜବାହରଲାଲ କହିଥିଲେ ଯେ, ସେମାନଙ୍କ ସାହସ, ବୀରତ୍ୱ, କାୟାକୁ ଛାୟାପରି ସଂଗ୍ରାମୀମାନଙ୍କ ପଛେ ପଛେ ରହିଛି । ଉଦାହରଣ ପ୍ରସଙ୍ଗରେ ଶହୀଦ ଯତୀନ୍ଦ୍ର ଓ ବିଜୟଙ୍କ ନାମ ଗଦଗଦ୍ ଚିତ୍ତରେ ସେ ସ୍ମରଣ କରିଥିଲେ । ଭାରତର ସ୍ୱାଧୀନତା ସଂଗ୍ରାମକୁ ଏକ ପ୍ରକାଶ୍ୟ ଷଡ଼ଯନ୍ତ୍ର ରୂପେ ଅଭିହିତ କରାଇ ସେ ଉଦ୍‌ବୋଧନ ଦେଲେ ଯେ, ଭାରତରେ ଇଉରୋପୀୟ-ମାନଙ୍କ ପ୍ରାଧାନ୍ୟ ଆଉ ଖାଟିବ ନାହିଁ । ସେମାନଙ୍କର ଦିନକାଳ କ୍ରମେ ସରି ଆସିଲାଣି । ସ୍ତ୍ରୀ ପୁରୁଷ ନିର୍ବିଶେଷରେ ଭାରତବାସୀ ସ୍ୱାଧୀନତା ସଂଗ୍ରାମରେ ଝାସଦେଇ ଗୌରବ ଅର୍ଜନ କରନ୍ତୁ, କିନ୍ତୁ ମନେ ରଖନ୍ତୁ ସେମାନଙ୍କ ପାଇଁ ଏକମାତ୍ର ପୁରସ୍କାର ହେବ ଦୁଃଖ, ଶୋକ, ନିର୍ଯ୍ୟାତନା, କାରାଗାର, ଏପରିକି ଜୀବନ ବିସର୍ଜନ ।

ଏହି ଲାହୋର ଅଧିବେଶନରେ କଂଗ୍ରେସର ପୂର୍ବ ସଭାପତି ତାଙ୍କ ପିତା ମୋତିଲାଲ ନେହେରୁ ବିଦାୟ ଗ୍ରହଣ କଲେ ଓ ପୁତ୍ର ଜବାହରଲାଲ ବିଦାୟୀ ସଭାପତି ପିତାଙ୍କଠାରୁ କଂଗ୍ରେସର ଦାୟିତ୍ୱ ଗ୍ରହଣ କଲେ । କଂଗ୍ରେସରେ ଗୃହୀତ ଶପଥ ପତ୍ରକୁ ସମ୍ମାନ ପ୍ରଦର୍ଶନ କରି ୧୯୩୦ ମସିହା ଜାନୁୟାରୀ ୨୬ ତାରିଖରେ ଦେଶବାସୀ ବିଭିନ୍ନ ସ୍ଥାନରେ ସମବେତ ହୋଇ ବଜ୍ର ନିର୍ଘୋଷ ସ୍ୱରରେ ଶପଥ ପତ୍ରଟିକୁ ପାଠକଲେ । ତେଣିକି ପ୍ରତିବର୍ଷ ଜାନୁୟାରୀ ୨୬ ତାରିଖ ହେଲା ପୂର୍ଣ୍ଣ ସ୍ୱାଧୀନତା ଦିବସ । ପ୍ରତିବର୍ଷ ସ୍ୱାଧୀନତା ପ୍ରାପ୍ତି କାମନାରେ ଆତ୍ମ ଶକ୍ତିର ଜାଗରଣ ପାଇଁ ଦେଶବାସୀ ଜାନୁୟାରୀ ୨୬ ତାରିଖକୁ ସ୍ୱାଧୀନତା ଦିବସ ରୂପେ ପ୍ରତିପାଳିତ କଲେ ।

ଘଟଣା କ୍ରମେ ଦେଶବାସୀଙ୍କ ତ୍ୟାଗ ଓ ସଂଗ୍ରାମର ଐତିହ୍ୟକୁ ସମ୍ମାନ ପ୍ରଦର୍ଶନ କରି ବିଦେଶୀ ଶାସନର ଅବସାନ ପରେ ସେହି ଜାନୁୟାରୀ ୨୬ ତାରିଖ ହେଲା ଆମର

ସାଧାରଣତନ୍ତ୍ର ଦିବସ । ଆମର ନୂତନ ସମ୍ବିଧାନ ୧୯୫୦ ମସିହା ଜାନୁୟାରୀ ୨୬ ତାରିଖରୁ ହିଁ ଆମପ୍ରତି ଲାଗୁ ହେଲା । ତଦବଧି ଜାନୁୟାରୀ ୨୬ ତାରିଖକୁ ଆମେ ଭାରତବାସୀ ସାଧାରଣତନ୍ତ୍ର ଦିବସ ରୂପେ ପ୍ରତିପାଳନ କରିଆସିଛୁ ।

ଏହି ପରିପ୍ରେକ୍ଷୀରେ ୧୯୨୯ ମସିହାରେ ଘୋଷିତ ସେହି ଶପଥକୁ ପାଳନ କରିବାରେ ଆମେ କେତେଦୂର କ୍ଷମ ବା ଭାଜନ ହୋଇଛୁ ତାହା ପର୍ଯ୍ୟାଲୋଚନ କରିବାର କଥା । ପ୍ରୋକ୍ତ ଶପଥରେ ଆମ୍ଭେମାନେ କହିଥିଲୁ ଯେ, ଆମ ପରିଶ୍ରମର ଫଳ ଭୋଗ କରିବା ଓ ଜୀବନ ଧାରଣ ପାଇଁ ଆବଶ୍ୟକ ଦ୍ରବ୍ୟାଦି ଲାଭ କରିବା ଆମର ସମ୍ପୂର୍ଣ୍ଣ ଅଧିକାରଭୁକ୍ତ । କୌଣସି ସରକାର ସେହି ଅଧିକାରରୁ ଆମକୁ ବଞ୍ଚିତ କଲେ ତାହାକୁ ବଦଳାଇବା ବା ଲୋପ କରିବାର ଅଧିକାର ଆମର ରହିଛି । ସମସ୍ୟାର ସମାଧାନ ପାଇଁ ଅହିଂସା ଏକମାତ୍ର ମାର୍ଗ । ଖଦୀ, ସାମ୍ପ୍ରଦାୟିକ ଏକତା ଓ କାୟମନୋ ବାକ୍ୟରେ ଅସ୍ପୃଶ୍ୟତା ନିବାରଣ ଅହିଂସା ମାର୍ଗର ପ୍ରସ୍ତୁତି ପାଇଁ ଏକାନ୍ତ ଆବଶ୍ୟକ । ଆମମାନଙ୍କର ସଂକୀର୍ଣ୍ଣ ଧର୍ମ ବିଶ୍ୱାସ ରହିବ ନାହିଁ । ଜାତୀୟତା ବନ୍ଧନରେ ସମସ୍ତେ ଆବଦ୍ଧ ହେବୁ । ସ୍ୱଦେଶୀ ମନ୍ତ୍ରରେ ଅଭିମନ୍ତ୍ରିତ ହେବୁ ।

ସ୍ୱାଧୀନ ଭାରତର ସ୍ଥିତିକୁ ବୁଝାଇବାକୁ ଯାଇ ମହାତ୍ମା ଗାନ୍ଧୀ ପ୍ରୋକ୍ତ ଶପଥର ଏକ ନିର୍ଯ୍ୟାସ ବାହାର କରିଥିଲେ । ତାଙ୍କ ମତରେ —

"I have described our Independance as 'Ramraj' i. e, sovereignty of the people based on puremoral authority. It means the economic uplift of every individual, male a… by his or her own conscious effort. I… system allmen and women will hav… necessary articles of clothing and en… including milk and butter which … denied to millions".

"କୋଟି କୋଟି ଭାରତବାସୀ ସ୍ୱଚ୍ଛନ୍ଦ … ନିର୍ବାହ ପାଇଁ ପର୍ଯ୍ୟାପ୍ତ ପରିଧାନ ଓ ଘିଅ ଦୁଧର… କୃଷ୍ ଖାଦ୍ୟପେୟ ପାଇବେ । ଏହା କେ… ଯାଚି ଦେବେ ନାହିଁ । ଅବିରତ ଜାଗ୍ରତ ପ୍ର… ଏହା ହାସଲ କରିବାକୁ ହେବ ।"

ଆମେ ଗୋଟିଏ ପରେ ଗୋଟିଏ ୩୦ଟି … ବର୍ଷ ଭୋଗକରି ଛତିଶିତମ ବର୍ଷରେ ପଦାର୍ପ… ଯାଉଛୁ । ରାଜନୀତିକ ସ୍ୱାଧୀନତା ଆମ… ହୋଇଛି । ମାତ୍ର ଅର୍ଥନୀତିକ ସ୍ୱାଧୀନତା ବ… ପରିକଳ୍ପିତ ରାମରାଜ୍ୟ ଏବେବି ବାକି ଅଛି… ଆମର ସଂଗ୍ରାମ ସରିନାହିଁ । ବିଂଶସୂତ୍ରୀ … ମାଧ୍ୟମରେ ଅର୍ଥନୀତିକ ପ୍ରଗତିପାଇଁ ଯେଉଁ … ପ୍ରଚେଷ୍ଟା କାର୍ଯ୍ୟକାରୀ ହେଉଛି, କୌଣସି କାରଣ… ବାସ୍ତବ ସଫଳତା ହାସଲ ହୋଇପାରୁନାହିଁ … ଜନ୍ମେ ସହୋର କଂଗ୍ରେସର ଉଦ୍ଦିଷ୍ଟ ଶପଥ ପଠ… ଦୋହରାଇବାର ବେଳ ଆସିଛି ।

ମାର୍କଣ୍ଡସାହି, ଯମୁନାରୋଡ଼,
ପୋ । ଜିଲ୍ଲା—ପୁରୀ
ପିନ୍—୭୫୨୦୦୧



ସଚିବାଳୟରେ ମୁଖ୍ୟମନ୍ତ୍ରୀଙ୍କ ସହିତ ଶ୍ରୀଲଙ୍କାର କୃଷିମ…

# ଆମେ, ଆମ ଅଧିକାର ଓ ଦାୟିତ୍ୱ

ଶ୍ରୀ ସଚ୍ଚିଦାନନ୍ଦ କର

ଅଧିକାର କଥାଟିକୁ ଆମେ ଯେତିକି ଦୃଢ଼ ଓ ଉଚ୍ଚସ୍ୱରରେ ଉଚ୍ଚାରଣ କରିଥାଉ, ଦାୟିତ୍ ବା କର୍ତ୍ତବ୍ୟ କଥାଟି ପ୍ରତି ସେତିକି ନୀରବ ହୋଇଯାଉ । ଅଧିକାରବେଳକୁ ବାଘ, ଦାୟିତ୍ୱବେଳକୁ ଛାଗ । ଏହାଅନେକ କ୍ଷେତ୍ରରେ ଅପ୍ରିୟ ହେଲେ ମଧ୍ୟ ସତ୍ୟ ଓ ବାସ୍ତବ । ଅଧିକାର ସାବ୍ୟସ୍ତ କରିବାଲାଗି ଆମର ବ୍ୟଗ୍ରତା, ବ୍ୟାକୁଳତା ଯେତେ ଅଧିକ, ଦାୟିତ୍ ତୁଲାଇବାରେ ବା କର୍ତ୍ତବ୍ୟ ପାଳନରେ ଆମ ଅନେକଙ୍କର କେଜାଣି କାହିଁକି କୁଣ୍ଠା, ଶିଥିଳତା ଓ ଉଦାସୀନତା ବେଶି ।

କିନ୍ତୁ ଅଧିକାର ଓ ଦାୟିତ୍ୱ (କର୍ତ୍ତବ୍ୟ) ଯେ ଗୋଟିଏ ମୁଦ୍ରାର ଦୁଇପାଖ, ଏକଥା ଭୁଲିଯିବା ଉଚିତ୍ ନୁହେଁ । ଗୋଟିକ ସହିତ ଅନ୍ୟଟିର ଅଙ୍ଗାଙ୍ଗୀ ସଂପର୍କ । ଉଭୟ ଅଭିନ୍ନ । ଯଦି ଜନ୍ମଥିଛି, ତେବେ ମୃତ୍ୟୁ ସୁନିଶ୍ଚିତ ଭଳି, ଅଧିକାର ଯଦି ସ୍ୱୀକୃତ ଓ ସଂବିଧାନ-ସମ୍ମତ, ତେବେ ଦାୟିତ୍ ମଧ୍ୟ ପରଂପରାପୁଷ୍ଟ ଅଂଗୀକୃତ । ଦାୟିତ୍ୱ-ରହିତହୋଇ କେବଳ ଅଧିକାର-ସର୍ବସ୍ୱ ହୋଇଗଲେ, ତାହା ମକଦ୍ଦମାର ଏକତରଫା ବିଚାର ସଦୃଶହେବ । ତେଣୁ ଅଧିକାର-ସଚେତନତା ସାଂଗକୁ ଦାୟିତ୍ୱ-ସଚେତନତା ମଧ୍ୟ ଏକାନ୍ତ ଅପରିହାର୍ଯ୍ୟ, ବିଶେଷତଃ ଆମଦେଶପାଇଁ, ଜାତିର ମଙ୍ଗଳ ଓ କଲ୍ୟାଣପାଇଁ । ଅଧିକାର ଯଦି ଜାହିର କରିବାକୁ ଆମେ ଇଚ୍ଛାକରୁ, ତେବେ ଦାୟିତ୍ୱ ତୁଲାଇବାପାଇଁ ମଧ୍ୟ ପ୍ରସ୍ତୁତ ରହିବା ଦରକାର ।

ଆମେ ଏକ ସ୍ୱାଧୀନ ଗଣତାନ୍ତ୍ରିକ ରାଷ୍ଟ୍ରର ନାଗରିକ । ଏଥିପାଇଁ ଆମେ ଗର୍ବ ଅନୁଭବ କରୁ । କାରଣ ପୃଥିବୀର ବହୁରାଷ୍ଟ୍ର ଏବେବି ସ୍ୱାଧୀନତା-ପ୍ରୟାସୀ । ପୁଣି, ସ୍ୱାଧୀନହୋଇ ମଧ୍ୟ କେତେକ ରାଷ୍ଟ୍ରର ନାଗରିକ ଗଣତନ୍ତ୍ରରୁ ବଂଚିତ । ପାକିସ୍ଥାନ ଓ ବାଂଲାଦେଶ ଭଳି ରାଷ୍ଟ୍ରର ନାଗରିକଗଣ ଗଣତନ୍ତ୍ରର ପୁନଃପ୍ରତିଷ୍ଠା ନିମନ୍ତେ ବ୍ୟସ୍ତ-ବ୍ୟାକୁଳ । ଯେହେତୁ ବୋଧହୁଏ ଗଣତନ୍ତ୍ର ଶାସନରେ ସେମାନେ ଅଣନିଶ୍ୱାସୀ । ଭାରତରେ ପ୍ରକୃତ ଗଣତନ୍ତ୍ର ଯେ ପ୍ରତିଷ୍ଠିତ ଓ ପରୀକ୍ଷିତ, ଏକଥା ଅନ୍ୟ ଦେଶମାନେ ମୁକ୍ତକଣ୍ଠରେ ସ୍ୱୀକାର କରନ୍ତି । ସେଥିପାଇଁ ସେମାନେ ଭାରତକୁ ସମ୍ମାନ ଦିଅନ୍ତି । ଆମ ଦେଶରେ 'ଲୋକଙ୍କପାଇଁ ଲୋକଙ୍କ ଦ୍ୱାରା ଲୋକ-ଶାସନ' ପ୍ରବର୍ତ୍ତିତ; ଯାହାକି ପ୍ରକୃତ ଗଣତନ୍ତ୍ରର ସଂଜ୍ଞାରୂପେ ସ୍ୱୀକୃତ । ଆମେ ଭାରତବାସୀ ଗଣତନ୍ତ୍ରକୁ ମର୍ଯ୍ୟାଦା ଦେଉ ଓ ଦେବା ଉଚିତ୍ ।

ଆମ ଦେଶରେ ଆମେ କେତେକ ମୌଳିକ ଓ ସ୍ୱତନ୍ତ୍ର ଅଧିକାର ପାଇଛୁ ଓ ଏହା ସଂବିଧାନ-ସମ୍ମତ । ଆମ ସଂବିଧାନ ପ୍ରବର୍ତ୍ତିତ ହେବାପରଠାରୁ ଅଦ୍ୟାବଧି ବହୁବାର ସଂଶୋଧିତ ହୋଇଥିଲେ ସୁଦ୍ଧା, ଆମ ସଂବିଧାନକୁ ଆମେ ସମ୍ମାନ ଦେଉଥାଉ । ଭାରତକୁ ଏକ ସାର୍ବଭୌମ, ସମାଜବାଦୀ, ଧର୍ମନିରପେକ୍ଷ ଗଣତାନ୍ତ୍ରିକ ଜନରାଜ୍ୟରୂପେ ଗଠନ କରିବାର ସଂକଳ୍ପ ଆମେ ସଂବିଧାନରେ ଗ୍ରହଣକରିଛୁ । ସଂବିଧାନ ଭାରତର ପ୍ରତ୍ୟେକ ନାଗରିକଙ୍କୁ ସାମାଜିକ, ଆର୍ଥିକ ଓ ରାଜନୈତିକ ନ୍ୟାୟ ତଥା ବାକ୍, ବିଚାର, ଅଭିବ୍ୟକ୍ତି, ବିଶ୍ୱାସ, ଧର୍ମ ଓ ଉପାସନାର ସ୍ୱାଧିନତା ଏବଂ ପ୍ରତିଷ୍ଠା ଓ ସୁଯୋଗର ସମତା-ଅଧିକାର ଦେଇଛି । ଆମ ଭିତରେ ବ୍ୟକ୍ତିର ଗରିମା, ରାଷ୍ଟ୍ରର ଏକତା ଓ ଅଖଣ୍ଡତା ଏବଂ ଭ୍ରାତୃତ୍ୱ ବୃଦ୍ଧି ପାଇଁ ଆମେ ଅଂଗୀକାରବଦ୍ଧ ।

ଆମେ ଏଦେଶର ଅଧିବାସୀ ଭାବରେ ରହିବାର, ବଞ୍ଚିବାର ଅଧିକାର ପାଇଛୁ । ଶାନ୍ତିପୂର୍ଣ୍ଣ ଓ ଶସ୍ତ୍ରହୀନ ଭାବେ ଆମେ ସମ୍ମିଳିତ ହୋଇପାରିବୁ । ସଂସ୍ଥା ବା ସଂଘ ଗଢ଼ିପାରିବୁ । ଭାରତ ଭିତରେ ଯେକୌଣସି ଅଞ୍ଚଳରେ ବସବାସ ଓ ବିଚରଣ କରିପାରିବୁ । ଯେକୌଣସି ବୃତ୍ତି, ବ୍ୟବସାୟ, ଜୀବିକା ଅବଲମ୍ବନ କରିପାରିବୁ । ଏସବୁ ଆମର ସ୍ୱତନ୍ତ୍ର ଅଧିକାର ଭାବରେ ଆମ

ସଂବିଧାନରେ ଉଲ୍ଲିଖିତ । ଏପରିକି, ଜୀବନର ଓ ଦୈହିକ ସ୍ୱାଧିନତାର ସଂରକ୍ଷଣ ଏବଂ ଅପରାଧ ଜନିତ ଦୋଷ ସାବ୍ୟସ୍ତି ବିଷୟରେ ସଂରକ୍ଷଣ, ଶୋଷଣ ବିରୁଦ୍ଧରେ ଓ ଧର୍ମ-ସ୍ୱାତନ୍ତ୍ର୍ୟ ସଂପର୍କରେ ଆମକୁ ଅଧିକାର ମିଳିଛି । ସମସ୍ତ ବ୍ୟକ୍ତି ବିବେକର ସ୍ୱାତନ୍ତ୍ର୍ୟ ନିମିତ୍ତ ଏବଂ ଧର୍ମର ଅବାଧ ଆଚରଣ ଓ ପ୍ରସାର କରିବାର ଅଧିକାର ନିମିତ୍ତ ସମାନଭାବେ ହକ୍‌ଦାର ଅଟନ୍ତି । ଏପରିକି କୃପାଣ ଧାରଣ ଓ ବହନ ଶିଖଧର୍ମ-ଅବଲମ୍ବୀମାନଙ୍କୁ ଅଧିକାର ମିଳିଛି । ସଂସ୍କୃତି ଓ ଶିକ୍ଷା ବିଷୟରେ ମଧ୍ୟ ଆମର ଅଧିକାର ରହିଛି । ଭାରତରେ କୌଣସି ଅଞ୍ଚଳର ନିବାସୀ ନାଗରିକଙ୍କର ସ୍ୱତନ୍ତ୍ରଭାଷା, ଲିପି ବା ସଂସ୍କୃତିଥିଲେ, ତାହା ବଜାୟ ରଖିବା ପାଇଁ ସେମାନଙ୍କର ଅଧିକାର ସଂବିଧାନ ସ୍ୱୀକୃତ । ଧର୍ମ ବା ଭାଷା ଉପରେ ପ୍ରତିଷ୍ଠିତ ସମସ୍ତ ସଂଖ୍ୟା-ଲଘୁଙ୍କର ନିଜ ରୁଚି ଅନୁସାରେ ଶିକ୍ଷା ଅନୁଷ୍ଠାନ ସ୍ଥାପନ ଓ ପରିଚାଳନା କରିବାର ଅଧିକାର ମଧ୍ୟ ମିଳିଛି ।

ଏତେ ସୁବିଧାସୁଯୋଗର ଆମେ ଅଧିକାରୀ । ଆମର ଏତେ ଅଧିକାର ରହିଛି । ଆମେ ଯଦି ଏ ଅଧିକାରରୁ ବଂଚିତ ହେଉ, ତେବେ ଅବିଚାର ବିରୁଦ୍ଧରେ ଆମେ ଆପତ୍ତି ଅଭିଯୋଗ କରିବାରେ, ଦାବୀ ଜଣାଇବାରେ, ଅସନ୍ତୋଷ ଓ ପ୍ରତିକ୍ରିୟା ପ୍ରକାଶ କରିବାରେ, ପ୍ରତିବାଦର ସ୍ୱର ଉଠାଇବାରେ ବାଧାନାହିଁ । ଆଉମ୍ ଅଦାଲତର ଦ୍ୱାର ମଧ୍ୟ ଅନେକ କ୍ଷେତ୍ରରେ ଏଥିପାଇଁ ଉନ୍ମୁକ୍ତ । କେତେକ ଅନ୍ୟାୟ କ୍ଷେତ୍ରରେ ନ୍ୟାୟାଳୟମାନେ ମଧ୍ୟ ନ୍ୟାୟ ଦେବାର ଦୃଷ୍ଟାନ୍ତ ବିରଳନୁହେଁ ।

କିନ୍ତୁ ସଂଘଗଠନର ଅଧିକାର ନେଇ ସଂଘ-ଶକ୍ତିକୁ ଆୟୁଧ କରି ଧର୍ମଘଟର ଧମକ ଦେଇ କାମ ବନ୍ଦ୍ କରିବା, ଇଚ୍ଛାକୃତ ଭାବେ କାର୍ଯ୍ୟ ମନ୍ଥର କରିବା, ଉତ୍ତେଜିତ ହୋଇ ଭଙ୍ଗାରୁଜା ପୋଡ଼ାଜଳା ଇତ୍ୟାଦି ଧ୍ୱଂସାତ୍ମକ କାର୍ଯ୍ୟ ସଂଘଟିତ କରିବା ଅଥବା ହିଂସାପରାୟଣ ହେବାର ଅଧିକାର ଆମରନାହିଁ । ସୁବିଧାସୁଯୋଗ ପାଇବାର ଅଧିକାର ଯେପରି ଅଛି, ନିଜର ଦାୟିତ୍ୱ ତୁଲାଇ ଅନ୍ୟମାନଙ୍କର ସନ୍ତୋଷବିଧାନ କରିବା ସେହିପରି ଆମର କର୍ତ୍ତବ୍ୟ । ଅନ୍ୟାୟ, ଅନୀତି, ଦୁର୍ନୀତି ଓ ହିଂସା କରିବାର ଅଧିକାର ଆମକୁ କିଏଦେଲା ? ଲୋକଙ୍କର ସେବା ଓ ଚିକିତ୍ସା କରିବା, ଲୋକଙ୍କୁ ସୁବିଧାରେ ପାଣି ଓ ଆଲୁଅ ଯୋଗାଇବା, ଲୋକଙ୍କର ବାର୍ତ୍ତା ଠିକ୍‌ଭାବେ ପ୍ରେରଣକରିବା, ଦେଶରେ ଓ ସମାଜରେ ଆଇନକାନୁନ୍ ଓ ଶାନ୍ତିଶୃଙ୍ଖଳା ରକ୍ଷାକରିବା,; ଅନ୍ୟକୁ ନିର୍ବିଘ୍ନରେ, ନିଃଶଙ୍କରେ, ନିରୁପଦ୍ରବରେ ରହିବାର ସୁଯୋଗଦେବା ଯେ ଆମର ପବିତ୍ର କର୍ତ୍ତବ୍ୟ, ଏହା ବିସ୍ମୃତ ହେବାର ନୁହେଁ ।

ନିଜ ଅଞ୍ଚଳର ବା ନିଜ ରାଜ୍ୟର ଉନ୍ନତି ଓ ବିକାଶପାଇଁ ମତବ୍ୟକ୍ତ କରିବାର ଅଧିକାର ଅଛି । କିନ୍ତୁ ଦେଶକୁ ବିଚ୍ଛିନ୍ନ ଓ ବିଭକ୍ତ କରିବାର ଦାବୀ ଥୋଇ, ଏଥିପାଇଁ ଉଗ୍ରପନ୍ଥୀସାଜି ସନ୍ତ୍ରାସବାଦୀ କାର୍ଯ୍ୟ ତଥା ହତ୍ୟାକାଣ୍ଡ ସଂଘଟିତକରିବା, ଆତଙ୍କ ସୃଷ୍ଟି କରିବା ଆମର କର୍ତ୍ତବ୍ୟ ନୁହେଁ ।

ରାସ୍ତାରେ ଚାଲିବାର କିମ୍ବା ଗାଡ଼ି ଚଳାଇବାର ଅଧିକାର ଆମର ନିଶ୍ଚୟ ରହିଛି; କିନ୍ତୁ ରାସ୍ତାକୁ ମନଇଚ୍ଛା ବ୍ୟବହାର କରିବାର କିମ୍ବା ଅବରୋଧ କରିବାର ଅଧିକାର ଆମରନାହିଁ । ବରଂ ରାସ୍ତାର ନିୟମମାନି ଚଳିବା ଓ ଶୃଙ୍ଖଳା ରକ୍ଷାକରିବା

ଆମର କର୍ତ୍ତବ୍ୟ । ତଦ୍ୱାରା ଦୁର୍ଘଟଣାରୁ ରକ୍ଷାମି
ଅନ୍ୟମାନଙ୍କ ଚଳାଚଳ ସ୍ୱଚ୍ଛନ୍ଦ ଓ ସୁବିଧାଜନକ ହୋ

ବିଧାନସଭାରେ କିମ୍ବା ପାର୍ଲାମେଣ୍ଟରେ କହିବା
ଅଛି ନିର୍ବାଚିତ ପ୍ରତିନିଧିମାନଙ୍କର । କିନ୍ତୁ ଅଯଥା
ଗଣ୍ଡଗୋଳ ଓ ସଂଘର୍ଷ ଘଟାଇ ଅପ୍ରୀତିକର ପରିସ୍ଥିତି
ଅସୌଜନ୍ୟ ଆଚରଣ ଦେଖାଇ ସଭାଗୃହର କାର୍ଯ୍ୟକୁ
ବିପର୍ଯ୍ୟସ୍ତ କରିବା ଅଧିକାର ନାହିଁ । କହିବାର ଅଧିକ
ଯେପରିଥିଛି, ଅନ୍ୟକୁ କହିବାଲାଗି ସୁଯୋଗଦେବା ଓ
ମର୍ଯ୍ୟାଦା, ଶାଳୀନତା ରକ୍ଷାକରିବା ମଧ୍ୟ ଆମର
ଆମେ ଯେଉଁମାନେ ଲୋକପ୍ରତିନିଧି, ଆମେ ଲୋକଙ୍କ
ନିର୍ବାଚିତ । ଆମେ ହୁଏତ ଲକ୍ଷେ ଲୋକଙ୍କର ବା
ଲୋକଙ୍କର ଜଣେ ଜଣେ ପ୍ରତିନିଧି । ନିଜନିଜ
ରାଜ୍ୟର ବା ଦେଶର ତଥା ଲୋକଙ୍କର ଅଭାବ
ଉନ୍ନତି ବିଷୟରେ ବୁଝିବା ଆମର ଗୁରୁଦାୟିତ୍ୱ ।
ସୌଜନ୍ୟ-ଜ୍ଞାନହେଉ, ଲୋକେ କାହିଁକି ଆମକୁ ସମ୍ମା
ମତବ୍ୟକ୍ତ କରିବାର ଅଧିକାର ବା ସ୍ୱାଧୀନତାର
ସ୍ୱେଚ୍ଛାଚାରିତା ବା ଅବାଧ ଅମତପ୍ରକାଶ । ବ୍ୟକ୍ତି,
ଦେଶପ୍ରତି ଭଦ୍ର, ସଂଯତ ଓ ସଂଭ୍ରମ ହେବା ଏ
ବ୍ୟକ୍ତିଗତ କୁତ୍ସାରଟନା ବା ଚରିତ୍ରସଂହାର ନକରିବା
କର୍ତ୍ତବ୍ୟ, ଏକଥାକୁ କାହିଁକି ଭୁଲିଯିବା ?

ପିତାମାତା ବା ଗୁରୁ-ଗୁରୁଜନଙ୍କଠାରୁ ସ୍ନେହଶ୍ରଦ୍ଧା
ଯେପରି ଏକ ପାରଂପରିକ ଅଧିକାର, ସେମାନ
ମାନ୍ୟତାଦେବା ପରମ କର୍ତ୍ତବ୍ୟ ମଧ୍ୟ ପୁତ୍ରର ଓ
କୌଣସି ଶିକ୍ଷାନୁଷ୍ଠାନର ଛାତ୍ରବୋଲି କହିବାର ଅଧି
ଅଛି, ସେହି ଶିକ୍ଷାନୁଷ୍ଠାନର ଓ ଶିକ୍ଷକଙ୍କର ମର୍ଯ୍ୟାଦା ର
ପବିତ୍ର କର୍ତ୍ତବ୍ୟକୁ ଭୁଲିଯିବା ଉଚିତ୍ ନୁହେଁ ।

ନିର୍ବାଚନରେ ଭୋଟ ଦେବାର ଅଧିକାର ଆ
ମାତ୍ର ସେହି ଭୋଟାଧିକାରକୁ ଉପଯୁକ୍ତ ଭାବେ
କରିବା ଏବଂ ନିର୍ବାଚନର ନିରପେକ୍ଷତା ଓ ପବି
କରିବା ଆମର ଦାୟିତ୍ୱ । ନହେଲେ, ନିର୍ବାଚ
ଉଦ୍ଦେଶ୍ୟ ବ୍ୟର୍ଥ ହୋଇଯିବ ସିନା ! ନିର୍ବାଚନ
ହେବା ଲାଗି ଏଦେଶର ପ୍ରତ୍ୟେକ ବୟଃପ୍ରାପ୍ତ
ଅଧିକାର ଅଛି । କେବଳ କେତେକ କାରଣରୁ
କିନ୍ତୁ ଯେଉଁ କାର୍ଯ୍ୟ ବା ଆସନ ପାଇଁ ଆମେ ପ୍ରାର୍ଥୀ
ଆମେ ପ୍ରକୃତରେ ଯୋଗ୍ୟ କି ନୁହେଁ, ଏକଥା ବି
ନିଜଠାରୁ ଯୋଗ୍ୟତର ବ୍ୟକ୍ତିକୁ ସୁଯୋଗ ଦେବା
ଉଚିତ ନୁହେଁ ।

ସଂବାଦପତ୍ର, ଆକାଶବାଣୀ, ଦୂରଦର୍ଶନ
ଗଣମାଧ୍ୟମକୁ ବ୍ୟବହାର କରିବାର ଅଧିକାର ଅ
ମାତ୍ର ଗଣମାଧ୍ୟମ ଯେପରି ଅପବ୍ୟବହାର ଓ
ଆୟୁଧ ନହୁଏ, ସେଥିପ୍ରତି ସତର୍କ ରହିବା
ପକ୍ଷରେ ଉଚିତ । ଗଣମାଧ୍ୟମ ମାଧ୍ୟମରେ
ଆଲୋଚନା କରିବାର ଆପତ୍ତି ନାହିଁ । ମାତ୍ର ବ୍ୟକ୍ତି
ସମାଜ ଓ ଜାତିର କ୍ଷତି ହେଲାଭଳି ରୁଚିହୀନ
ଅଭିବ୍ୟକ୍ତି ଆଦୌ ଶ୍ଳାଘ୍ୟ ନୁହେଁ ।

ଆମ ନିଜର ଧର୍ମ-ଧାରଣା, ଚିନ୍ତା-ଚେତନା, ଓ ବିଶ୍ୱାସ-ବିଶ୍ୱାସ ଉପରେ ଯେପରି ସ୍ୱତନ୍ତ୍ର ଅଧିକାର ରହିଛି, ଅନ୍ୟର ଧର୍ମ ଓ ଉପାସନାକୁ ଅନ୍ୟର ବିଶ୍ୱାସ-ବିଶ୍ୱାସକୁ, ଅନ୍ୟ ଜାତି ଓ ସଂପ୍ରଦାୟକୁ ସମ୍ମାନ ଦେବା ଓ ନିନ୍ଦିତ ନକରିବା ମଧ୍ୟ ଆମର ବିଶେଷ କର୍ତ୍ତବ୍ୟ । ମାତ୍ର ଧର୍ମ, ଜାତି ଓ ସଂପ୍ରଦାୟକୁ କେନ୍ଦ୍ରକରି ମତାନ୍ଧ ଓ ଧର୍ମାନ୍ଧ ହୋଇ ସାଂପ୍ରଦାୟିକ ଦଙ୍ଗା, ଗଣ୍ଡଗୋଳ ଓ ହିଂସାକାଣ୍ଡ ଘଟାଇ କିମ୍ବା ଆମର ବିରୋଧୀ ଦେଶ ସହିତ ଗୁପ୍ତ ସଂପର୍କ ରଖି ଆମ ଦେଶର ଏକତା, ସଂହତି, ଅଖଣ୍ଡତା ଓ ନିରାପତ୍ତାକୁ ବିପନ୍ନ କରିବାର ଅଧିକାର ଆମର ନାହିଁ । ଏକ୍ଷେତ୍ରରେ ଆମର ମହାନ୍ କର୍ତ୍ତବ୍ୟ ତଥା ଦାୟିତ୍ୱ ହେଉଛି—ସାଂପ୍ରଦାୟିକ ବା ଧର୍ମଭିତ୍ତିକ ବିଦ୍ୱେଷ ବିଭେଦ ଭୁଲି ସଂପ୍ରୀତି ଓ ସଦ୍‌ଭାବ ପ୍ରତିଷ୍ଠା କରିବା ଓ ଦେଶରେ ଐକ୍ୟ ଓ ସଂହତି ବଜାୟ ରଖିବା, ଦେଶର ସୁରକ୍ଷା ନିମନ୍ତେ ସଜାଗ ହେବା । ନିରାପତ୍ତା ବିପନ୍ନକାରୀ, ବିଚ୍ଛିନ୍ନତାବାଦୀଙ୍କୁ ଦୃଢ଼ ପ୍ରତିରୋଧ ଓ ନିନ୍ଦାକରିବା, ଆମ ରାଷ୍ଟ୍ରର ଧର୍ମ ନୀରପେକ୍ଷ ନୀତିକୁ ରକ୍ଷା କରିବା ଆମର ଦାୟିତ୍ୱ—ଜାତି, ଧର୍ମ, ବର୍ଣ୍ଣ ନିର୍ବିଶେଷରେ ।

ଆମ ଦେଶର ଜନସାଧାରଣଙ୍କୁ ଶାସନ, ସଂବିଧାନ, ସୁରକ୍ଷା ଓ ପାରସ୍ପରିକ ସଂପ୍ରୀତି ବିଷୟରେ ସଜାଗ, ସଚେତନ କରାଇବାକୁ ହେବ । ଏଥିଲାଗି ଶିକ୍ଷାର ଆବଶ୍ୟକତା ଅଧିକ । ଦେଶର ଶତକଡ଼ା ୫୦ରୁ ଷାଠିଏ ଭାଗ ଲୋକ ଯଦି ଅଜ୍ଞ ଓ ନିରକ୍ଷର ରହନ୍ତି, ତେବେ ଦେଶର ପ୍ରଗତି ସଂଭବ ହେବ ବୋଲି ଆଶା କରିବା କିପରି? ତେଣୁ ଅଶିକ୍ଷା, ଅଜ୍ଞାନତା ଓ ନିରକ୍ଷରତା ଦୂର କରି ଦେଶର ସମସ୍ତ ନାଗରୀକଙ୍କୁ ଶିକ୍ଷିତ କରାଇବାର ଗୁରୁ ଦାୟିତ୍ୱ ଆମର ।

ଦେଶରେ ଶତକଡ଼ା ପଚାଶରୁ ଷାଠିଏ ଭାଗ ଲୋକ ଦରିଦ୍ର । ଅନେକ ଅନୁନ୍ନତ ଅନଗ୍ରସର ଓ ଅବହେଳିତ । ଅନେକଙ୍କର ବୃତ୍ତି ଧନ୍ଦା ନାହିଁ, ବେକାର । ପାଖରେ ଧନ ନାହିଁ, କ୍ରୟ ଶକ୍ତି ଦୁର୍ବଳ, ଅର୍ଥନୈତିକ ଦୃଷ୍ଟିରୁ ଅନେକ ଦୁର୍ବଳ । ଅନେକ ମଧ୍ୟ ବାସହୀନ, ଭୂମିହୀନ । ଅଥଚ ମୁଷ୍ଟିମେୟ ବ୍ୟକ୍ତି ଭୋଗବିଳାସ ଓ ପ୍ରାଚୁର୍ଯ୍ୟ ଭିତରେ ନିମଜ୍ଜିତ । ସେମାନଙ୍କ ପାଖରେ ଧନ ସଂପତ୍ତି ପ୍ରଚୁର । ଏଭଳି ଅବସ୍ଥାରେ କୌଣସି ଦେଶର ସମୃଦ୍ଧି ସଂଭବ ନୁହେଁ । ତେଣୁ ଦାରିଦ୍ର୍ୟ ଓ ବେକାରୀ ହଟାଇ ଅର୍ଥନୈତିକ ବୈଷମ୍ୟ ଯଥାସଂଭବ ଦୂର କରିବାକୁ ହେବ । ଦାରିଦ୍ର୍ୟର ସୀମାରେଖା-ତଳେ ଥିବା ଲୋକଙ୍କୁ ଉପରକୁ ଉଠାଇବାକୁ ପଡ଼ିବ । ଭୂମିହୀନଙ୍କୁ ଭୂମି, ବାସହୀନଙ୍କୁ ଗୃହ, ବୃତ୍ତିହୀନଙ୍କୁ ବୃତ୍ତି ଯୋଗାଇ ସେମାନଙ୍କୁ ଉପଯୁକ୍ତ ଭାବରେ ଥଇଥାନ କରିବାକୁ ହେବ । ଅନୁନ୍ନତ, ଅନଗ୍ରସର ଶ୍ରେଣୀର ଉନ୍ନତି ଘଟାଇବାକୁ ହେବ । ଏ ଦାୟିତ୍ୱ ଆମର ।

ଗଛକାଟି ଜଙ୍ଗଲ ସଫାକରି ଓ ଅନ୍ୟ ବାଟରେ ପରିବେଶକୁ ଦୂଷିତ ଓ ପ୍ରତିକୂଳ କରିବାର ଅଧିକାର ଆମର ନାହିଁ । ବରଂ ବୃକ୍ଷ ରୋପଣ କରିବା, ଜଙ୍ଗଲର ସୁରକ୍ଷା କରିବା ଓ ପରିବେଶକୁ ଶୁଦ୍ଧ, ନିର୍ମଳ ରଖିବାରେ ଧ୍ୟାନ ଦେବା ଆମର କର୍ତ୍ତବ୍ୟ ହେବା ଉଚିତ । ବୃକ୍ଷ ଛେଦନ ଓ ଜଙ୍ଗଲ ଧ୍ୱଂସ କରିବା, ମୂଲ୍ୟବାନ କାଠ ଚୋରାରେ ବିକି ପ୍ରଚୁର ଧନ ଉପାର୍ଜ୍ଜନ କରିବାର ଅଧିକାର ଆମକୁ କିଏ ଦେଲା ?

ଡାକ୍ତରଖାନାରେ ଖଟିଆ ପାଇଁ, ଉପଯୁକ୍ତ ଚିକିତ୍ସା ଓ ଔଷଧ ପାଇଁ ଆମେ ଦାବୀ କରୁଛୁ ଏବଂ ଏଭଳି ଦାବୀ ସ୍ୱାଭାବିକ । କିନ୍ତୁ ଡାକ୍ତରଖାନାକୁ ଅପରିଷ୍କାର କରିବାରେ କିମ୍ବା ଔଷଧ ଓ ଉପକରଣ ଇତ୍ୟାଦି ବାହାରେ ବିକ୍ରୟ କରିବା କିମ୍ବା ଲୁଚେଇ ନେଇ ଆସିବାର ହୀନ ଅଭ୍ୟାସ ବିଷୟରେ ଆମେ ସଚେତନ ହେବା କଣ ଉଚିତ ନୁହେଁ । ରୋଗୀମାନଙ୍କୁ ଔଷଧ ଓ ଖାଦ୍ୟ ଯୋଗାଇବା ପାଇଁ ଯିଏ ନିଯୁକ୍ତ ଭଲ ଖାଦ୍ୟ ଓ ଭଲ ଔଷଧ ଯୋଗାଇବା କଣ ତାଙ୍କର ଦାୟିତ୍ୱ ନୁହେଁ ? ତାକୁ ଠିକ୍‌ଭାବେ ଯାଞ୍ଚ ଓ ତନଖି କରିବା କଣ ଆମର ଦାୟିତ୍ୱ ନୁହେଁ ?

ବ୍ୟବସାୟକରି ଚଳିବା ଲାଗି ଆମର ସଂବିଧାନଗତ ସ୍ୱତନ୍ତ୍ର ଅଧିକାର ଅଛି । ଆମେ ଆମର ପସନ୍ଦ ମୁତାବକ ବ୍ୟବସାୟ ବାଣିଜ୍ୟ କରିବାକୁ କେହି ବାଧା ଦେଉ ନାହିଁ । କିନ୍ତୁ ବ୍ୟବସାୟର ଅର୍ଥ ନୁହେଁ ଅପମିଶ୍ରଣ କିମ୍ବା ଭେଜାଲ । ଚାଉଳରେ ଗୋଡ଼ି, ତେଲରେ ଅଗରା, ଅଟାରେ ତେନ୍ତୁଳି ମଞ୍ଜି ଚୂନା, ସିମେଣ୍ଟରେ ଶୁଖିଲା ପଙ୍କ, ଦୁଧରେ ଖଡ଼ିଗୁଣ୍ଡ, ଘିଅରେ ଚର୍ବି ଇତ୍ୟାଦି ମିଶାଇବାର କିମ୍ବା ବାତ୍ୟା, ବନ୍ୟା ଇତ୍ୟାଦି ପ୍ରାକୃତିକ ଦୁର୍ଯ୍ୟୋଗ ବେଳେ କିମ୍ବା ଡିରୋଟ ସମୟରେ ଜିନିଷପତ୍ର ଲୁଚାଇ ରଖି ବଜାରରେ କୃତ୍ରିମ ଅଭାବ ସୃଷ୍ଟି କରି ମନ ଇଚ୍ଛା ଦରବୃଦ୍ଧି, କଳାବଜାର ଓ ଚୋରା କାରବାର କରିବାର ଅଧିକାର ଆମର ଆଦୌ ନାହିଁ । ଅସଦୁପାୟରେ ପ୍ରଚୁର ଧନ ଅର୍ଜ୍ଜନ କରି କିମ୍ବା ଟିକସ ଫାଙ୍କି କଳା ଧନ ଠୁଳ କରିବା ଲାଗି ଆମକୁ କେହି ଅଧିକାର ଦେଇ ନାହିଁ । ବରଂ ଦୁର୍ଯୋଗ ବା ଅଭାବରୁ ଫାଇଦା ଉଠାଇବାର ମନୋଭାବ ପରିବର୍ତ୍ତେ ଜନ-ସହାୟକ ମନୋଭାବ ପ୍ରକାଶ କରିବା ଆମର କର୍ତ୍ତବ୍ୟ ।

ଅଧିକାର ସାବ୍ୟସ୍ତ କରିବାକୁ ଯାଇ ଟ୍ରେନ-ବସ୍ ପୋଡ଼ିଦେଲେ ଅଫିସ ଜାଳିଦେଲେ କି ଭାଙ୍ଗିରୁଜି ଦେଲେ କିମ୍ବା କୌଣସି ନେତା ବା ପଦାଧିକାରୀଙ୍କୁ ହତ୍ୟା କରିଦେଲେ, ହୁଏତ ଆତ୍ମ ଯୌଦ୍ଧା ପ୍ରକାଶ ପାଇପାରେ, ମାତ୍ର ଆମେ ଯେ କର୍ତ୍ତବ୍ୟ-ବିସ୍ମୃତ, ଏହା ପ୍ରମାଣିତ ହୋଇଥାଏ ।

ଶକ୍ତିଶାଳୀ ମାରଣାସ୍ତ୍ର ବା ଅଣୁ ଅସ୍ତ୍ର ଉତ୍ପାଦନ ଓ ପ୍ରତିଯୋଗିତା କରିବା କିମ୍ବା ତାରକା ଯୁଦ୍ଧ ବା ସାମୁଦ୍ରିକ ଯୁଦ୍ଧ କରିବାକୁ ହକ୍‌ଦାର ବୋଲି ଯଦି କେହି ଯୁକ୍ତି ବାଢ଼ନ୍ତି, ତେବେ ଏହା ଯେ ମାନବ ସମାଜ ଓ ସଭ୍ୟତାର ଧ୍ୱଂସକାରୀ, ଏ ସତ୍ୟକୁ ଉପଲବ୍ଧି କରି ମାନବ ସମାଜର ମଙ୍ଗଳ ପାଇଁ ବିଶ୍ୱରେ ଶାନ୍ତି ପ୍ରତିଷ୍ଠା ପାଇଁ ଆମର କର୍ତ୍ତବ୍ୟ ହେବ ଅସ୍ତ୍ର ନିୟନ୍ତ୍ରଣ ବା ନିରସ୍ତ୍ରୀକରଣ ଏବଂ ଅନାକ୍ରମଣ ଓ ସହାବସ୍ଥାନ, ସହଯୋଗ ଓ ବନ୍ଧୁତା ସ୍ଥାପନ ! ଦେଶ ଦେଶ ଓ ଜାତି ଜାତି ମଧ୍ୟରେ ଥିବା ଶତ୍ରୁତା, ତିକ୍ତତା, ସନ୍ଦେହ, ଅବିଶ୍ୱାସ ଓ ଈର୍ଷାଦ୍ୱେଷକୁ ଦୂର କରି ସହଯୋଗ ଓ ସଦ୍‌ଭାବ ପ୍ରତିଷ୍ଠା ଆମର ଦାୟିତ୍ୱ ତଥା କର୍ତ୍ତବ୍ୟ । ଯୁଦ୍ଧ ଧମକ ଓ ଯୁଦ୍ଧ ପ୍ରସ୍ତୁତିକୁ ଆମେ ନିନ୍ଦା ଓ ପ୍ରତିବାଦ କରିବା ଉଚିତ । ବାହୁବଳ ବା ଶକ୍ତି ପ୍ରଦର୍ଶନରେ ସମସ୍ୟାର ଯେ ପ୍ରକୃତ ସମାଧାନ ହୁଏ ନାହିଁ,

ବରଂ ସମସ୍ୟାକୁ ଯେ ଏହା ଜଟିଳତର କରିଦିଏ ଓ ନୂଆ ସମସ୍ୟାବଳୀକୁ ଆମନ୍ତ୍ରଣ କରିଆଣେ. ଏକଥାକୁ ଆମେ ବୁଝି ଆମର କର୍ତ୍ତବ୍ୟ ସ୍ଥିର କରିବା ଦରକାର ।

ଏ ଦେଶ ଆମର । ଆମ ଦେଶ ବିକାଶମୁଖୀ । କୃଷି, ଶିଳ୍ପ ଶିକ୍ଷା, ବିଜ୍ଞାନ, ଚିକିତ୍ସା, କାରିଗର ଇତ୍ୟାଦି ସବୁ କ୍ଷେତ୍ରରେ ଆମେ ସ୍ୱଳ୍ପ ବିକାଶ । ଦେଶଠାରୁ ଆମେ ଯେତିକି ଅଧିକାର ଓ ସୁବିଧାସୁଯୋଗ ପାଉଛୁ, ଦେଶର ବିକାଶ ଓ ଉନ୍ନତ ପାଇଁ ମଧ୍ୟ ଆମର ତତ୍ତୁଲ୍ୟ ଦାୟିତ୍ୱ ତଥା କର୍ତ୍ତବ୍ୟ ରହିଛି । ଦେଶର ସଂପତ୍ତି ଯଥା ଜାତୀୟ ସଂପତ୍ତି

ଯେପରି ନଷ୍ଟଭ୍ରଷ୍ଟ ନହୁଏ, ବିଭିନ୍ନ କ୍ଷେତ୍ରରେ ଅପ
ଅପଚୟ ଯେପରି ନଘଟେ, ଦେଶ ଯେପରି ସୁରକ୍ଷି
ତାହା ଦେଖିବା ଆମର କର୍ତ୍ତବ୍ୟ । ଦେଶର
ଜାତୀୟ ପତାକା ଓ ଜାତୀୟ ସଂଗୀତର ଅସ
ଅବମାନନା ନକରି ସେଥିପ୍ରତି ଉପଯୁକ୍ତ ସମ୍ମାନ
କରିବା ଆମର କର୍ତ୍ତବ୍ୟ । ବିଭିନ୍ନ କ୍ଷେତ୍ରରେ ଆମ
ତଥା କର୍ତ୍ତବ୍ୟକୁ ଭୁଲିଯିବା ଉଚିତ ନୁହେଁ ।

ସଂପାଦକ, 'ମାତୃଭୂମି'
ବାଳକୃଷ୍ଣ ମାର୍ଗ, କଟକ—୧



ଏକାମ୍ର କାନନରେ ଅନୁଷ୍ଠିତ ପୁଷ୍ପ ପ୍ରଦର୍ଶନୀରେ ରାଜ୍ୟ

ବ୍ୟୟ ଓ
ତି ହୁଏ.
ସଂବିଧାନ.
ଜ୍ଞାନ ବା
ପ୍ରଦର୍ଶନ
ର ଦାୟିତ୍ୱ

ପାଲ..





• ଆବିର୍ଭାବ •
୨୧ ନଭେମ୍ବର, ୧୮୯୯

ଡକ୍ଟର ହରେକୃଷ୍ଣ ମହତାବ

• ତିରୋଧାନ •
୨ ଜାନୁୟାରୀ, ୧୯୮୭

# ଡକ୍ଟର ମହତାବଙ୍କର ବିୟୋଗରେ ରାଜ୍ୟ ମନ୍ତ୍ରିପରିଷଦର ଶୋକ ପ୍ରସ୍ତାବ

ଓଡ଼ିଶାର ବରେଣ୍ୟ ନେତା ଡକ୍ଟର ହରେକୃଷ୍ଣ ମହତାବଙ୍କ ବିୟୋଗରେ ରାଜ୍ୟ ମନ୍ତ୍ରିପରିଷଦ ପକ୍ଷରୁ ଗଭୀର ଶୋକ ପ୍ରକାଶ କରାଯାଇଛି । ରାଜ୍ୟ ସଚିବାଳୟଠାରେ ଅନୁଷ୍ଠିତ ରାଜ୍ୟ ମନ୍ତ୍ରିପରିଷଦର ବୈଠକରେ ଗୃହୀତ ଏକ ଶୋକ ପ୍ରସ୍ତାବରେ ଡକ୍ଟର ମହତାବଙ୍କ ପ୍ରତି ଶ୍ରଦ୍ଧାଞ୍ଜଳି ଅର୍ପଣ କରାଯାଇଛି । ଶୋକ ପ୍ରସ୍ତାବର ପୂର୍ଣ୍ଣାଙ୍ଗ ପାଠ ନିମ୍ନରେ ଦିଆଗଲା :—

"ଓଡ଼ିଶାର ବରେଣ୍ୟ ନେତା, ଦେଶର ମହାନ୍ ସ୍ୱାଧୀନତା ସଂଗ୍ରାମୀ ଏବଂ ଯଶସ୍ୱୀ ସାହିତ୍ୟିକ, ପ୍ରଖ୍ୟାତ ଐତିହାସିକ ଓ ସ୍ୱନାମଧନ୍ୟ ସାମ୍ବାଦିକ ଡକ୍ଟର ହରେକୃଷ୍ଣ ମହତାବଙ୍କ ବିୟୋଗରେ ରାଜ୍ୟ ମନ୍ତ୍ରିପରିଷଦ ଗଭୀର ଶୋକ ପ୍ରକାଶ କରୁଛି । ଓଡ଼ିଶାର ରାଜନୈତିକ, ଅର୍ଥନୈତିକ, ସାମାଜିକ ଓ ସାଂସ୍କୃତିକ କ୍ଷେତ୍ରରେ ଡକ୍ଟର ମହତାବଙ୍କ ଦାନ ଅବିସ୍ମରଣୀୟ । ୧୯୨୧ ମସିହାରେ ଦେଶର ସ୍ୱାଧୀନତା ସଂଗ୍ରାମରେ ଝାସ ଦେଇ ସେ ଦେଶ ପାଇଁ ଚରମ ତ୍ୟାଗ ସ୍ୱୀକାର କରିଥିଲେ ଏବଂ ସ୍ୱାଧୀନତା ପରେ ଓଡ଼ିଶାର ମୁଖ୍ୟମନ୍ତ୍ରୀ ରୂପେ ରାଜ୍ୟର ନବ ନିର୍ମାଣର ଦାୟିତ୍ୱ ଗ୍ରହଣ କରିଥିଲେ । ଗଡ଼ଜାତ ମିଶ୍ରଣର ପ୍ରଧାନ ନାୟକ ରୂପେ ଚିରଦିନ ଓଡ଼ିଶାରେ ଓ ଭାରତରେ ସେ ସ୍ମରଣୀୟ ହୋଇ ରହିବେ । ସେ ଅନ୍ୟାନ୍ୟ ସାଧାରଣ ପ୍ରତିଭାର ଅଧିକାରୀ ଥିଲେ । କେନ୍ଦ୍ରମନ୍ତ୍ରୀ ଓ ରାଜ୍ୟପାଳ ରୂପେ ସେ ସମଗ୍ର ଦେଶରେ ପ୍ରତିଷ୍ଠା ଅର୍ଜ୍ଜନ କରିଥିଲେ । ବଳିଷ୍ଠ ଚିନ୍ତାନାୟକ, ସମାଜ ସଂସ୍କାରକ ଓ ସଂସ୍କୃତିର ଦିଗ୍‌ଦର୍ଶକ ରୂପେ ସେ ଓଡ଼ିଶାବାସୀଙ୍କୁ ଦୀର୍ଘକାଳ ଧରି ନେତୃତ୍ୱ ଦେଇ ଆସିଥିଲେ । ତାଙ୍କର ବିୟୋଗରେ ଓଡ଼ିଶା ତଥା ସମଗ୍ର ଦେଶ ଏକ ଶ୍ରେଷ୍ଠ ସନ୍ତାନଙ୍କୁ ହରାଇଲା । ରାଜ୍ୟ ମନ୍ତ୍ରିପରିଷଦର ଏହି ବୈଠକ ଡକ୍ଟର ମହତାବଙ୍କ ଶୋକସନ୍ତପ୍ତ ପରିବାରବର୍ଗଙ୍କ ପ୍ରତି ଗଭୀର ସମବେଦନା ଜ୍ଞାପନ କରୁଛି ଓ ସ୍ୱର୍ଗତ ଆତ୍ମାର ସଦ୍‌ଗତି କାମନା କରୁଛି ।"



ଚିରନିଦ୍ରାରେ
ଉତ୍କଳ କେଶରୀ







• ମୁଖ୍ୟମନ୍ତ୍ରୀଙ୍କୁ "କେନ୍ଦୁଝର ଜିଲ୍ଲା ଗେଜେଟିଅର" ଉପହାର ପ୍ରଦାନ ....

• ମୁଖ୍ୟମନ୍ତ୍ରୀଙ୍କ ସହ ଆଲୋଚନାରତ, ସୋଭିଏତ୍ କନସୁଲ୍ ଜେନେରାଲ୍- ମିଃ ଇଗ୍ୟାଟୋଭ୍..



• ଓଡ଼ିଶାର ଜେଗୋଟି ବିଶ୍ୱବିଦ୍ୟାଳୟର ଶ୍ରେଷ୍ଠ ଗ୍ରାଜୁଏଟ୍ ମାନଙ୍କପାଇଁ ଚେକ୍ ପ୍ରଦାନ..






* ସ୍ମରଣିକା ଉନ୍ମୋଚନ....





ନୌସେନା ପ୍ରଦର୍ଶନୀରେ ମୁଖ୍ୟମନ୍ତ୍ରୀ ...

ଶ୍ରୀ ରାମକୃଷ୍ଣ ମଠରେ
ଉଦ୍‌ବୋ







ପାରାଦୀପ ଠାରେ ଅନୁଷ୍ଠିତ "ନାଭାଲ୍ ଓ୍ୟାର ଥୋର-ଟିକ୍" : ରାଜ୍ୟପାଳ ଦମ୍ପତି →

"ଇନ୍ଦିରା ଗାନ୍ଧୀ ସ୍ମାରକୀ ବକ୍ତୃତା" ଉଦ୍‌ଘାଟନ ଉତ୍ସବରେ
ସୁପ୍ରିମ୍‌କୋର୍ଟର ମାନ୍ୟବର ବିଚାରପତି
ଶ୍ରୀ ରଙ୍ଗନାଥ ମିଶ୍ର . . .
↓





# ସଂଗ୍ରାମ ସରିନାହିଁ

ଶ୍ରୀ ଗିରିଶ ଚନ୍ଦ୍ର ସିଂହ

ପିଲାଦିନୁ ଗାନ୍ଧୀଙ୍କ କାମରେ ସାଙ୍ଗସାଥୀ ହୋଇ ଲାଗିଥିଲୁ । କିନ୍ତୁ ଜୋରସୋର କାମ କଲୁ ଢେଙ୍କାନାଳ ପ୍ରଜାମଣ୍ଡଳ ଗଢ଼ାହେବା ଦିନଠାରୁ । 'କୃଷକ', 'ସମାନ' ଆଦି ପତ୍ର ପତ୍ରିକା ବାଣ୍ଟିବା ଯେପରି ଦାୟିତ୍ୱପୂର୍ଣ୍ଣ, ସେପରି ବିପଦସଙ୍କୁଳ ଥିଲା । ଲୁଚି ଛପି ସେ କାମ କରୁଥାଏ । ୧୯୩୮ ସେପ୍ଟେମ୍ବର ୧୧ ତାରିଖ ସନ୍ଧ୍ୟାରେ ପ୍ରଜାମଣ୍ଡଳର ସଭାପତି, ସଂପାଦକ ଆଦି ଗିରଫ ହେଲା ମାତ୍ରେ ଶୋଭାଯାତ୍ରା ହରତାଳର ସଂଗଠନ କଲୁ । ୧୨ ତାରିଖ ଲଢ଼େଇରେ ପ୍ରଜାମଣ୍ଡଳ ଜିତିଲା, ରାଜ ସରକାର ହାରିଲେ । ମିଳାମିଶା କଥାଭାଷା ଚାଲୁ ଚାଲୁ ଆସିଲେ ଗୋରା ଫଉଜ । ବଡ଼ଭାଇ ସ୍ୱର୍ଗତଃ ହରିଶ୍ଚନ୍ଦ୍ର ସିଂହ ଆରେଷ୍ଟ ହେଲେ । ମୁଁ କଟକ ଚାଲିଗଲି । ସେଠି ପ୍ରତିଦିନ ଡାକଚେର ଟ୍ରେନରେ ଖବର ଦିଆନିଆ ଚାଲିଲା । ଢେଙ୍କାନାଳର ଅନେକ ପ୍ରଜାମଣ୍ଡଳ କର୍ମୀ କଟକ ସହରକୁ ଚାଲି ଆସିଥାନ୍ତି । କଟକ ସହରରେ ସଂଗଠନ କାମ କରୁଥାଉ । ସେ କାମର ଭାର ଅନ୍ୟମାନେ ନେଲାପରେ ମୁଁ ଲୁଚିକରି ଅନୁଗୁଳ, ନୂଆହତା ହିଜାଗଡ଼ କ୍ୟାଂପକୁ ଗଲି । ସେଠି ରାତି ଦିନ ଖଟି କାମ କରିବାକୁ ହେଉଥାଏ । ରଜା ଓ ବ୍ରିଟିଶ ସରକାର ଉଭୟଙ୍କୁ ଘଉଡ଼ାଇବୁ । ଦେଶକୁ ସ୍ୱାଧୀନ କରିବୁ । ଗଡ଼ଜାତ ମିଶାଇବୁ । ଏହା ଉଦ୍ଦେଶ୍ୟ ଥାଏ । ପ୍ରଜାମଣ୍ଡଳ ଆନ୍ଦୋଳନର ଏ ଜୁଆର ଭଟ୍ଟା ଭିତରେ ଆସିଗଲା ୧୯୪୨ ଭାରତ ଛାଡ଼ ଆନ୍ଦୋଳନ । ମୋ ଦ୍ୱିତୀୟ ବଡ଼ଭାଇ ସ୍ୱର୍ଗତଃ ରମେଶ ଚନ୍ଦ୍ର ସିଂହ ଜେଲ ଗଲେ । ମୁଁ ମଧ୍ୟ ଜେଲ ଗଲି । ସଭାପତି ହରମୋହନ ବାବୁ ଓ ମୁଁ ଜେଲ ଭିତରେ ଗୋଟିଏ ବଖରାରେ ରହିଲୁ । ଆମର ପ୍ରତିଦିନ କ୍ଲାସ ହୁଏ । ପୂର୍ବର ଇତିହାସ ଚର୍ଚ୍ଚା ହୁଏ । ଦେଶକୁ ସ୍ୱାଧୀନ କରି ଓଡ଼ିଶାରେ ଗଡ଼ଜାତକୁ ମିଶାଇବା ବିଷୟ ଚାଲେ । ଖବର ଆସିଗଲା ଜାପାନ ମାଡ଼ି ଆସୁଛି । ଓଡ଼ିଶା ରାଜଧାନୀ କଟକରୁ ଭୁବନେଶ୍ୱରକୁ ବ୍ରିଟିଶ୍ ସରକାର ନେଇଗଲେ । ଆମେ ସବୁ କଥା ହେଲୁ ଯଦି ନେତାଜୀ ଓଡ଼ିଶା ଆଡ଼କୁ ମୁହାଁନ୍ତି, ତା ହେଲେ ଏ ବ୍ରିଟିଶ୍ ସରକାର ଆମକୁ ବୋମା ପକାଇ ଜେଲ ଭିତରେ ମାରିଦେବ । ତେଣୁ ଜେଲରୁ ପଳାଇବା ବନ୍ଦୋବସ୍ତ କରୁଥାଉ । ସ୍ୱାଧୀନତା ପ୍ରାପ୍ତି ଆଉ ଗଡ଼ଜାତ ମିଶ୍ରଣ ପର୍ଯ୍ୟନ୍ତ ଆମର ଲଢ଼େଇ ଆମେ ଅବ୍ୟାହତ ରହିଥାଏ । ଦିନୁ ଦିନୁ ଆନ୍ଦୋଳନର ତେଜ ବଢ଼ୁଥାଏ । ପ୍ରକୃତରେ କହିବାକୁ ଗଲେ ୧୯୩୮ରୁ ୧୯୪୮ ପର୍ଯ୍ୟନ୍ତ ପ୍ରଜାମଣ୍ଡଳ ଯୁଗ ଥିଲା ।

ଦେଶ ସ୍ୱାଧୀନ ହେଲା । ଗଡ଼ଜାତ ମିଶ୍ରଣ ହେଲା । କିନ୍ତୁ ଆମ କାମ ସରିନାହିଁ । ଗ୍ରାମ ସଂଗଠନ, ଭୂଦାନ, ଗ୍ରାମଦାନ ପ୍ରଭୃତି କାମରେ ଲାଗିବାକୁ ହେଲା । କେବଳ ଗଠନମୂଳକ କାମ ନୁହେଁ ସ୍ୱାଧୀନତାକୁ ରକ୍ଷା କରିବା ଏବଂ ଦେଶର ଏକତାକୁ ସୁଦୃଢ଼ କରିବା ହେଲା ପ୍ରଧାନ କଥା ।

ମହାତ୍ମା ଗାନ୍ଧୀଙ୍କ ହତ୍ୟା ଅପେକ୍ଷା ଇନ୍ଦିରା ଗାନ୍ଧୀଙ୍କ ହତ୍ୟା ଯେପରି ଆମ ଦାୟିତ୍ୱକୁ ହଜାର ଗୁଣ ବଢ଼ାଇ ଦେଇଛି । ଆମ ଦେଶର ଏକତା ଆଉ ସ୍ୱାଧୀନତାକୁ ରକ୍ଷା କରିବାକୁ ହେବ । ସରକାରୀ, ବେସରକାରୀ, ଭେଦଭାବ ଛାଡ଼ି ସମସ୍ତଙ୍କୁ ବୁଝାଇସୁଝାଇ କ୍ରିୟାଶୀଳ କରିବାକୁ ହେବ । ପ୍ରଧାନମନ୍ତ୍ରୀ ରାଜୀବଗାନ୍ଧୀଙ୍କ ଆହ୍ୱାନ ସ୍ୱାଧୀନତା ସଂଗ୍ରାମୀମାନେ ନେତୃତ୍ୱ ଦିଅନ୍ତୁ ଓ ସମସ୍ତଙ୍କୁ ଅନୁପ୍ରାଣିତ କରନ୍ତୁ । ସେ ଆମକୁ ଯଥେଷ୍ଟ ସମ୍ମାନ ଦେଇଛନ୍ତି । ଦେଶ ରକ୍ଷା କରିବା ସଙ୍ଗେ ସଙ୍ଗେ ଆମକୁ ସାମାଜିକ ଉନ୍ନତିକରେ କାମ କରିବାକୁ ହେବ । ତେଣୁ ସବୁବେଳେ ସେହି ଚିନ୍ତା ଓ ଚର୍ଚ୍ଚା ଚାଲିଛି ।

ମାଫତ୍: ଡି. ଆଇ. ପି. ଆର ଓ, ଢେଙ୍କାନାଳ

# ଅପରାଧ ତଦନ୍ତରେ ଫରେନ୍‌ସିକ୍ ବିଜ୍ଞାନ

ଶ୍ରୀ ଫଣୀନ୍ଦ୍ର ଭୂଷଣ ଦାସ

ବିଂଶ ଶତାବ୍ଦୀର ଆରମ୍ଭରୁ ଅପରାଧ ତଦନ୍ତ କ୍ଷେତ୍ରରେ ବିଜ୍ଞାନର ପ୍ରୟୋଗ କ୍ରମଶଃ ବଢ଼ି ଚାଲିଛି । ଫରେନ୍‌ସିକ୍ ବିଜ୍ଞାନାଗାରର ପ୍ରଧାନ ଦାୟିତ୍ୱ ହେଲା ଅପରାଧ ଘଟିଥିବା ସ୍ଥାନରୁ କିମ୍ବା ଅଭିଯୁକ୍ତ ବ୍ୟକ୍ତି ନିକଟରୁ ସଂଗୃହୀତ ବିଭିନ୍ନ ବସ୍ତୁ ବା ଚିହ୍ନର ବୈଜ୍ଞାନିକ ପରୀକ୍ଷା କରି ଅପରାଧ ସମ୍ବନ୍ଧୀୟ ବିଭିନ୍ନ ପ୍ରାମାଣିକ ତଥ୍ୟ ପରିବେଷଣ କରିବା । ଆକାର, ପ୍ରକାର ଏବଂ ଗୁଣ ଭେଦରେ ଏହି ସବୁ ବସ୍ତୁ ବା ଚିହ୍ନ ବହୁବିଧ । ତେଣୁ ସେଗୁଡ଼ିକର ପରୀକ୍ଷାର ଗୁଣାତ୍ମକମାନ ଅକ୍ଷୁର୍ଣ୍ଣ ରଖିବା ପାଇଁ ବିଜ୍ଞାନାଗାରରେ ବିଭିନ୍ନ ବିଭାଗ ରହିଛି, ଯଥାଃ-(୧) ପଦାର୍ଥ ବିଜ୍ଞାନ ବିଭାଗ, (୨) ରାସାୟନିକ ପରୀକ୍ଷା ବିଭାଗ, (୩) ବିଷଦ୍ରବ୍ୟ ପରୀକ୍ଷା ବିଭାଗ (୪) ଜୀବବିଜ୍ଞାନ ପରୀକ୍ଷା ବିଭାଗ, (୫) ଆଗ୍ନେୟାସ୍ତ୍ର ଏବଂ ଆନୁଷଙ୍ଗିକ ଦ୍ରବ୍ୟର ପରୀକ୍ଷା ବିଭାଗ, (୬) ସେରୋଲୋଜି ବିଭାଗ ଏବଂ (୭) ମିଥ୍ୟା ଅନ୍ୱେଷଣ ବିଭାଗ । ପ୍ରତ୍ୟେକ ବିଭାଗରେ କାର୍ଯ୍ୟୋପଯୋଗୀ ଆଧୁନିକ ଯନ୍ତ୍ରପାତି ସ୍ୱତନ୍ତ୍ରଭାବେ ରହିଛି । ଏହିସବୁ ବିଭାଗର କାର୍ଯ୍ୟକାରିତାର ସଂକ୍ଷିପ୍ତ ବିବରଣୀ ନିମ୍ନରେ ପ୍ରଦତ୍ତ ହେଲା ।

## ପଦାର୍ଥ ବିଜ୍ଞାନ ବିଭାଗ

ସାଧାରଣତଃ ଘଟଣା ସ୍ଥଳରୁ ମିଳିଥିବା ବସ୍ତୁ ବା ଚିହ୍ନ ସହ ସନ୍ଦେହ କରାଯାଉଥିବା ବ୍ୟକ୍ତି ନିକଟରୁ ଜବତ ହୋଇଥିବା ବିଭିନ୍ନ ଦ୍ରବ୍ୟର ତୁଳନାତ୍ମକ ବିଶ୍ଳେଷଣ ପଦାର୍ଥ ବିଜ୍ଞାନ ବିଭାଗରେ କରାଯାଏ । ଏହା ମଧ୍ୟରେ ପେଣ୍ଟ, ଧାତବଦ୍ରବ୍ୟ ମୃତ୍ତିକା, ଧୂଳି, କାଚ, ପ୍ଲାଷ୍ଟିକ, ଅସ୍ତ୍ରାଘାତର ଚିହ୍ନ, ଚୋରି ହୋଇଥିବା ଟେଲିଫୋନ୍ ତାର, ଲୁଗାପଟା, କନା ପ୍ରଭୃତିର ସାଙ୍କେତିକ ପରୀକ୍ଷା ପ୍ରଧାନ । ଏତଦ୍ ବ୍ୟତୀତ କୌଣସି ଧାତବ ପଦାର୍ଥ ଉପରୁ ଘଷି ଲିଭାଇ ଦିଆଯାଇଥିବା ଲେଖା, ନାମ ବା ନମ୍ବରର ପୁନରୁଦ୍ଧାର କରିବା ଏହି ବିଭାଗର ଦାୟିତ୍ୱ । ଏହିସବୁ ପରୀକ୍ଷାକୁ ଅଭ୍ରାନ୍ତ ଓ ତ୍ୱରାନ୍ୱିତ କରିବା ପା ସାଧାରଣ ପରିମାପ ଯନ୍ତ୍ରଠାରୁ ଆରମ୍ଭକରି ବିଭିନ୍ନ ଅଣୁବୀକ୍ଷ ଯନ୍ତ୍ର, ସ୍ପେକ୍‌ଟ୍ରୋଗ୍ରାଫ୍, ଗିଡ୍ରାକ୍‌ଟ୍ରୋମିଟର, ଅଲଟ୍ରାଭାଓଲେ ଏବଂ ଇନ୍‌ଫ୍ରାରେଡ୍ ଆଲୋକ, ରଞ୍ଜନ ରଶ୍ମି, ଆଲୋକ ଚିତ୍ର ସୂକ୍ଷ୍ମ ଯନ୍ତ୍ରପାତି ପ୍ରଭୃତିର ସାହାଯ୍ୟ ନିଆଯାଏ । କୌଣସ ପଦାର୍ଥକୁ ସ୍ପେକ୍‌ଟ୍ରୋଗ୍ରାଫ୍ ସାହାଯ୍ୟରେ ବିଶ୍ଳେଷଣ କ ସେଥିରେ ଥିବା ମୌଳିକ ଉପାଦାନଗୁଡ଼ିକ ଜାଣିହୁଏ ତାହାକୁ ଭିତ୍ତିକରି ଦୁଇ ବା ତତୋଧିକ ଦ୍ରବ୍ୟ ମଧ୍ୟରେ ଥିବ ତାରତମ୍ୟ ବା ସାମଞ୍ଜସ୍ୟ ପ୍ରତିପାଦନ କରାଯାଇପାରେ ଅନେକ କ୍ଷେତ୍ରରେ ଘଟଣା ସ୍ଥଳରୁ ସଂଗୃହୀତ ଦ୍ରବ୍ୟର ପରିମାଣ ଏତେ କମ୍ ଥାଏ ଯେ ତାହା ରାସାୟନିକ ପରୀକ୍ଷା ପାଇଁ ଯଥେଷ୍ଟ ହୁଏ ନାହିଁ । ତେଣୁ ଏଗୁଡ଼ିକର ପରୀକ୍ଷା ପାଇଁ ସ୍ପେକ୍‌ଟ୍ରୋଗ୍ରାଫର ସାହାଯ୍ୟ ନିଆଯାଏ । ସେହିପରି ଇଉ. ଭି ଏବଂ ଆଇ. ଆର. ରଶ୍ମି ସାହାଯ୍ୟରେ ରକ୍ତ, ଓ ଶୁକ୍ରଦାଗ ପରିବର୍ତ୍ତିତ ହସ୍ତଲିପି, ଜାଲ୍‌ନୋଟ୍, ଜାଲ୍ ଦଲିଲ୍ ପ୍ରଭୃତିର ପରୀକ୍ଷା କରାଯାଏ ।

## ରାସାୟନିକ ପରୀକ୍ଷା ବିଭାଗ

ଉପଯୁକ୍ତ ରାସାୟନିକ ବିଶ୍ଳେଷଣ ପ୍ରଣାଳୀ ସାହାଯ୍ୟରେ କୌଣସି ପଦାର୍ଥରେ ଥିବା ବିଭିନ୍ନ ଦ୍ରବ୍ୟର ପରିମାଣ ନିର୍ଣ୍ଣୟ କରିବା, ଏହିବିଭାଗର ପ୍ରଧାନ କାର୍ଯ୍ୟ । ଏତଦ୍‌ବ୍ୟତୀତ ପେଣ୍ଟ, ବାର୍ଣ୍ଣିସ, ରାସାୟନିକ ଦ୍ରବ୍ୟ, ଅପମିଶ୍ରିତ ଦ୍ରବ୍ୟ, ଅଫିମ, ଗଞ୍ଜା, ମଦ୍ୟ ପ୍ରଭୃତିର ରାସାୟନିକ ବିଶ୍ଳେଷଣକରି ସେଗୁଡ଼ିକର ଗୁଣାତ୍ମକମାନ ସଂପର୍କରେ ମତାମତଦେବା ଏହି ବିଭାଗର ଦାୟିତ୍ୱ । ବିସ୍ଫୋରକ ଦ୍ରବ୍ୟ, ବୋମା ଏବଂ ତତ୍‌ସମ୍ବନ୍ଧୀୟ ପଦାର୍ଥର ପରୀକ୍ଷା ମଧ୍ୟ ଏହି ବିଭାଗର ଅନ୍ତର୍ଗତ । ଏହିସବୁ ପରୀକ୍ଷା ସୁରକ୍ଷିତରୂପେ ସଂପୂର୍ଣ୍ଣ କରିବା ପାଇଁ ରାସାୟନିକ, ସୂକ୍ଷ୍ମ

ରାସାୟନିକ ପ୍ରଣାଳୀ ଏବଂ ସଟ୍ ଟେଷ୍ଟ୍ ବହନ ବ୍ୟବହାର କରାଯାଏ । ଟି. ଏଲ୍. ସି., ଜି. ଏଲ୍. ସି. ସ୍ପେକ୍ଟୋଫଟୋମିଟର, କାଲୋରୀମିଟର ପ୍ରଭୃତି ଅତ୍ୟାଧୁନିକ ଉପକରଣର ମଧ୍ୟ ସାହାଯ୍ୟ ନିଆଯାଏ ।

## ବିଷଦ୍ରବ୍ୟ ପରୀକ୍ଷା ବିଭାଗ

ଆଜିକାଲି ବିଷ ପ୍ରୟୋଗ ଜନିତ ହତ୍ୟା ଅପରାଧ ଅତି ମାତ୍ରାରେ ବୃଦ୍ଧି ପାଇଛି । ମୂଷାମାରୀ, ଏଣ୍ଡ୍ରିନ୍, ଫଲିଡ଼ଲ୍, ଆର୍ସେନିକ୍ ପ୍ରଭୃତି ବିଷଦ୍ରବ୍ୟ ମଧ୍ୟ ସହଜରେ ମିଳିପାରୁଛି । ତେଣୁ ଏପରି ଘଟଣାରେ ମୃତବ୍ୟକ୍ତି କେଉଁ ପ୍ରକାର ଓ କେତେ ପରିମାଣ ବିଷ ଭକ୍ଷଣ କରିଥିଲେ, ତାହା ଜାଣିବା ଆବଶ୍ୟକ ହୁଏ । ବିଷ ଖାଇଥିବା ବ୍ୟକ୍ତିର ଶରୀର ଭିତର ଅଂଶ, ବାନ୍ତି, ପାକସ୍ଥଳୀ ଧୋଇ ତାର ରାସାୟନିକ ବିଶ୍ଳେଷଣ ଦ୍ୱାରା ହିଁ ଏହା ଜାଣି ହୁଏ । ଏହାଛଡ଼ା ବିଷ ମିଶ୍ରିତ ବୋଲି ସନ୍ଦେହ କରାଯାଉଥିବା ପଦାର୍ଥ, ଖାଦ୍ୟଦ୍ରବ୍ୟ ଇତ୍ୟାଦି ବିଷାକ୍ତ କି ନୁହେଁ ଜାଣିବାକୁ ହେଲେ ସେଗୁଡ଼ିକର ବୈଜ୍ଞାନିକ ପରୀକ୍ଷା ନିତାନ୍ତ ଦରକାର । ଏହିସବୁ ବିଶ୍ଳେଷଣାତ୍ମକ ପରୀକ୍ଷା ଏହି ବିଷ ବିଭାଗରେ କରାଯାଏ । ସାଧାରଣତଃ ରାସାୟନିକ ବିଶ୍ଳେଷଣ ପ୍ରଣାଳୀ ବ୍ୟତୀତ ଏଥିପାଇଁ ଟି. ଏଲ୍. ସି., ଜି. ଏଲ୍. ସି ପ୍ରଭୃତି ଅତ୍ୟାଧୁନିକ ଉପକରଣର ସାହାଯ୍ୟରେ ନାନା ପରୀକ୍ଷା କରାହୁଏ ।

## ଜୀବ ବିଜ୍ଞାନ ବିଭାଗ

ଏହି ବିଭାଗରେ ରକ୍ତ, ଶୁକ୍ର, ଅସ୍ଥି, ସ୍ୱେଦ, କେଶ, ଉଦ୍‌ଭିଦ ପଦାର୍ଥ, ତନ୍ତୁ ବା ଫାଇବର ପ୍ରଭୃତିର ପରୀକ୍ଷା କରାଯାଏ । ଏହିସବୁ ଦ୍ରବ୍ୟର ପରୀକ୍ଷା ସାଧାରଣତଃ ହତ୍ୟା, ନାରୀଧର୍ଷଣ, ଡ଼କାୟତି ପ୍ରଭୃତିର ଗୁରୁତର ଅପରାଧର ତଦନ୍ତ ପାଇଁ ବିଶେଷ ଆବଶ୍ୟକ ।

ହତ୍ୟାକାରୀ ସାଧାରଣତଃ ରକ୍ତର ଦାଗକୁ ନିଜର ଲୁଗାପଟାରୁ ଧୋଇ ସଫାକରିବାକୁ ଚେଷ୍ଟାକରେ । ଏହାଫଳରେ ରକ୍ତଦାଗ ଖାଲି ଆଖିକୁ ଦେଖାଯାଏ ନାହିଁ ସତ କିନ୍ତୁ ୟୁ. ଭି. ଆଲୋକ ସାହାଯ୍ୟରେ ଏବଂ ରାସାୟନିକ ପରୀକ୍ଷା ଦ୍ୱାରା ତାହା ସହଜରେ ଜଣାପଡ଼େ । ଅନେକ ସମୟରେ ମୃତ ବ୍ୟକ୍ତିର କେଶର କିଛି ଅଂଶ ହତ୍ୟାକାରୀର ଲୁଗାପଟା ବା ପକେଟ ମଧ୍ୟରେ ରହିଯାଏ । ଏହି କେଶ ସଂଗ୍ରହ କରି ମୃତ ବ୍ୟକ୍ତିର କେଶ ସହ ବୈଜ୍ଞାନିକ ଉପାୟରେ ତୁଳନା କଲେ ସେ ଦୁଇ ଅଂଶରେ ଥିବା ସାମଞ୍ଜସ୍ୟ ଜଣାପଡ଼େ । ଏହିସବୁ ପରୀକ୍ଷା ପାଇଁ ଅଣୁବୀକ୍ଷଣ ଯନ୍ତ୍ର, ମାଇକ୍ରୋଟୋମ୍ ସ୍ପେକ୍‌ଟ୍ରୋସ୍କୋପ୍ ପ୍ରଭୃତି ଯନ୍ତ୍ରପାତି ବ୍ୟବହୃତ ହୁଏ ।

## ଆଗ୍ନେୟାସ୍ତ୍ର ପରୀକ୍ଷା ବିଭାଗ

ଏହି ବିଭାଗର ମୁଖ୍ୟ ଦାୟିତ୍ୱ ହେଲା କୌଣସି ବୁଲେଟ୍ ବା କାର୍ଟ୍ରିଜ୍ ଖୋଳ କୌଣସି ନିର୍ଦ୍ଦିଷ୍ଟ ବନ୍ଧୁକରୁ ଫୁଟାଯାଇଛି କି ନା ତାହା ସାବ୍ୟସ୍ତ କରିବା । ଏହାଛଡ଼ା ବନ୍ଧୁକ କେତେ ଦୂରରୁ ଫୁଟାଯାଇଛି, କେଉଁ ଦିଗରୁ ଫୁଟାଯାଇଛି ପ୍ରଭୃତି ଆନୁସଙ୍ଗିକ କାର୍ଯ୍ୟ ମଧ୍ୟ ଏହାର ଅନ୍ତର୍ଗତ । ଏହି ବିଭାଗରେ କଂପାରିଜନ୍ ମାଇକ୍ରୋସ୍କୋପ୍, ବ୍ୟାରେଲ୍‌ସ୍କୋପ୍, ଇଲେକ୍‌ଟ୍ରୋନିକ୍ ଟାଇମ୍‌ର ପ୍ରଭୃତିର ବୈଜ୍ଞାନିକ ଉପକରଣ ସାହାଯ୍ୟରେ ସମସ୍ତ ପରୀକ୍ଷା କରାଯାଏ ।

## ସେରୋଲୋଜି ବିଭାଗ

ଏହି ବିଭାଗରେ ରକ୍ତ, ଧାତୁ, ଝାଳ, ଏବଂ ଶରୀରର ବିଭିନ୍ନ ବଡ଼ି ଫ୍ଲୁଇଡ୍‌ସ୍ ପରୀକ୍ଷା କରାଯାଇ ଚିହ୍ନଟ କରାଯାଏ । ପ୍ରଥମତଃ ରକ୍ତ ମଣିଷର କି ପଶୁର ବା ଅମେରୁଦଣ୍ଡୀ ପ୍ରାଣୀର ବୋଲି ସ୍ଥିର ହେଲା ପରେ ରକ୍ତରୁ ଲୋକର ଗ୍ରୁପ୍, ଲିଙ୍ଗ, ଧମନୀ କି ଶିରା, କେତେ ସମୟର ରକ୍ତ, ଜୀବନ୍ତ କି ମୃତାବସ୍ଥାର ରକ୍ତ ଓ ଶରୀରର କେଉଁ ଅଂଶର ରକ୍ତ ପରୀକ୍ଷା ଫଳରେ ଲୋକର ପରିଚୟ ମିଳିବା ସଙ୍ଗେ ସଙ୍ଗେ ମୃତ୍ୟୁର କାରଣ ମଧ୍ୟ ଜଣାପଡ଼ିଥାଏ ।

## ମିଥ୍ୟା ଅନ୍ୱେଷଣ ବିଭାଗ

ଅପରାଧ ତଦନ୍ତ ପାଇଁ ବହୁ ବିଭାଗର ସାହାଯ୍ୟ ନେବାକୁ ପଡ଼ିଥାଏ । ଆଜିର ବିଜ୍ଞାନ ଯୁଗରେ ନୂଆ ନୂଆ କଥା ଉଦ୍‌ଭାବନ ହେବାରେ ଲାଗିଛି । ଫଳରେ ଅପରାଧୀର ସନ୍ଧାନ ସହଜ ହୋଇ ପାରୁଛି । ଏହି ବିଭାଗର ଲାଇ ଡିଟେକ୍‌ଟର ମାଧ୍ୟମରେ ସନ୍ଦେହୀ ( କକୁ ବିଭିନ୍ନ ପ୍ରକାର ପ୍ରଶ୍ନକରି ଏବଂ ପଲିଗ୍ରାଫ୍ ଚାର୍ଟକୁ ବିଶ୍ଳେଷଣ କରି ମିଛ କହୁଥିବା ଘଟଣା ଜଣାଯାଏ । ଏହି ବିଭାଗ ଖୁବ୍ ନିକଟ ଭବିଷ୍ୟତରେ ଆରମ୍ଭ କରିବା ପାଇଁ ଚେଷ୍ଟା କରାଯାଇଛି ଏବଂ ଲାଇ ଡିଟେକ୍‌ଟର ମଧ୍ୟ କିଣା ସରିଛି ।

ଉପରୋକ୍ତ ଆଲୋଚନାରୁ ସହଜରେ ଜଣାଯାଏ ଯେ ଗତ ଅର୍ଦ୍ଧ ଶତାବ୍ଦୀ ମଧ୍ୟରେ ଫରେନ୍‌ସିକ୍ ବିଜ୍ଞାନର ଯଥେଷ୍ଟ ଅଗ୍ରଗତି ଘଟିଛି । ତଥାପି ଆମ ଦେଶରେ ଏହା ବିକାଶଶୀଳ ଅବସ୍ଥାରେ ରହିଛି । ତେଣୁ ଉଚ୍ଚକୋଟୀର ବୈଜ୍ଞାନିକଗଣ ଏହି ବିଜ୍ଞାନର ବିକାଶ ସାଧନ ନିମିତ୍ତ ବ୍ରତୀ ହେଲେ ସମାଜର ଅଶେଷ କଲ୍ୟାଣ ସାଧିତ ହେବ ।

ନିର୍ଦ୍ଦେଶକ,
ରାଜ୍ୟ ଅପରାଧ ଅନୁସନ୍ଧାନ ବିଜ୍ଞାନାଗାର, ଭୁବନେଶ୍ୱର ।

ଆମର ସବୁଠାରୁ ବଡ ବଡ ସଂପଦ ହେଲା ଜନଶକ୍ତି । ବ୍ୟକ୍ତି ଓ ପରିବାର ଯେପରି ସେମାନଙ୍କର ଅନ୍ତର୍ନିହିତ ଶକ୍ତିର ପୂର୍ଣ୍ଣ ଉପଲବ୍ଧି କରି ପାରିବେ ସେଥିପାଇଁ ଆମକୁ କାର୍ଯ୍ୟକରିବାକୁ ହେବ । ଏଥିଲାଗି ପରିବାର ନିୟୋଜନ, ପୁଷ୍ଟି କାର୍ଯ୍ୟକ୍ରମ, ମହିଳା ଓ ଶିଶୁ କଲ୍ୟାଣ, ରୋଗ ନିୟନ୍ତ୍ରଣ, ପ୍ରାଥମିକ ଓ ପ୍ରୌଢ଼ ଶିକ୍ଷାର ପ୍ରସାର, କ୍ରୀଡ଼ା ଓ ଉତ୍ତମ ଯୋଗାଯୋଗ କାର୍ଯ୍ୟକ୍ରମ ଉପରେ ଆମେ ଗୁରୁତ୍ୱ ଦେବୁ ।

**ଶ୍ରୀ ରାଜୀବ ଗାନ୍ଧୀ**



# ସଫଳ କାହାଣୀ

## ବେକାର ନୁହେଁ କେଦାର

ବଲାଙ୍ଗୀର ଜିଲ୍ଲା ଟିଟିଲାଗଡ଼ ଉପଖଣ୍ଡର ତୁରେକେଲା ବ୍ଲକ୍ କାର୍ଯ୍ୟାଳୟ ନିକଟରେ କେଦାର ପଣ୍ଡାଙ୍କର ଛୋଟ ପାନ ଦୋକାନଟିଏ । କେଦାର ପଣ୍ଡାଙ୍କ ସହିତ ତାଙ୍କ ସ୍ତ୍ରୀ, ଦୁଇଟି ପୁଅ, ଗୋଟିଏ ଝିଅ, ଏପରି ୫ ଜଣଙ୍କ ଭରଣପୋଷଣ ନିର୍ଭରକରେ । ଏଇ ଛୋଟ ପାନ ଦୋକାନଟି ଉପରେ ଗରିବ ପରିବାରରେ ଜାତ କେଦାରପଣ୍ଡା ବେକାରୀ ଜୀବନଯାପନ ସାଙ୍ଗକୁ, ଘୋର ମାନସିକ ଅଶାନ୍ତି ମଧ୍ୟରେ ବିଚରା ତ୍ରହଳ ବିକଳହୋଇ ୟାଡ଼େ ସେଆଡ଼େ ଘୁରିବୁଲୁଥିଲା । ଏମିତି ବୁଲୁବୁଲୁ ଜାଣିବାକୁ ପାଇଲାଯେ, ଗ୍ରାମାଞ୍ଚଳ ଗରିବ ଲୋକଙ୍କ ଅର୍ଥନୈତିକ ଥଇଥାନ ଯୋଜନାରେ ସରକାରୀ ସାହାଯ୍ୟ ମିଳୁଛି । ସ୍ୱଳ୍ପ ଶିକ୍ଷିତ ହେଲେହେଁ ବୁଝାବୁଝିକରି ଆର୍ଥିକ ସାହାଯ୍ୟପାଇଁ ବ୍ଲକ୍ କାର୍ଯ୍ୟାଳୟରେ ୧୯୮୧ରେ ଦରଖାସ୍ତ କଲା । ଭାଗ୍ୟକୁ ବ୍ୟାଙ୍କରୁ ଋଣ ପାଇ ମାତ୍ର ୬୦୦ଟଙ୍କାରେ ପାନଦୋକାନ ପାଇଁ ଛୋଟ କ୍ୟାବିନ୍‌ଟିଏ ପକାଇଲା । କ୍ରମେ ସେ ଟିକିଏ ଆଶ୍ୱସ୍ତି ଲାଭକଲା । ଦୈନିକ ଯାହା ବିକ୍ରୟକରେ ସେଥିରୁ କିଛି କିଛି ସଞ୍ଚୟକରି ସେ ଅଳ୍ପଦିନରେ ସବୁଯାକ ବ୍ୟାଙ୍କଋଣ ପରିଶୋଧ କରିଦେଲା । ବୟସ ହେବାପରେ ପିତାମାତାଙ୍କ କଥାରେ ସମ୍ମତିଦେଇ କେଦାର ବିବାହ କଲା । ତା'ର ବର୍ତ୍ତମାନ ୨ଟିପୁଅ ଓ ଗୋଟିଏ ଝିଅ । ପୁନର୍ବାର କେଦାର ଅଧିକ ଋଣ ପାଇବା ଆଶାରେ ବି.ଡ଼ି.ଓ.ଙ୍କୁ ଦରଖାସ୍ତକଲା । ଯୋଗକୁ ବ୍ୟାଙ୍କ ଋଣ ୧,୦୦୦ଟଙ୍କା ପାଇ ତାର ଛୋଟିଆ ବ୍ୟବସାୟଟିର ପରିସର ବୃଦ୍ଧି କଲା । ପାନଭଙ୍ଗା ସାଙ୍ଗକୁ ଗୁ' ବିକିବା ଆରମ୍ଭ କରିଦେଲା । ଏହିପରି ଭାବେ ତାର ଛୋଟିଆ ତେଲଲୁଣର ସଂସାରକୁ ସେ ଚଳାଇ ଆସୁଛି । ସରକାରଙ୍କ ସମନ୍ୱିତ ଗ୍ରାମ୍ୟ ଉନ୍ନୟନ ଯୋଜନାକୁ ତାର ବହୁତ ପ୍ରଶଂସା । ବର୍ତ୍ତମାନ ତାଙ୍କର ଆର୍ଥିକ ଅବସ୍ଥାରେ ସ୍ୱଚ୍ଛଳତା ଆସିଛି ଓ ସେ ସୁଖଖୁସିରେ ନିଜର ଗୁଜୁରାଣ ତୁଲାଇ ପାରୁଛନ୍ତି ।

## ଅମୃତଝରା ପରିବାର

ବଲାଙ୍ଗୀର ଜିଲ୍ଲାର ସଦରବ୍ଲକ୍ ମଧ୍ୟରେ ଝାଙ୍କରପାଲି ଗ୍ରାମପଞ୍ଚାୟତ ଅନ୍ତର୍ଗତ ହରିପାଲି ଏକ କ୍ଷୁଦ୍ର ଗ୍ରାମ ଅଟେ । ଏହି ଗ୍ରାମରେ ୬୦ବର୍ଷ ବୟସ ଶ୍ରୀ ଧୋବା ପଟେଲ ତାଙ୍କ ପରିବାରବର୍ଗଙ୍କ ସହ ବାସକରନ୍ତି । ତାଙ୍କର ୪ ପୁଅ ଏବଂ ବୋହୂ ଏବଂ ସେମାନଙ୍କର ସନ୍ତାନ ସନ୍ତତିଙ୍କୁ ନେଇ ପରିବାରରେ ୨୩ଜଣ କୁଟୁମ୍ବ । ଏକାନବର୍ତ୍ତୀ । ପୂର୍ବରୁ ଶକମୀ ଗ୍ରାମରେ ସେମାନେ ବାସ କରୁଥିଲେ । କିଛି ବର୍ଷ ପୂର୍ବେ ସେଠାକାର ଜମି ସେମାନଙ୍କର ପରିବାର ପୋଷଣରେ ଯଥେଷ୍ଟ ନ ହେବାରୁ ତାକୁ ବିକିକରି ଏହି ହରିପାଲି ଗ୍ରାମକୁ ସେମାନେ ସ୍ଥାନ ପରିବର୍ତ୍ତନ କରିଥିଲେ । ଏଠାରେ ୯ ଏକର ବାହାଲ ଜମିକୁ ମିଶାଇ ମାଲ ଓ ଅଁତଜମି ସହିତ ୨୭ ଏକର ଜମି ସେମାନେ ଏଠାରେ ହାସଲ କରିପାରିଲେ । ଉନ୍ନତ ଧରଣର ଲଙ୍ଗଳ ବ୍ୟବହାର କରି ଏବଂ କଠିନ ପରିଶ୍ରମ କରି ଜମିକୁ ସେମାନେ ଉଠିଆ କରିପାରିଲେ ଏବଂ ଧାନକୁ ମିଶାଇ ଆଖୁ, ପନିପରିବା, ଇତ୍ୟାଦି ଚାଷରେ ଲାଗିପଡ଼ିଲେ ।

୧୯୮୦-୮୧ ମସିହାରେ ୩ ଅଶ୍ୱଶକ୍ତି ବିଶିଷ୍ଟ ଇଲେକ୍‌ଟ୍ରିକ୍ ମୋଟର ବ୍ୟାଙ୍କରୁ ଋଣନେଇ କିଣିଲେ । ଗୋଟିଏ ସେଚକୂପ ନିଜର ଜମିରେ ସ୍ଥାପନ କରି ଚାଷରେ ମନଦେଲେ । ଏଥିପାଇଁ ତାଙ୍କୁ ୫,୦୦୦ଙ୍କା ଋଣ କରିବାକୁ ପଡ଼ିଥିଲା । ଖରିଫଧାନ ଫସଲ ସାଙ୍ଗକୁ ରବିଧାନ ଫସଲ ଏବଂ ଆଖୁଚାଷରେ ଅଧିକ ଅମଳକାରୀ ରାସାୟନିକ ସାର ବ୍ୟବହାର-କଲେ । ନିଜ ପରିବାରର ଆବଶ୍ୟକତାନେଇ ପୋଟଳ, ବାଇଗଣ, ପାଚିଲାଘଣ୍ଟା, ପିଆଜ, ଇତ୍ୟାଦି ଚାଷକରି ସମସ୍ତ ଋଣ ପରିଶୋଧ କରିପକାଇଲେ । ସବୁ ସମୟରେ ବିଜୁଳିଶକ୍ତି ନିଜର ମୋଟରକୁ ଯୋଗାଇବାର ଅସୁବିଧାକୁ ଲକ୍ଷ୍ୟକରି ୧୯୮୫ ମସିହାରେ ନିଜସ୍ୱ କରିବାପାଇଁ ଏକ ୩ ଅଶ୍ୱଶକ୍ତି ବିଶିଷ୍ଟ ଗୋଟିଏ ଡ଼ିଜେଲ ପାଣି ପମ୍ପ ୭,୦୦୦ଟଙ୍କାରେ ଋଣ ସୂତ୍ରରେ

ବ୍ଲକ୍ ଜରିଆରେ ସେ ଖରିଦ୍‌କଲେ । ଚଳିତବର୍ଷ ଆଖୁ ଫସଲକରି ପ୍ରାୟ ୬୦ ଟନ୍ ଆଖୁ ବିକ୍ରି କରିଛନ୍ତି ଏବଂ ୭୦ ମାଠିଆ ଗୁଡ଼ ମଧ୍ୟ ତିଆରି କରିଛନ୍ତି । ଉକ୍ତ ଜିନିସର ବିକ୍ରୟ ମୂଲ୍ୟରୁ ଉପରୋକ୍ତ ଋଣ ପରିଶୋଧ କରିବାପାଇଁ ମନସ୍ଥ କରିଛନ୍ତି । ନିଜ ଜମି ଉପରେମୁଣ୍ଡରେ ଥିବା ଏକ ନାଳର ପାଣିକୁ ଚହଲକରି ସେ ଜଳସେଚନର ସୁବିଧା କରିପାରିଛନ୍ତି ।

ଗତ ଖରିଫ୍‌ଋତୁରେ ନିଜ ଜମିରେ ଚାଷକରିଥିବା ଉନ୍ନତ କିସମର ଧାନ ୧୦୧୪, ୯୨, ୧୪୧ ଏବଂ ୧୩୦ ପ୍ରଭୃତି । ଚଳିତବର୍ଷ ଦେଢ଼ ଏକର ଜମିରେ କରିଥିବା ଆଖୁଚାଷର ଅଦାୟରୁ ପ୍ରାୟ ୧୪,୦୦୦ ଟଙ୍କା ପାଇବା ସେ ହିସାବ ଦିଅନ୍ତି । ପ୍ରତିବର୍ଷ ପ୍ରାୟ ଦେଢ଼ ଏକର ଜମିରେ ପୋଟଳ ଚାଷକରି ପ୍ରାୟ ୭,୦୦୦ଟଙ୍କା ଆଦାୟ କଲେ । ଟମାଟୋ, ବାଇଗଣ, ପିଆଜ, ଇତ୍ୟାଦି କେବଳ ନିଜ ଘରଖର୍ଚ୍ଚ ପାଇଁ କରିଥାନ୍ତି । ଚଳିତ ୧୯୮୫-୮୬ ରବି ଋତୁରେ ଦେଢ଼ ଏକର ଜମିରେ ପାରିବାତ ଧାନ ଚାଷ କରିଛନ୍ତି, ଆଉମଧ୍ୟ ଫସଲ ଭଲ ହୋଇଥିବା ଜଣାଯାଉଛି । ଘରେ ବଳଦ, ମଇଁଷି, ଛେଳି, ମେଣ୍ଢା, ଗାଈ, ଇତ୍ୟାଦି ଥିବାରୁ ମନରେ ତାଙ୍କର ସନ୍ତୋଷ ଏବଂ ଜାଳେଣି କାଠର ସମସ୍ୟାକୁ ହୃଦୟଙ୍ଗମକରି ସେ ଏକ ଗୋବରଗ୍ୟାସ ପ୍ଲାଣ୍ଟ ବସାଇବାକୁ ଇଚ୍ଛା ପ୍ରକାଶ କରିଛନ୍ତି ଏବଂ ଅଭିଜ୍ଞତା ହାସଲ କରିଥିବା କୌଣସ ଚାଷୀଙ୍କ ପରାମର୍ଶ ନେଉଛନ୍ତି । ତାଙ୍କର ସହଧର୍ମିଣୀ ମଧ୍ୟ ଜୀବିତା ଅଛନ୍ତି । ଚାରିପୁଅ ଯଥାକ୍ରମେ:—(୧) ରାଧେଶ୍ୟାମ ପଟେଲ, ଶିକ୍ଷା ୩ୟଶ୍ରେଣୀ, (୨) ଚୈତନ୍ୟ ପଟେଲ, ଶିକ୍ଷା ୪ର୍ଥଶ୍ରେଣୀପାସ୍, (୩) ବାଲେଶ୍ୱର ପଟେଲ, ୬ଷ୍ଠଶ୍ରେଣୀ ଏବଂ (୪) ଶଙ୍କର ପଟେଲ, ୨ୟ ଶ୍ରେଣୀ ଯୋଗ୍ୟତା । ସମସ୍ତେ ବିବାହିତ ଏବଂ ଏକାଠି ବାସ କରନ୍ତି । ସେମାନଙ୍କର ଉତ୍ତମ ବୁଝାମଣା ଥିବାରୁ ବାପାଙ୍କ ପରାମର୍ଶକ୍ରମେ ଚାଷରେ ମନୋନିବେଶକରି ଚାଷର ଉନ୍ନତି ସଙ୍ଗେ ସଙ୍ଗେ ପରିବାରର ଆର୍ଥିକ ବିକାଶ ଘଟାଇବାକୁ ଆରମ୍ଭକରିଛନ୍ତି ।

ବର୍ତ୍ତମାନ ଜଣେ ନାତି ନବୀନ ପଟେଲ, ୮ମ ଶ୍ରେଣୀରେ ଖୁଣ୍ଟପାଲି ହାଇସ୍କୁଲରେ ଏବଂ ଅନ୍ୟଜଣକ ବିପିନ ପଟେଲ, ୩ୟ ଶ୍ରେଣୀରେ, ଗାଁ ରେ ପଢ଼ନ୍ତି । ଏମାନଙ୍କୁ ଉଚ୍ଚଶିକ୍ଷାଦେଇ ପରିବାରର ଶିକ୍ଷାକ୍ଷେତ୍ରରେ ଆହୁରି ବିକାଶ ଘଟାଇବାର ଲକ୍ଷ୍ୟ ତାଙ୍କର ରହିଛି ।

ସରକାରୀ ଋଣ ଆବଶ୍ୟକ ପରିମାଣରେ ଆଣି ତାକୁ ଉପଯୁକ୍ତ ଭାବରେ ବିନିଯୋଗକରି ଋଣ ସୁଝିଲେ ସହଜ କିସ୍ତିରେ ସୁଝିହୁଏ ଏବଂ ପୁନର୍ବାର ଋଣ ପାଇବାରେ ସୁବିଧା ହୁଏ । ଆୟବୃଦ୍ଧି ସଙ୍ଗେ ସଙ୍ଗେ ପରିବାରର ସାମୂହିକ ବିକାଶ ଘଟିପାରିବା ସୁନିଶ୍ଚିତବୋଲି ତାଙ୍କ ମଧ୍ୟମପୁତ୍ର ଶ୍ରୀ ଚୈତନ୍ୟ ପଟେଲ ପ୍ରକାଶ କରନ୍ତି । ନିଜର ରହିବା ପାଇଁ ମଧ୍ୟ ନିଜେ ବଢ଼େଇମିସ୍ତ୍ରୀ ଭାବରେ କାମକରି ଏକ ଭଲ ପକ୍କା ଗୃହ ତିଆରି କରିପାରିଛନ୍ତି । ଏହି ଆଦର୍ଶ ଅନ୍ୟ ସମସ୍ତଙ୍କ ପାଇଁ ଶିକ୍ଷଣୀୟ ।

---

## ଏକତାର ଫୁଲ

ବଲାଙ୍ଗୀର ଜିଲ୍ଲାର ବଲାଙ୍ଗୀର ବ୍ଲକ୍ ଅନ୍ତର୍ଗତ ବ
ଗ୍ରାମପଞ୍ଚାୟତ ମଧ୍ୟରେ ଢାଇଁଚରଣ ଏକ କ୍ଷୁଦ୍ର
ଏହି ଗ୍ରାମର ବାସିନ୍ଦା ୪୦ବର୍ଷ ବୟସ୍କ ଦୁମାଲ ସଂ
ଯୁବକ ଶ୍ରୀ ବଳରାମ ପାତ୍ର । ତାଙ୍କର ବୃଦ୍ଧପିତା ଶ୍ରୀ ଯୁଧିଷ୍ଠି
ଅନ୍ୟ ତିନିଜଣ ଭାଇ, ନିଜର ସ୍ତ୍ରୀ ଏବଂ ୨ଟି ଝିଅ ଓ
ପୁଅକୁନେଇ ତାଙ୍କର ପରିବାର ଗଠିତ । ସେ ନିମ୍ନ
ଶିକ୍ଷା ପରେ ଗ୍ରାମରେ ଏହି ପରିବାରରେ ସ
ନିରାଡ଼ମ୍ବର ଜୀବନଯାପନ କରନ୍ତି । ତିନିଭାଇ ଓ
ନିଜର ପିତୃ ଅର୍ଜିତ ଜମିରେ କଷ୍ଟକରି ଫସଲ କରନ୍ତି
ଲଙ୍ଗଳ ସାହାଯ୍ୟରେ ଦୁଇଟି ହଳରେ ଦୁଇଭାଇ
ଜଣେଭାଇ ସେମାନଙ୍କୁ ସାହାଯ୍ୟ କରନ୍ତି ଏବଂ ଅ
ଗୋରୁଗାଈ, ଛେଳି ଇତ୍ୟାଦିର ରକ୍ଷଣାବେକ୍ଷଣ
ତିନିଭାଇଙ୍କ ମଧ୍ୟରେ ଏକତା ଏବଂ ସୁସଂପର୍କ ସେ
ସାମୂହିକ ଉନ୍ନତିର ପରିଚାୟକ ।

ସେହି ପରିବାରର ମୋଟ ୩୦ ଏକର ଜମିରୁ ବ
୧୨ ଏକର, ମାଲ ଜମି ୧୨ ଏକର ଏବଂ ଆଟ ଜମି ୬ ଏ
ଧାନଚାଷ ସହିତ ସେମାନେ ମୁଗ, ବିରି, ରାଶି, ଚିନ
ଚଣା ଏବଂ ପନିପରିବା ଚାଷ ଦିଗରେ ବାଇଗଣ,
ଟମାଟୋ, ଆଳୁ, ଶାଗ, ପିଆଜ ଇତ୍ୟାଦି ଚାଷ କ
କେବଳ ବର୍ଷା ଜଳରେ ନିର୍ଭରକରି ସେମାନେ ଚାଷକ
ପନିପରିବା ଚାଷପାଇଁ ନିଜର ବିଲରେ ଗୋଟିଏ
ଖନନକରି ଦେଶୀ ଟେଣ୍ଡା ସାହାଯ୍ୟରେ ପାଣି ମଡ଼ା
ଚଳିତ ଖରିଫ୍ ଋତୁରେ ସେମାନେ ଚାଷ କରିଥିବ
କିସମ ହେଉଛି—୯୨ ଝିଲ୍‌ଲି, ମହିପାଳ ଇତ୍ୟାଦି
ଜମିରେ ଏବଂ ସଂଜିବାକୋ, ହରିଶଙ୍କର ଇତ୍ୟାଦି ମା
ଆଟଜମିରେ :—ଚିନାବାଦାମ (ଡାକୁଅ ଚିନାବାଦାମ) ୨
ରାଶି (ଧଳାରାଶି), କିଛି ଅଂଶରେ, ମୁଗ ୧ ଏକରରେ,
୫୦ ଡେସିମିଲରେ ୨ଥର ଚାଷହୁଏ, ବାଇଗଣ ୫୦ ଡେ
(କଳାଗଛି ବାଇଗଣ) । ଏହାଛଡ଼ା ଧାନ ଅମଳପ
ଚଣା ୨ ଏକରରେ, ଆଳୁ ୧ ଏକରରେ, ପିଆଜ ୫୦
ଜମିରେ ଏବଂ ଖଡ଼ାଶାଗ ଇତ୍ୟାଦି ଚାଷ କରିଥ
ସବୁକୁ ଅମଳକରି ସେମାନେ ବଜାରରେ ବିକ୍ରିକରି
ଭାବରେ ରୋଜଗାର କରନ୍ତି ।

ନିଜ ଗୁହାଳରେ ୭ଟା ଗାଈ, ୨ଟା ବଳଦ,
ଏବଂ ୩୦ଗୋଟା ଛେଳି ପୋଷିଛନ୍ତି । ଏମାନଙ୍କର
ନେଇ ସେ ଗୋଟିଏ ଗୋବରଗ୍ୟାସ ପ୍ଲାଣ୍ଟ ବସାଇ
କରିଛନ୍ତି ଏବଂ ବୈଷୟିକ ପରାମର୍ଶ ନେଉଛ
ବିଜୁଳିଶକ୍ତି ଏପର୍ଯ୍ୟନ୍ତ ଯାଇନାହିଁ । ବିଜୁଳିଶକ୍ତି ଗ୍ରା
ନିଜ ବିଲରେ ଥିବା କୂପରେ ଏକ ବିଦ୍ୟୁତ୍‌ଚାଳି
ବସାଇ ଅଧିକଚାଷ କରିବାକୁ ସେମାନେ ଦୃଢ଼

ଛେଳିପାଳନ ଏକ ଲାଭଜନକ ଚାଷବୋଲି ସେମା
ଗତ ୩ବର୍ଷ ପୂର୍ବେ ସରକାରଙ୍କ ଅର୍ଥନୈତିକ ବିକାଶ
ଅନ୍ତର୍ଭୁକ୍ତହୋଇ ସେବା ସମବାୟ ସମିତି ଜରିଆରେ

ଋଣରେ ୫ଟି ଛେଳି ସେମାନେ ପାଇଥିଲେ । ଅତି ଯତ୍ନରେ ଛେଳି ପାଳନକରି ଆଜି ୩୦ଗୋଟି ଛେଳି କରିପାରିଛନ୍ତି । ଅବଶ୍ୟ ଏଯାବତ୍ ସେଥିରୁ ଗୋଟିଏହେଲେ ବିକ୍ରି ନକରି ୫୦୦ଟଙ୍କା ଋଣ ଶୁଝିସାରିଛନ୍ତି । ବଳକା ଟଙ୍କା ଏବର୍ଷ ଶୁଝିବାକୁ ସ୍ଥିର କରିଛନ୍ତି । ଛେଳିଗୁଡ଼ିକ ଏପରି ଭାବରେ ବୃଦ୍ଧି ହେବାର ଦେଖି ସେମାନେ ପୁନର୍ବାର ଏବର୍ଷ ଛେଳିଋଣ ଆଣି ସଂଖ୍ୟାକୁ ଦ୍ୱିଗୁଣିତ କରିବାକୁ ମନକରିଛନ୍ତି । ସେଗୁଡ଼ିକ ଆକାରରେ ବଡ଼ ଏବଂ ହୃଷ୍ଟପୁଷ୍ଟହୋଇ ଅଧିକା ମୂଲ୍ୟରେ ବିକ୍ରିଯୋଗ୍ୟହେଲେ ବିକ୍ରିକରିବା ଇଚ୍ଛା ସେମାନଙ୍କର ଅଛି । ଗରିବ ଲୋକେ ଏହି ଯୋଜନାରେ ବିଶେଷ ଉପକୃତ ହେଉଥିବା ସେମାନଙ୍କର ମତ ।

ନିଜର ଗୋଟିଏ ମାତ୍ର ପୁଅକୁ ୨ୟ ଶ୍ରେଣୀରେ ପଢ଼ାଉଛନ୍ତି । ପୁଅକୁ ଭବିଷ୍ୟତରେ ଉଚ୍ଚଶିକ୍ଷା ଦେବାପାଇଁ ତାଙ୍କର ଇଚ୍ଛା । ନିଜ ବିଲରୁ ଉତ୍ପାଦିତ ପନିପରିବାକୁ ଭାର ସାହାଯ୍ୟରେ କାନ୍ଧରେ ବୋହିଆଣି ପ୍ରାୟ ୧୧ କି: ମି: ରାସ୍ତା ବୁଲିବୁଲି ବଲାଙ୍ଗୀରରେ ବିକ୍ରି କରିବାରେ ତାଙ୍କର ଆନନ୍ଦ । ସେସବୁକୁ ବିକ୍ରିକରି ନିଜ ପରିବାରର ଆବଶ୍ୟକ ଜିନିଷ କିଣି ନିଅନ୍ତି । ଏବର୍ଷ ସରକାରଙ୍କ ତରଫରୁ ୧୫,୦୦୦ ଟଙ୍କାରେ ରାସ୍ତା ନିର୍ମାଣ ଏବଂ ୫୦,୦୦୦ ଟଙ୍କାରେ ସ୍କୁଲଘର ନିର୍ମାଣ ହେବାପାଇଁ ଟଙ୍କା ମଂଜୁରୀ ହୋଇଥିବା କଥା ଶ୍ରୀ ବଳରାମ ପାତ୍ର ପ୍ରକାଶ କରିଛନ୍ତି । ଏହା ସାଙ୍ଗକୁ ବିଜୁଳି ଆଲୁଅ ଯୋଗାଣ ହେଲେ ସେହିଭଳି ପଲ୍ଲୀରେ ହସ ଫୁଟି ଉଠିବ ।

—

## ରତନା ମନରେ ପୁଣି ନୂଆ ଆଶା

ପୂର୍ବେ ଅକର୍ମଣ୍ୟ ଓ ବିକଳାଙ୍ଗ ଲୋକମାନେ ସମାଜରେ ବଞ୍ଚି ରହିବାକୁ ନିରର୍ଥକ ମନେ କରୁଥିଲେ—ପିତା, ମାତା ଓ ପରିବାର ବର୍ଗଙ୍କ ନିକଟରେ ବୋଝ ବୋଲି ନିଜକୁ ମଣୁଥିଲେ । କିନ୍ତୁ ଜାତୀୟ ସରକାର ଅନ୍ଧ, କଣା, ଛୋଟା, କେମ୍ପା ପ୍ରଭୃତି ବିକଳାଙ୍ଗ ଲୋକମାନଙ୍କର ଜୀବିକା ନିର୍ବାହ ନିମନ୍ତେ ବର୍ତ୍ତମାନ ବିଭିନ୍ନ ଯୋଜନା କାର୍ଯ୍ୟକାରୀ କରୁଛନ୍ତି । ସେମାନଙ୍କୁ ଉପଯୁକ୍ତ ଶିକ୍ଷା ଦେବା ନିମନ୍ତେ ଆବଶ୍ୟକୀୟ ଶିକ୍ଷାନୁଷ୍ଠାନ ପ୍ରତିଷ୍ଠା କରାଯାଉଛି । ଚାକିରୀ, ଶିକ୍ଷା ଓ ଅନ୍ୟାନ୍ୟ କ୍ଷେତ୍ରରେ ସେମାନଙ୍କ ନିମନ୍ତେ ମଧ୍ୟ ସ୍ଥାନ ସଂରକ୍ଷିତ କରାଯାଉଛି । ତେଣୁ ବହୁତ ଅକର୍ମଣ୍ୟ ଓ ବିକଳାଙ୍ଗ ଲୋକ ସରକାରଙ୍କଠାରୁ ସାହାଯ୍ୟ ପାଇ ଏବଂ ନିଜର ବୁଦ୍ଧି ବିବେକ ଖଟାଇ ସମାଜରେ ପ୍ରତିଷ୍ଠା ଲାଭ କରିବାର ସୁଯୋଗ ପାଉଛନ୍ତି ।

୧୯୮୪ ମସିହା ଅକ୍ଟୋବର ମାସ ୨ ତାରିଖ ପବିତ୍ର ଗାନ୍ଧୀ ଜୟନ୍ତୀ ଦିବସଠାରୁ ଆମ ରାଜ୍ୟ ସରକାର ଅକର୍ମଣ୍ୟମାନଙ୍କ ନିମନ୍ତେ ମାସିକ ୪୦ ଟଙ୍କା ଲେଖାଁଏ ଭତ୍ତା ଦେବାକୁ ନିଷ୍ପତ୍ତି ନେଇଛନ୍ତି । ଏହି ଯୋଜନା ଅନୁସାରେ ତାଳଚେର ଉପଖଣ୍ଡ ଅନ୍ତର୍ଗତ ଦୁଇଟି ପଞ୍ଚାୟତ ସମିତି ଓ ଗୋଟିଏ ପୌର ପରିଷଦ ଅଞ୍ଚଳରେ ମୋଟ ୫୬ ଜଣ ବିକଳାଙ୍ଗ ବ୍ୟକ୍ତିଙ୍କୁ ଭତ୍ତା ପ୍ରଦାନ କରାଯାଇଛି । ଏମାନଙ୍କ ମଧ୍ୟରେ ତାଳଚେର ସହରସ୍ଥ ଥାନା ପଡ଼ାର ଶ୍ରୀ ରତନା ବେହେରା ଅନ୍ୟତମ ।

ରତନାର ବର୍ତ୍ତମାନ ବୟସ ୫୨ ବର୍ଷ । ପରିବାର କହିଲେ ସେ ଓ ତାର ସ୍ତ୍ରୀ । ପୂର୍ବରୁ ସେ ଦୁଇଟି ଝିଅଙ୍କର ବିବାହ କାର୍ଯ୍ୟ ସମ୍ପାଦନ କରିଛି ସାରିଛି । ରତନା ଜାତିରେ ଧୋବା । ଜମିବାଡ଼ି କିଛି ପ୍ରାୟ ନାହିଁ । ତଥାପି ନିଜ ବ୍ୟବସାୟ କରି ତାଳଚେର ସହରରେ ବେଶ୍ ଆନନ୍ଦରେ ଚଳି ଯାଉଥିଲା । ସମୟ ସବୁବେଳେ ସମାନ ଯାଏନା । ସୁଖ ପରେ ଦୁଃଖ ଲାଗି ରହିଥାଏ । ଦିନକର ଘଟଣା । ପାଞ୍ଚ ବର୍ଷ ତଳର କଥା । ରତନାର ପୋଷା ଶୁଆଟିଏ ଉଡ଼ିଯାଇ ଗୋଟାଏ ଉଚ୍ଚ ଗଛ ଡାଳରେ ବସିଥାଏ । ତାକୁ ଧରିବାକୁ ଯାଇ ରତନା ଦୁର୍ଭାଗ୍ୟବଶତଃ ଗଛ ଡାଳରୁ ଖସି ପଡ଼ିଲା । ସେ ମୃତ୍ୟୁ ମୁଖରୁ ରକ୍ଷା ପାଇଗଲା ସିନା ଚିରଦିନ ସକାଶେ ଅକର୍ମଣ୍ୟ ହୋଇଗଲା । ତାର ଦୈନନ୍ଦିନ ରୋଜଗାର ଉପରେ ସେ ଓ ତାର ସ୍ତ୍ରୀ ନିର୍ଭର କରୁଥିଲେ । ରତନା ପଙ୍ଗୁ ହୋଇଗଲା ପରେ ନିଜ ବ୍ୟବସାୟ କରି ପାରିଲା ନାହିଁ । ଆଜିକାଲି ବଜାରରେ ଦୁଇଜଣ ଲୋକ ଅନ୍ୟ ଉପରେ ଭରସା କରି କେତେ ଦିନ ଅବା ଚଳିବେ ? ରତନାର ଦୁରବସ୍ଥା ଦେଖି ଯେ ଯାହା ସାହାଯ୍ୟ ଦିଅନ୍ତି ତାହା ସମୁଦ୍ରକୁ ଶଂଖେ ପାଣି ସଦୃଶ । ସେ ସାହାଯ୍ୟ ମଧ୍ୟ ଅଧିକ ଦିନ ମିଳିଲା ନାହିଁ । ଶେଷକୁ ବହୁ କଷ୍ଟରେ ଜୀବନ ପ୍ରତିପୋଷଣ କରିବାକୁ ପଡ଼ିଲା । ଏପରିକି ଓଳିଏ ଖାଇଲେ ଆରଓଳି ଉପବାସ । ଦୀର୍ଘ ତିନି ବର୍ଷ ଧରି ଏପରି କଟିଲା ପରେ ରତନାର ଭାଗ୍ୟ ପରିବର୍ତ୍ତନ ହେଲା । ରାଜ୍ୟ ସରକାର ୧୯୮୪ ମସିହା ଅକ୍ଟୋବର ମାସ ୨ ତାରିଖଠାରୁ ବିକଳାଙ୍ଗମାନଙ୍କୁ ୪୦ ଟଙ୍କା ଲେଖାଁଏ ମାସିକ ଭତ୍ତା ଦେବାକୁ ସ୍ଥିର କଲେ । ତାଳଚେର ପୌର ପରିଷଦ ଅଧିକାରୀ ସେହି ଯୋଜନାରେ ଅନ୍ତର୍ଭୁକ୍ତ କରାଇ ପ୍ରତି ମାସରେ ୪୦ ଟଙ୍କା ଲେଖାଁ ଭତ୍ତା ପାଇବାର ବ୍ୟବସ୍ଥା କରାଇ ଦେଇଛନ୍ତି ଏବଂ ସେ ଏହି ଭତ୍ତା ଧାରାବାହିକ ଭାବେ ୧୯୮୪ ମସିହା ଅକ୍ଟୋବର ମାସଠାରୁ ପାଇ ଆସୁଛି । ଆଜିକାଲି ବଜାରରେ ଦୁଇଜଣ ଚଳିବା ସକାଶେ ଯଦିଓ ଏହା ଯଥେଷ୍ଟ ନୁହେଁ ତଥାପି ବଞ୍ଚିବା ସକାଶେ ବହୁତ ସାହାଯ୍ୟ କରୁଛି ବୋଲି ରତନା ପ୍ରକାଶ କରିଥିଲା । ସରକାରୀ ଭତ୍ତା ପାଇବା ପରେ ରତନାର ବଞ୍ଚି ରହିବାକୁ ମନୋବଳ ବୃଦ୍ଧି ପାଇଛି ଏବଂ ପୁଣି ଆଉଥରେ ଧରିବାକୁ ସାହାସ ବାନ୍ଧୁଛି ।

—

## ଦରେଇକେଲାର ଦେବେନ୍ଦ୍ର

ପାଲଲହଡ଼ା ଉପଖଣ୍ଡରେ 'ଦରେଇକେଲା' ନିଜିସ୍ୱ ଗ୍ରାମ ପଞ୍ଚାୟତର ଏକ ଗ୍ରାମ । ଏହି ଗ୍ରାମରେ ଦେବେନ୍ଦ୍ର ପିଙ୍ଗୁଆର ଜନ୍ମ । ପିତା ରସିକା ପିଙ୍ଗୁଆ ମୃତ । ଘରେ ସ୍ତ୍ରୀ, ତିନୋଟି ପୁଅ ଓ ଦୁଇଟି ଝିଅ ସମେତ ସାତ ପ୍ରାଣୀ କୁଟୁମ୍ବ । ଖଣ୍ଡ ଜମି ତାର ହାତେ ମଧ୍ୟ ନାହିଁ । ଏଣୁ ସଂସାର ଚଳାଇବା ଦେବେନ୍ଦ୍ର

ପକ୍ଷରେ ବହୁତ କଷ୍ଟ । ପର ଜମିରେ କାମ କରି ,ମୂଲ ଲାଗି ଯାହା ପାଏ, ସ୍ତ୍ରୀ, ପିଲାଙ୍କ ତୁଣ୍ଡରେ ଟୋପାଏ ଟୋପାଣୀ ଦିଏ । କେବେ କେବେ ମଧ୍ୟ ଉପବାସରେ ରହିବାକୁ ହୁଏ । ଶିକ୍ଷା ଦୀକ୍ଷା ତ ମୋଟରୁ ନାହିଁ । ତେଣୁ ନିଜ ପରିବାରର ଭରଣପୋଷଣ ନିମନ୍ତେ ସେ ସଦାସର୍ବଦା ଚିନ୍ତିତ ଥାଏ ।

ପରେ ସେ ଶୁଣିଲା ଯେ, ସରକାର ଦରିଦ୍ରମାନଙ୍କର ଦୁଃଖ ଦୂର ପାଇଁ ଅର୍ଥନୈତିକ ଉତ୍ଥାନ ଯୋଜନା କରୁଛନ୍ତି । ଏଥିପାଇଁ ତାଙ୍କ ଗାଁକୁ ପାଇକମାଳ ବ୍ଲକର କର୍ମଚାରୀ ଯାଇ ତାହାଠାରୁ ଦରଖାସ୍ତ ସଂଗ୍ରହ କଲେ ଏବଂ ଗୋଷ୍ଠୀ ଉନ୍ନୟନ ଅଧିକାରୀଙ୍କୁ ଦେଇ ତାକୁ ଛେଳି ପାଳିବା ଯୋଜନାରେ ଋଣ ମଞ୍ଜୁର ପାଇଁ ସୁପାରିଶ ମଧ୍ୟ କଲେ । ଫଳରେ ତାକୁ ପାଇକମାଳ ୟୁନାଇଟେଡ୍ କମରସିଆଲ ବ୍ୟାଙ୍କରୁ ୧୯୮୨-୮୩ ମସିହାରେ ଟ ୧,୫୦୦.୦୦ ଋଣ ମଞ୍ଜୁର ହେଲା । ସେଥିରେ ସେ ୧୦ଟି ମାଈ ଛେଳି ଓ ଗୋଟିଏ ବୋଦା ପାଇଲା । ସେଥିରୁ ପୁଣି ଟ ୧୩୫୦.୦୦ ଙ୍କା ଛାଡ଼ ପାଇଲା । ଅବଶିଷ୍ଟ ଟ ୧୫୦.୦୦ ସେ ଶୁଝି ଦେଲା ଓ ବଢ଼ିଥିବା ଛେଳି ବିକ୍ରି କରିଥିଲା ।

ଏବେ ସୁଦ୍ଧା ୧୭ଟି ଛେଳି ତା ପାଖରେ ଅଛି ଓ ସେ ଛେଳି ବିକ୍ରି କରି ଟ ୮୦୦.୦୦ ଙ୍କା ପାଇଛି ଏବଂ ୪ଟି ଛେଳି ମରିଯାଇଛନ୍ତି । ବିକ୍ରି ଲବ୍ଧ ଟଙ୍କାରେ ସେ ନିଜ କୁଡ଼ିଆଟିକୁ ଖପର ଘରରେ ପରିଣତ କରିଛି । ଗୋଟିଏ ବଳଦ ମଧ୍ୟ କିଣି ପାରିଛି ଓ ଅନ୍ୟ ଜମିରେ ଚାଷ କରି କିଛି ମଜୁରୀ ପାଉଛି । ଫଳରେ ସମସ୍ତଙ୍କ ତୁଣ୍ଡରେ ଦାନା ଘଣ୍ଟେ ଦେବା ସଙ୍ଗେ ସଙ୍ଗେ ପିଠିକୁ କନା ଖଣ୍ଡେ ମଧ୍ୟ ଯୋଗାଇ ପାରୁଛି । ତା'ର ପୁଅ, ଝିଅକୁ ଏବେ ସ୍କୁଲକୁ ପଠାଉଛି । ତାକୁ ପୁନଶ୍ଚ ଦ୍ୱିତୀୟ ଦଫାରେ ଋଣ ଦେବା ପାଇଁ ସେ ଦରଖାସ୍ତ ଆବେଦନ କରିଛି ।

---

## ମାଛ ବଦଳରେ ମାଛ

ବଲାଙ୍ଗୀର ଜିଲ୍ଲା ତୁରେକେଲା ବ୍ଲକର ମହଖଣ୍ଡ ଗ୍ରାମ ପଞ୍ଚାୟତ ଅନ୍ତର୍ଗତ "ନାଦୋଲ" ଗ୍ରାମର ଦରିଦ୍ରତମ ପରିବାରରେ ଶ୍ରୀ ବନବାସୀ ସୁନା ବାସ କରନ୍ତି । ପିତାଙ୍କନାମ ଶ୍ରୀ ସନାତ ସୁନା, ଜାତି ହରିଜନ, ବୟସ ୨୮ ବର୍ଷ ହେବ । ଜମିବାଡ଼ି କିଛି ନାହିଁ । କେବଳ ବାପାଙ୍କୁ ଜାଗିରୀ ଜମି ୫୦ ଡେସିମିଲ ମିଳିଛି । ପରିବାରରେ ବାପା ମା ୩ ଭାଇ, ୨ ଭଉଣୀ, ନିଜ ସ୍ତ୍ରୀ, ଏବଂ ମଝିଆଭାଇର ସ୍ତ୍ରୀ ବଡ଼ଭାଇରେ ଚଳନ୍ତି । ବଡ଼ଭାଇ ପୁଅ ଜନ୍ମ ହେବାପରେ ପରିବାର ନିୟନ୍ତ୍ରଣ ଯୋଜନାରେ ସାମିଲ ହୋଇଛନ୍ତି । ବାପମା ପ୍ରାୟ ୭୦ ବର୍ଷରେ ପଦାର୍ପଣ କରିଛନ୍ତି । ମଝିଆଭାଇ ପେଟପୋଷିବାକୁ ଶିକ୍ଷାଗ୍ରହଣ ଭାବରେ ରାୟପୁରକୁ ଚାଲିଯାଇଛନ୍ତି ଏବଂ ସାନଭାଇ ଅନ୍ୟପରେ ମୂଲିଆଭାବରେ ଖଟେ । ତିନିବର୍ଷ ପୂର୍ବେ ବାପାମା ଜଙ୍ଗଲରୁ ଜାଳେଣୀ କାଠ ସଂଗ୍ରହ କରି ବିକିକରି ଏବଂ ଅନ୍ୟ ଚାଷୀମାନଙ୍କ ବିଲରେ ମାଟି କାମ କରି, ଯାହା ଉପାର୍ଜନ କରୁଥିଲେ ତହିଁରେ କୁଟୁମ୍ବ ଭରିପୋଷଣ କରୁଥିଲେ । ତୃତୀୟ ଭାଇ ଅନ୍ୟ ଚାଷୀଙ୍କଠାରେ ହଳିଆ

ଏବଂ ନିଜେ ବନବାସୀ ଜଣେ ଠିକାଦାରଙ୍କ ପାଖରେ

କାମକରି କିମ୍ବା ତାଙ୍କ ଜମିରେ ଚାଷ

ଲାଗି ତାଙ୍କ ଜମିବାଡ଼ି ଦେଖାଶୁଣା କରୁଥିଲେ ।

ପ୍ରାୟ ୫୦ ଟଙ୍କାରୁ ୧୦୦ ଟଙ୍କା ମଧ୍ୟରେ ସେ ମଜୁ

ପରିବାରର ଭରଣପୋଷଣରେ ସାହାଯ୍ୟ କରୁଥିଲେ

ମେଟ୍ରିକୁଲେସନ ପର୍ଯ୍ୟନ୍ତ ପଢ଼ିଛନ୍ତି କିନ୍ତୁ ଆର୍ଥିକ

ଅବସ୍ଥାରେ ପରୀକ୍ଷା ଦେବାରୁ ବଞ୍ଚିତ ହୋଇଛନ୍ତି ।

ବାପାଙ୍କର ପରିବାର ପୋଷଣରେ ଘୋର ଅସୁବିଧା

ଶିକ୍ଷାର ସମାଧି ଘଟିଲା ଏବଂ କୌଣସି କାମଧନ୍ଦା

ସେ ମନସ୍ଥ କଲେ ।

୧୯୮୪ ମସିହାରେ ଇ: ଆର.: ଆର: ପି ଯୋ

ବେନିଫିସିଆରୀ ଭାବରେ ମତ୍ସ୍ୟସଂପ୍ରସାରଣ ଅ

ତାଙ୍କୁ ବାଛିଲେ । ତାଙ୍କୁ "ମହଖଣ୍ଡ" ଗ୍ରାମପ

ନାଦୋଳ ଗ୍ରାମର ବିଲେଇ ବନ୍ଧପୋଖରୀକୁ ମାଛ

ଲିଜ୍ ଦେବାରେ ବ୍ୟବସ୍ଥା କଲେ । ତାଙ୍କ ଦରଖାସ୍ତ ଅ

ମାଛ ଚାଷପାଇଁ ଗ୍ରାମ ପଞ୍ଚାୟତ ସ୍ୱୀକୃତି ପ୍ରଦାନ

ଉକ୍ତ ପୋଖରୀ ଆୟତନ ଏକ ଏକର

ପ୍ରଥମବର୍ଷ ପାଇଁ ତାଙ୍କୁ ସରକାରଙ୍କ ତରଫରୁ

ପଞ୍ଚାୟତ ଲିଜ୍ ଟଙ୍କା ଦିଆଗଲା ଏବଂ ୨୦୦୦

ଯାଆଁଳ ଯୋଗାଇ ଦିଆଗଲା । ଉନ୍ନତ ଯାଆଁଳ ଯଥା-

ରୋହି ଏବଂ ମିରିକାଳି ଯୋଗାଇ ଦେବା ସଙ୍ଗେ

ଖାଦ୍ୟସାର, ଗୋବର, ଚନ, କୁଣ୍ଡା, ପିଡ଼ିଆ, ସୁପର

ଇତ୍ୟାଦି ଯୋଗାଇ ଦିଆଗଲା । ଯାଆଁଳ ବୃଦ୍ଧିପ

ଜାଣିବା ସକାଶେ ଜାଲଦ୍ୱାରା ସରକାରୀ ସା

ନମୁନା ଜାଲ ମରାଗଲା । ଦଳଭାଙ୍ଗିବା ଫଳରେ

ଯାଆଁଳ ଏବୁଟିଆ ବିଚରଣକରି ଖାଦ୍ୟ ସଂଗ୍ରହ

ବଢ଼ିବାକୁ ଲାଗିଲେ । ଉକ୍ତ ପୋଖରୀ ହୁଡ଼ାରେ

ଚାଷ ପାଇଁ ଶିମ୍ବ, କଦ୍ରୁ, ଭେଣ୍ଡି, କଖାରୁ ମାଖନ, ପ

ଇତ୍ୟାଦି ବିହନ ଯୋଗାଇ ଦିଆଯାଇଥିଲା ।

ହୁଡ଼ା ଉପରେ ଗୋଟିଏ କୁଡ଼ିଆ ତିଆରି କରି ମାଛ

ସଙ୍ଗେ ସଙ୍ଗେ ପନିପରିବା ଚାଷ ମଧ୍ୟ ଦେଖିବା କାମ

ପ୍ରାୟ ୩ ମାସ ପରେ ଉକ୍ତ ପନିପରିବା ଚାଷରୁ

ହାରାହାରି ୧୦ ଟଙ୍କା ବିକ୍ରିଲବ୍ଧ ଟଙ୍କା ମିଳି

ଜୁଲାଇ ମାସରେ ଛାଡ଼ି ଥିବା ମାଛ ଯାଆଁଳକୁ

ମାସ ପରକୁ ପ୍ରାୟ ୫ ଥରରେ ୩ କ୍ୱିଣ୍ଟାଲ ମାଛ

କେ.ଜି, ପ୍ରତି ୮ ଟଙ୍କା ଦରରେ ବିକ୍ରି କରି ଟ୨

ପାରିଲା । ପନିପରିବାରୁ ନିଜପରର ଖର୍ଚ୍ଚ ବାବଦ

ଲାଭ ମିଳି ପାରିଲା । ଏପରି ଭାବରେ ପ୍ରଥମ ବର୍ଷ

୩୦୦୦ ହଜାର ଟଙ୍କା ଲାଭ ମିଳି ପାରିଲା ।

୧୯୮୫ ବର୍ଷରେ ବ୍ୟାଙ୍କରେ ଟ୬୦୦ ଜମା

ଚାଷ ପାଇଁ ଦ୍ୱିତୀୟ ବର୍ଷ ପଦକ୍ଷେପ ନେଲେ ।

ନିଜେ ଗ୍ରାମପଞ୍ଚାୟତକୁ ବାର୍ଷିକ ଲିଜ୍ ବାବଦ ଟଙ୍କ

ବୁଝାଇଲେ । ନିଜ ସଞ୍ଚୟରୁ ୩୦୦୦ ହଜାର ମା

କିଣି ପୋଖରୀରେ ଛାଡ଼ିଲେ । ଟ୨୦୦୧ । ଖର୍ଚ୍ଚକରି

ଚୁନ ୩ଛିଟିଣା, ପିଡ଼ିଆ ୧ବସ୍ତା, କୁଣ୍ଡା. ୫ ବସ୍ତା ଏବଂ

ଇତ୍ୟାଦି ଖାଦ୍ୟସାର ପକାଇଲେ । ନିଜେ ସଂଗ୍ର

ପନିପରିବା ବିହନରେ ହୁଡ଼ାରେ ପୁଣି ପନିପରିବା ଚାଷ କଲେ । ଏହି ବର୍ଷରେ ମୋଟ ଦୁଇ କ୍ୱିଣ୍ଟାଲ ୬୫ କେ: ଜି ମାଛ ପାଇଲେ ଏବଂ ମାଛ ହାରାହାରୀ ୧୫୦୦ ଗ୍ରାମ୍ ଓଜନରେ ବଢ଼ିଥିଲେ । ପ୍ରଥମ ବର୍ଷ ହାରାହାରି ଏକ କେ ଜି. ରୁ ଏକ କେ. ଜି. ୫୦୦ ଗ୍ରାମ୍ ଓଜନରେ ବଢ଼ିଥିଲେ । ଦ୍ୱିତୀୟ ବର୍ଷରେ ବିକ୍ରିଦାମରୁ ଟ୩୦୦୦ଙ୍କା ଏବଂ ପନିପରିବା ଚାଷରୁ ପ୍ରାୟ ୩୦୦ ଟଙ୍କା ପାଇଲେ । ବ୍ୟାଙ୍କରେ ୪୦୦ ଟଙ୍କା ଜମା ରଖି ଅବଶିଷ୍ଟ ତାଙ୍କ ପରିବାରର ବାର୍ଷିକ ଭରଣପୋଷଣରେ ଖର୍ଚ୍ଚ ହେଲା ।

୧୯୮୬ ରେ ସେ ୫୦୦୦ ମାଛ ଜାଆଁଳ ଉକ୍ତ ପୋଖରୀରେ ଚାଷ କରିଛନ୍ତି ଏବଂ ଭାକୁର, ରୋହି, ମିରିକାଳି, କାର୍ପିଓ ପ୍ରକାରର ଯାଆଁଳ ଅନ୍ତର୍ଭୁକ୍ତ । ଚାରିମାସ ମଧ୍ୟରେ ମାଛ ଜାଆଁଳ ପ୍ରାୟ ଅଧକେ. ଜି. ଓଜନର ବଢ଼ି ସାରିଛନ୍ତି । ପୂର୍ବବର୍ଷର ଲାଭରୁ ଏବର୍ଷ ଧାନଚାଷ ପାଇଁ ପ୍ରାୟ ୩ ଏକର ଚାଷ ଜମି ଅନ୍ୟଜଣେ ଚାଷୀଠାରୁ ବନ୍ଧା ସ୍ୱରୂପରେ ଚାଷ କରିଛନ୍ତି । ଧାନ ଅମଳ ପ୍ରାୟ ୧୫୦୦ ଟଙ୍କା ପାଇ ନିଜ ପରିବାରର ଚାଉଳ ଖର୍ଚ୍ଚ ତୁଲାଇବାର ସାମର୍ଥ୍ୟ ହାସଲ ହୋଇପାରିବ । ଏବର୍ଷ ପୂର୍ବ ବର୍ଷମାନଙ୍କ ଅପେକ୍ଷା ମାଛ ମଧ୍ୟ ଭଲ ବଢ଼ୁଥିବାର ସେ ଜାଣିପାରିଛନ୍ତି ଏବଂ ହାରାହାରି ୨ କେ: ଜି: ପର୍ଯ୍ୟନ୍ତ ବଢ଼ିବାର ଆଶା କରନ୍ତି । ମାଛ ବିକ୍ରୟରୁ ପ୍ରାୟ ୪୦୦ ଟଙ୍କା, ହୁଡ଼ାର ଛୋଟ ଚାଷରୁ ପ୍ରାୟ ୨୦୦ ଟଙ୍କା ଏବଂ ପନିପରିବାରୁ ନିଜର ଖର୍ଚ୍ଚ ବାଦ୍ ପ୍ରାୟ ୧୦୦ ଟଙ୍କା, ଶିମଚାଷର ପ୍ରାୟ ୩୦୦ ଟଙ୍କା ଲାଭ ପାଇବାର ଆଶା କରନ୍ତି । ଏବର୍ଷ ଭଲଚାଷ ହୋଇଥିବା ଦୃଷ୍ଟିରୁ ବିକ୍ରିଟଙ୍କାରୁ କିଛି ଚାଷଜମି କିଣିବାର ଆଶା ରଖିଛନ୍ତି । ସାନଭାଇକୁ ମଧ୍ୟ ବିବାହ କରିଦେବାର ଭରସା ରଖିଛନ୍ତି । ବର୍ଷକୁ ବର୍ଷ ତାଙ୍କର ଆୟ ବଢ଼ୁଥିବାର ପରିବାର ପ୍ରତି ପୋଷଣରେ ସେ ଆଶ୍ୱସ୍ତି ଲାଭ କରୁଛନ୍ତି । ଏହି ପୋଖରୀକୁ ୧୦ ବର୍ଷପାଇଁ ସେ ପଞ୍ଚାୟତରୁ ଲିଜ୍ ନେଇଛନ୍ତି । ନିଜେ ନିଜର ଗୋଟିଏ ପୋଖରୀ କରି ମାଛ ଚାଷରେ ଆହୁରି ଲାଭବାନ ହେବାପାଇଁ ଏବଂ ପରିବାରର ଆର୍ଥିକ ଅବସ୍ଥା ସୁଧାରିବାପାଇଁ ଉଜ୍ଜ୍ୱଳ ଆଶା ରଖିଛନ୍ତି । ମାଛବିକ୍ରି ଲାଭରୁ ପିତାଙ୍କର ପୂର୍ବର ଅର୍ଜିତ ଗୋଟିଏ ଗାଈରୁ ଆଉ ଗୋଟିଏ ଗାଈ, ଦୁଇଟି ଛେଳି, ହଳେ ବଳଦ ଏବଂ ଗୋଟିଏ ସାଇକେଲ କରିପାରିଛନ୍ତି । ବାପମା ଆଉ ଜଙ୍ଗଲକୁ ଜାଳେଡ଼ିକାଠ ସଂଗ୍ରହ ପାଇଁ ଯାଉନାହାଁନ୍ତି କିମ୍ବା ଅନ୍ୟ ଚାଷୀର ବିଲରେ ମାଟିକାମ କରୁନାହାନ୍ତି । ପୋଖରୀହୁଡ଼ା ଉପରେ ବସାବାନ୍ଧି ମାଛଚାଷ କରିବା ସାଙ୍ଗକୁ ପନିପରିବା ଚାଷରେ ସାହାଯ୍ୟ କରୁଛନ୍ତି । ଗୋଟିଏ ଆଦର୍ଶ ପରିବାରର ନମୁନା ସ୍ୱରୂପ କେହି କୌଣସି ପ୍ରକାର ବିଡ଼ି, ପାନ, ନିଶାସେବନ, ଭାଙ୍ଗ ଗଞ୍ଜେଇ ଇତ୍ୟାଦି ବ୍ୟବହାର କରନ୍ତି ନାହିଁ । ସରକାରଙ୍କ ଏହି ଏହି ଇ: ଆର: ଆର: ପି: ଯୋଜନା ମାଧ୍ୟମରେ ମାଛଚାଷ ଦ୍ୱାରା ବେଶ୍ ଉପକୃତ ହୋଇଥିବାରୁ ସେ ଆନନ୍ଦ ଲାଭ କରନ୍ତି ।



ପୁରୀ ଜିଲ୍ଲା ସମବାୟ ଦୁଗ୍ଧ ଉତ୍ପାଦକ ସଂଘ ଦ୍ୱାରା ଆୟୋଜିତ ପୁରସ୍କାର ବିତରଣ ଉତ୍ସବରେ ମାନ୍ୟବର ରାଜ୍ୟପାଳ ଓ ପଶୁପାଳନ ରାଷ୍ଟ୍ରମନ୍ତ୍ରୀ ଶ୍ରୀ ପଣ୍ଡା .




## ହୀରା ଶିଳ୍ପରେ ଭାରତ ଅଗ୍ରଣୀ

ଭାରତରେ ସଂପ୍ରତି ବିଶ୍ୱର ସର୍ବାଧିକ ସଂଖ୍ୟକ ହୀରା କାଟିବା କାରଖାନା ଅଛି । ଏହି ଶିଳ୍ପରେ ପାଞ୍ଚ ଲକ୍ଷରୁ ଊର୍ଦ୍ଧ୍ୱ କର୍ମଚାରୀ କାର୍ଯ୍ୟରତ ଅଛନ୍ତି । ଏମାନଙ୍କ ମଧ୍ୟରୁ ସାଢେ ତିନି ଲକ୍ଷ ହେଉଛନ୍ତି କାରିଗର । ପୃଥିବୀର ଅନ୍ୟ କେଉଁ ଦେଶରେ ଏତେ ଅଧିକ ସଂଖ୍ୟକ କର୍ମଚାରୀ ହୀରା ଶିଳ୍ପରେ କାର୍ଯ୍ୟ କରୁ ନାହାନ୍ତି ।

ହୀରା ପ୍ରଥମେ ଭାରତରେ ଆବିଷ୍କୃତ ହୋଇଥିଲା । ହୀରା କାଟି ତାକୁ ଏକ ଅଳଙ୍କାର ରୂପେ ବ୍ୟବହାର କରିବାରେ ମଧ୍ୟ ଭାରତ ପ୍ରଥମ ।

ଦେଶର ୨୨ ହଜାର ହୀରା କାରଖାନାରେ ପାରମ୍ପରିକ ପଦ୍ଧତିରେ କାର୍ଯ୍ୟ ଚାଲିଥିବାବେଳେ ୨୫ ଟି ବଡ ଧରଣ କାରଖାନାରେ ଅତ୍ୟାଧୁନିକ ଯନ୍ତ୍ରପାତି ସାହାଯ୍ୟରେ ଦକ୍ଷତାର ସହ କାର୍ଯ୍ୟ ପରିଚାଳିତ ହେଉଛି । ଗୁଜରାଟ, ମହାରାଷ୍ଟ୍ର, କେରଳ, କର୍ଣ୍ଣାଟକ ଓ ଗୋଆରେ ମୁଖ୍ୟତଃ ଏହି କାରଖାନାଗୁଡ଼ିକ ଅବସ୍ଥିତ । ଗୁଜରାଟର ସୁରାଟରେ ସର୍ବାଧିକ ସଂଖ୍ୟକ କାରଖାନା ଓ ହୀରା କାରିଗର ଥିବାରୁ ଏହାକୁ "ହୀରକ ନଗରୀ" ବୋଲି କୁହାଯାଏ ।

ଆମ ଦେଶରେ ୩୦ ନିୟୁତ କାରାଟ ହୀରାର ଚାହିଦା ଥିଲାବେଳେ ଏ କ୍ଷେତ୍ରରେ ଉତ୍ପାଦନ ମାତ୍ର ୨୦ ହଜାର କାରାଟ୍ । ସୁତରାଂ ଆମକୁ ଆମଦାନୀ ଉପରେ ନିର୍ଭର କରିବାକୁ ପଡ଼ିଥାଏ ।

ସୁରାଟସ୍ଥିତ ଭାରତୀୟ ହୀରକ ପ୍ରତିଷ୍ଠାନ ଓ ଜୟପୁରସ୍ଥିତ ମୂଲ୍ୟବାନ ପଥର ପରୀକ୍ଷଣ ବିଦ୍ୟାଳୟରେ ହୀରା କାଟିବାଲାମାନଙ୍କୁ ତାଲିମ ଦିଆଯାଉଛି । ଏକ କାରାଟ୍ ହୀରା କାଟି ପାଲିସ କରିବା ପାଇଁ ଆଣ୍ଟୱର୍ପରେ ୩୫ ଡଲାର ଓ ଯୁ.ଏସ୍.ଏ.ରେ ୬୦ ଡଲାର ପଡୁଥିଲା ବେଳେ ଭାରତରେ ମାତ୍ର ୦.୫ ଡଲାର ପଡୁଛି ।

୧୯୬୬-୬୭ ରେ ଭାରତରୁ ୨୨ କୋଟି ଟଙ୍କା
ମୂଲ୍ୟବାନ ପଥର ଓ ଅଳଙ୍କାର ରପ୍ତାନି ହୋଇଥିଲା
୧୯୮୫-୮୬ ରେ ତାହା ୬୭ ଗୁଣ ବୃଦ୍ଧି ପାଇ ୧୪୯୭
୭ ଲକ୍ଷ ଟଙ୍କାରେ ପହଞ୍ଚିଛି । ରପ୍ତାନୀ ମୂଲ୍ୟରୁ ଦେ
ମୋଟ ଆୟର ଏହା ହେଉଛି ଶତକଡା ୧୫ ଭାଗ । ୧୯୮୫
ସର୍ବାଧିକ ପରିମାଣର ମୂଲ୍ୟବାନ ପଥର ଓ ଅଳଙ୍କାର
ରିକାକୁ ରପ୍ତାନୀ ହୋଇଥିଲା । ଭାରତର ସମୁଦାୟ ର
ଏହା ଥିଲା ଶତକଡା ୪୬.୩୦ ଭାଗ । ସପ୍ତମ
କାଳରେ ମୋଟ ସାତ ହଜାର କୋଟି ଟଙ୍କାର ମୂଲ୍ୟବା
ଓ ଅଳଙ୍କାର ରପ୍ତାନୀ କରାଯିବାର ଲକ୍ଷ୍ୟ ଧାର୍ଯ୍ୟ ହେ
ଏହି ଲକ୍ଷ୍ୟ ପୂରଣ ହୋଇପାରିବ ବୋଲି ଆଶା କରାଯାଉ

## ସ୍ୱଳ୍ପ ସଞ୍ଚୟ କ୍ଷେତ୍ରରେ ଏକ ନୂତ
## ପରିକଳ୍ପନା

ନଭେମ୍ବର ମାସ ୧୯ ତାରିଖଠାରୁ ଭାରତ ସରକାର
ବିକାଶ ପତ୍ର' ନାମରେ ଆଉ ଏକ ଆକର୍ଷଣୀୟ ସ୍ୱଳ୍ପ
ପରିକଳ୍ପନା ପ୍ରଚଳନ କରିବା ପାଇଁ ନିଷ୍ପତ୍ତି ନେଇଛନ୍ତି
ଯୋଜନାରେ ଟଙ୍କା ଜମା କଲେ ୫ ବର୍ଷରେ ଦୁଇଗୁଣ ହୋ
ଏଠାରେ ଉଲ୍ଲେଖଯୋଗ୍ୟ ଯେ ପୂର୍ବରୁ ଜାତୀୟ ସଂଚୟ
ଫିକେଟ୍ ଷଷ୍ଠ ଇସୁରେ ଟଙ୍କା ଜମା କଲେ ୬ ବର୍ଷରେ
ହୋଇଯାଉଥିଲା ।

୫୦୦ ଟଙ୍କା ଏବଂ ୧୦୦୦ ଟଙ୍କା ମୂଲ୍ୟର 'ଇନ୍ଦିରା
ପତ୍ର' ମୁଖ୍ୟ ଡାକଘରରୁ ଉପରୋକ୍ତ ତାରିଖଠାରୁ
ମିଳୁଛି । ଯଥାକ୍ରମେ ୨୫୦ ଟଙ୍କା ଏବଂ ୫୦୦ ଟ
ଦେଇ ଉପରୋକ୍ତ ଦୁଇଟି ମୂଲ୍ୟର ବିକାଶ ପତ୍ର କିଣାଯା
୫ ବର୍ଷ ପରେ ଏହି ବିକାଶ ପତ୍ର ଡାକଘରେ ଭଙ୍ଗାଇଲେ
ମୂଲ୍ୟ ମିଳିବ ।

ଜମାକାରୀମାନଙ୍କର ସୁବିଧା ନିମନ୍ତେ 'ଇନ୍ଦିରା
ପତ୍ର' କିଣିବାର ଏବଂ ଭଙ୍ଗାଇବାର ଉପାୟ ସହଜ କର
ଏହି ବିକାଶ ପତ୍ର କିଣିବା ବେଳେ କୌଣସି ଦରଖାସ୍ତ

ହେବନାହିଁ । ସିଧାସଳଖ ଟଙ୍କା ଜମା ଦେଇ ଡାକଘର କାଉଣ୍ଟରରୁ ଏହା କିଣାଯାଇ ପାରିବ । ସେହିପରି ଭାବରେ ବିକାଶ ପତ୍ର ଫେରାଇ ଦେଲେ ପରିପକ୍ୱ ମୂଲ୍ୟ ମିଳିବ ।

ଏହି ବିକାଶ ପତ୍ର କିଣିବା ପାଇଁ କୌଣସି ସର୍ବୋଚ୍ଚ ସୀମା ଧାର୍ଯ୍ୟ କରାଯାଇ ନାହିଁ । ଏହା ସହଜରେ ଅନ୍ୟ ଜଣକୁ ହସ୍ତାନ୍ତର କରାଯାଇ ପାରିବ । ବିରୂପ କିମ୍ବା ନଷ୍ଟ ହୋଇଗଲେ ଡାକଘରୁ ଡୁପ୍ଲିକେଟ୍ ବିକାଶ ପତ୍ର ମିଳିବାର ବ୍ୟବସ୍ଥା କରାଯାଇଛି ।

ପ୍ରଚଳିତ ସମସ୍ତ ସ୍ୱଳ୍ପ ସଂଚୟ ଯୋଜନା ମଧ୍ୟରେ ଏହି ଯୋଜନାର ସୁଧର ହାର ସବୁଠାରୁ ଅଧିକ । ଏହା ବିଭିନ୍ନ ଶ୍ରେଣୀର ଜମାକାରୀମାନଙ୍କ ଦ୍ୱାରା ଆଦୃତ ହେବ ବୋଲି ଆଶା କରାଯାଏ । ବିଶେଷତଃ ଗ୍ରାମାଞ୍ଚଳ ଲୋକମାନଙ୍କ ପାଇଁ ଏହା ସୁବିଧାଜନକ, କାରଣ ଦୁଇଟିଯାକ ବିକାଶ ପତ୍ରର ମୂଲ୍ୟ ବିଶେଷ ଅଧିକ ନୁହେଁ । ପୁନଶ୍ଚ ଯେଉଁମାନେ ଆୟକର ଦେଉ ନାହାନ୍ତି, ସେମାନଙ୍କ ପାଇଁ ମଧ୍ୟ ଏହା ଲାଭଜନକ ।

## ଟ୍ୟାକ୍ସି ଭଡ଼ା ନିର୍ଦ୍ଧାରଣ

ଭୁବନେଶ୍ୱର, କଟକ, ରାଉରକେଲା ସହରରେ ଚାଲୁଥିବା ଟ୍ୟାକ୍ସିଗୁଡ଼ିକର ଭଡ଼ା ନିର୍ଦ୍ଧାରଣ କରି ରାଜ୍ୟ ସରକାର ଏକ ଆଦେଶନାମା ଜାରୀ କରିଛନ୍ତି । ଏହି ଆଦେଶ ୧୯୮୭ ଜାନୁଆରୀ ପହିଲା ତାରିଖରୁ କାର୍ଯ୍ୟକାରୀ ହେବ ।

ଟ୍ୟାକ୍ସିରେ ଏକ କିଲୋମିଟର ଯାତ୍ରା ପାଇଁ ଟ୩.୫୦ ପଇସା ଭଡ଼ା ଧାର୍ଯ୍ୟ କରାଯାଇଛି । ଏକ କିଲୋମିଟରରୁ ଅଧିକ ପ୍ରତି କିଲୋମିଟର ପିଛା ଟ୨.୨୦ ପଇସା ହିସାବରେ ଭଡ଼ା ଦେବାକୁ ହେବ । ଭଡ଼ାଟ୍ୟାକ୍ସିକୁ ଅଟକାଇ ରଖିଲେ ପ୍ରତି ଘଣ୍ଟା ପାଇଁ ୫ ଟଂକା, ଅଧ ଘଣ୍ଟାକୁ ଟ୨.୫୦ ପଇସା, ୧୫ ମିନିଟକୁ ଟ୧-୨୫ ପଇସା ଓ ପ୍ରତି ତିନି ମିନିଟ୍ ଓ ତହିଁରୁ କମ୍ ସମୟ ପାଇଁ ୨୫ ପଇସା ଭଡ଼ା ଦେବାକୁ ହେବ ।

ରାତ୍ରି ୧୦ ଘଣ୍ଟାରୁ ସକାଳ ୬ଘଣ୍ଟା ମଧ୍ୟରେ ଟ୍ୟାକ୍ସି ବ୍ୟବହାର କଲେ ଧାର୍ଯ୍ୟଭଡ଼ାର ଶତକଡ଼ା ୨୦ଭାଗ ଅଧିକ ଦେବାକୁ ପଡ଼ିବ ବୋଲି ଏଥିରେ ପ୍ରକାଶ ପାଇଛି ।

## ଫୁଲବାଣୀ ଜିଲ୍ଲାରେ ଜାତୀୟ ଗ୍ରାମ୍ୟ ନିଯୁକ୍ତି

ଜାତୀୟ ଗ୍ରାମ୍ୟ ନିଯୁକ୍ତି କାର୍ଯ୍ୟକ୍ରମରେ ବର୍ତ୍ତମାନ ପର୍ଯ୍ୟନ୍ତ ଫୁଲବାଣୀ ଜିଲ୍ଲାରେ ୨କୋଟି ୯୧ଲକ୍ଷ ୪୯ ହଜାର ଟଂକା ବିନିଯୋଗ କରାଯାଇଛି । ଏତଦ୍ୱାରା ମୋଟ ୨୭ ଲକ୍ଷ ୩୨ ହଜାର ଶ୍ରମ ଦିବସ ସୃଷ୍ଟି କରାଯାଇ ୪୧୫୮ ହେକ୍ଟର ଜମିରେ ସାମାଜିକ ବନୀକରଣ, ୮୩୬ କିଲୋମିଟର ଗ୍ରାମ୍ୟ ରାସ୍ତାର ଉନ୍ନତିବିଧାନ, ୬୩ଟିକୂପ ଖନନ, ସ୍ୱଳ୍ପ ବ୍ୟୟରେ ନିର୍ମିତ ୯୮ଟି ଛାତ୍ରାବାସ ନିର୍ମାଣ, ପଲ୍ଲୀବସ୍ତ ତିଆରିପାଇଁ ୯ଟି ଗୃହ ନିର୍ମାଣ, ୨୬୬ଟି ସ୍କୁଲ ଓ ଅନ୍ୟାନ୍ୟ ସର୍ବସାଧାରଣ ଗୃହ, ୧୮୩ଟି ଜଳ ଅମଳ ଓ କ୍ଷୁଦ୍ରଜଳସେଚନ ପାଇଁ ଜଳାଧାର ପ୍ରକଳ୍ପ ଓ ତଫସିଲଭୁକ୍ତ, ଜାତି ଉପଜାତି ତଥା ଗୋତିମୁକ୍ତ ଶ୍ରମିକଂକ ପାଇଁ ୫୦୦ଟି ଗୃହ ନିର୍ମାଣ କରାଯାଇଛି ।

ଷଷ୍ଠ ଯୋଜନା କାଳରେ ୧କୋଟି ୮୧ ଲକ୍ଷ ୨୩ହଜାର ଟଂକା ବ୍ୟୟ କରାଯାଇ ତଫସିଲଭୁକ୍ତଜାତି ଓ ଉପଜାତି ଲୋକଂକ ପାଇଁ ସୃଷ୍ଟି ହୋଇଥିବା ୧୪ ଲକ୍ଷ ୬୫ହଜାର ଶ୍ରମ-ଦିବସ ସମେତ ସର୍ବମୋଟ ୨୦ ଲକ୍ଷ ୩୪ ହଜାର ଶ୍ରମ ଦିବସ ସୃଷ୍ଟି କରାଯାଇଛି ।

ସପ୍ତମ ଯୋଜନା ଆରମ୍ଭରୁ ଅର୍ଥାତ୍ ୧୯୮୫-୮୬ରୁ ଅଦ୍ୟାବଧି ୧ କୋଟି ୧୦ ଲକ୍ଷ ୨୬ ହଜାର ଟଂକା ବ୍ୟୟରେ ୬ଲକ୍ଷ ୯୮ ହଜାର ଶ୍ରମ ଦିବସ ସୃଷ୍ଟି କରାଯାଇଛି ।

ଏଠାରେ ଉଲ୍ଲେଖନୀୟ ଯେ ଜାତୀୟ ଗ୍ରାମ୍ୟ ନିଯୁକ୍ତି କାର୍ଯ୍ୟକ୍ରମ ଷଷ୍ଠ ପଂଚବାର୍ଷିକ ଯୋଜନାରୁ ଏକ କେଂଦ୍ରୀୟ ଯୋଜନାରୂପେ ଫୁଲବାଣୀ ଜିଲ୍ଲାରେ କାର୍ଯ୍ୟକାରୀ ହେଉଛି ଏବଂ ଉଭୟେ କେଂଦ୍ର ଓ ରାଜ୍ୟ ସରକାର ସମାନ ପରିମାଣରେ ଅର୍ଥ ଏଥିରେ ବିନିଯୋଗ କରୁଛନ୍ତି । ଏହି କାର୍ଯ୍ୟକ୍ରମ କୃଷି-ଶ୍ରମିକ, ନାମମାତ୍ର କୃଷୀ ଓ ବିଶେଷ କରି ବର୍ଷର ତିରୋଟ ସମୟରେ ଗ୍ରାମାଂଚଳରେ ବାସକରୁଥିବା ଅଭାବଗ୍ରସ୍ତ ଲୋକମାନଂକୁ କାମଧଂଦା ଯୋଗାଇବା ସଂଗେ ସଂଗେ ଗ୍ରାମାଂଚଳରେ ସ୍ଥାୟୀ ସଂପତ୍ତି ସୃଷ୍ଟି କରାଯାଇଥାଏ । ଏହି କାର୍ଯ୍ୟକ୍ରମର ଅନ୍ୟୁନ ଶତକଡ଼ା ୧୦ ଭାଗ ଅର୍ଥ ପ୍ରତ୍ୟକ୍ଷଭାବେ ତଫସିଲଭୁକ୍ତ ଜାତି ଓ ଉପଜାତିମାନଂକ କଲ୍ୟାଣାର୍ଥେ ଯୋଜନାରେ ଉପଯୋଗ ହେବା ଲାଗି ଉଦ୍ଦିଷ୍ଟ ।

## କୋରାପୁଟ ଜିଲ୍ଲାରେ ଗୃହନିର୍ମାଣ

ବିଭିନ୍ନ ଆୟକାରୀ ବ୍ୟକ୍ତିଂକ ପାଇଁ କୋରାପୁଟ ଜିଲ୍ଲା ରାୟଗଡ଼ାର ଥୁମି ଗୁଡ଼ାଠାରେ ୧୦୦ଟି ଏବଂ ସୁନାବେଡ଼ାର କୋକିଠାରେ ୨୩୨ଟି ବାସଗୃହ ନିର୍ମାଣ କରିବାଲାଗି ରାଜ୍ୟ ଗୃହନିର୍ମାଣ ବୋର୍ଡ ପଦକ୍ଷେପ ନେଇଛନ୍ତି ।

ପ୍ରାୟ ୨୪ ଲକ୍ଷ ୧୫ ହଜାର ଟଂକା ବ୍ୟୟ ଅଟକଳରେ ଆରମ୍ଭ କରାଯାଇଥିବା ଥୁମି ଗୁଡ଼ା ଗୃହନିର୍ମାଣ ପ୍ରକଳ୍ପର ନିର୍ମାଣ କାର୍ଯ୍ୟ ତ୍ୱରାନ୍ୱିତ ହେଉଛି । ଏହି ପ୍ରକଳ୍ପ ଅନୁଯାୟୀ ଆର୍ଥିକ ଦୁର୍ବଳ ଶ୍ରେଣୀ ଲୋକଂକ ପାଇଁ ୮ଟି, ନିମ୍ନ ଆୟକାରୀଂକ ପାଇଁ ୬୨ଟି ଏବଂ ମଧ୍ୟମ ଆୟକାରୀଂକ ପାଇଁ ୩୦ଟି ଏହିପରି ସମୁଦାୟ ୧୦୦ଟି ବାସଗୃହ ନିର୍ମିତ ହେଉଛି । ଏଥିପାଇଁ "ହୁଡ୍‌କୋ" ୧୪ ଲକ୍ଷ ୪୦ ହଜାର ଟଂକା ଋଣ ମଂଜୁର କରିଛନ୍ତି ।

ସୁନାବେଡ଼ାର କୋକି ପ୍ରକଳ୍ପ ପାଇଁ ପୂର୍ବ ନିର୍ଦ୍ଧାରିତ ବ୍ୟୟ ଅଟକଳ (୫୪ ଲକ୍ଷ ୪୧ ହଜାର ଟଂକା)କୁ ଇତିମଧ୍ୟରେ ସଂଶୋଧନ କରାଯାଇ ୮୯ ଲକ୍ଷ ୮ ହଜାର ଟଂକାରେ ଧାର୍ଯ୍ୟ କରାଯାଇଛି । ଏହି ସଂଶୋଧିତ ଅଟକଳ ପ୍ରସ୍ତୁତ କରାଯାଇ ହୁଡ୍‌କୋ'ର ଅନୁମୋଦନ ପାଇଁ ପଠାଯାଇଛି ଏବଂ ଅନୁମୋଦନ

ଶୀଘ୍ର ମିଳିବ ବୋଲି ଆଶା କରାଯାଉଛି । ଏହି ପ୍ରକଳ୍ପର ନିର୍ମାଣ ବାବଦରେ ହୁଡ୍‌କୋ ୭୨ ଲକ୍ଷ ୧୩ ହଜାର ଟଙ୍କା ଋଣ ଯୋଗାଇ ଦେବାର ମଧ୍ୟ ସମ୍ଭାବନା ଅଛି । ଏହି ପ୍ରକଳ୍ପରେ ଆର୍ଥିକ ଦୁର୍ବଳ ଶ୍ରେଣୀ ଲୋକଙ୍କ ପାଇଁ ୧୮ଟି, ମଧ୍ୟମ ଆୟକାରୀଙ୍କ ପାଇଁ ୪୪ଟି ଏବଂ ନିମ୍ନ ଆୟକାରୀଙ୍କ ପାଇଁ ୧୭୦ଟି; ଏପରି ସମୁଦାୟ ୨୩୨ଟି ବାସଗୃହ ନିର୍ମିତ ହେବ ।

## ରାଜ୍ୟଶିଳ୍ପ ସୁରକ୍ଷା ପୁରସ୍କାର

୧୯୮୬ ନଭେମ୍ବର ୧୪ତାରିଖ ଦିନ କଟକସ୍ଥିତ ପାନ୍ଥନିବାସଠାରେ ଶ୍ରମବିଭାଗ ଦ୍ୱାରା ଆୟୋଜିତ ଏକ ଉତ୍ସବରେ ଶ୍ରମ ଓ ନିଯୋଜନ ରାଷ୍ଟ୍ରମନ୍ତ୍ରୀ ଶ୍ରୀ ଭୂପାଳଚନ୍ଦ୍ର ମହାପାତ୍ର ୧୯୮୫ ମସିହାର ରାଜ୍ୟ ଶିଳ୍ପ ସୁରକ୍ଷା ପୁରସ୍କାର ୨ଟି ଶିଳ୍ପାନୁଷ୍ଠାନର ପ୍ରତିନିଧିମାନଙ୍କୁ ବଣ୍ଟନ କରିଥିଲେ ।

୧୯୮୫ ବର୍ଷର ରାଜ୍ୟ ସୁରକ୍ଷା ପୁରସ୍କାର ନିମ୍ନତମ ଦୁର୍ଘଟଣା ହାର ପାଇଁ ରାୟଗଡ଼ା ଫେରୋ ମାଙ୍ଗାନିଜ ଫ୍ୟାକ୍ଟରୀ ପ୍ରଥମ ପୁରସ୍କାର ଭାବରେ ନଗଦ ୭୫୦ ଟଙ୍କା ଓ ଏକ ରନିଂ ସିଲ୍ଡ ପାଇଛନ୍ତି । ବାଲେଶ୍ୱରର ଏମାମୀ କାଗଜକଳ ଏବଂ ଭୁବନେଶ୍ୱରସ୍ଥିତ ବଏଲର ପାଇପିଂ ଓ ଆକ୍‌ସେସରିଜ୍ ଓ୍ୱର୍କସ ଯଥାକ୍ରମେ ୨ୟ ଓ ୩ୟ ପୁରସ୍କାର ପାଇଛନ୍ତି ।

ସର୍ବାଧିକ ଦୁର୍ଘଟଣା ରହିତ ସମୟପାଇଁ ମୟୂରଭଞ୍ଜର କୋଣାର୍କ ପେପର ଇଣ୍ଡଷ୍ଟ୍ରିଜ ଲିଃ, ଝାରସୁଗୁଡ଼ାର ସିରାମିକ୍ ଇଣ୍ଡଷ୍ଟ୍ରିଜ ଓ କେ. ଏସ୍. ପୋଟେରିଜ୍ ଯଥାକ୍ରମେ ୧ମ, ୨ୟ ଓ ୩ୟ ସ୍ଥାନ ଅଧିକାର କରି ଶ୍ରମମନ୍ତ୍ରୀଙ୍କଠାରୁ ପୁରସ୍କାର ଗ୍ରହଣ କରିଛନ୍ତି ।

ଦୁର୍ଘଟଣାର ନିମ୍ନତମ ତୀବ୍ରତା ପାଇଁ କଟକ ଇଣ୍ଡଷ୍ଟ୍ରିଆଲ ଇଷ୍ଟେଟ୍‌ର ମଣିଶ୍ରୀ ରିଫ୍ରାକ୍ଟରୀ ଓ ସେରାମିକ୍ ଇଣ୍ଡଷ୍ଟ୍ରିଜ ପ୍ରଥମ, ରାୟଗଡ଼ାର ଚିନିକଳ ୨ୟ ଏବଂ କଟକସ୍ଥିତ ଦର୍ଶିଓ ମ୍ୟାପ୍ ପବ୍ଲିକେସନ ସଂସ୍ଥା ୩ୟ ସ୍ଥାନ ଅଧିକାର କରି ପୁରସ୍କୃତ ହୋଇଛନ୍ତି ।

ଏହି ଉପଲକ୍ଷେ ଜାତୀୟ ସୁରକ୍ଷା ପରିଷଦର ଓଡ଼ିଶା ଶାଖା ପକ୍ଷରୁ ଆୟୋଜିତ ଶିଳ୍ପ ଶ୍ରମିକଙ୍କ ସୁରକ୍ଷା ଓ ସ୍ୱାସ୍ଥ୍ୟ ଆଲୋଚନାଚକ୍ରକୁ ଉଦ୍‌ଘାଟନ କରି ଶ୍ରମ ରାଷ୍ଟ୍ରମନ୍ତ୍ରୀ ଶ୍ରୀ ମହାପାତ୍ର କହିଲେ ଯେ ସ୍ୱାଧୀନତା ପରଠାରୁ ଦେଶ ତଥା ରାଜ୍ୟରେ ଦ୍ରୁତ ଶିଳ୍ପାୟନ ହେବା ସଙ୍ଗେ ସଙ୍ଗେ ଶିଳ୍ପରେ ବିଭିନ୍ନ ନୂଆ ନୂଆ ପ୍ରଣାଳୀ ପ୍ରଚଳନ ହୋଇଛି । ଦ୍ରୁତ ଶିଳ୍ପାୟନ ଦ୍ୱାରା ହିଁ ଅର୍ଥନୈତିକ ଅଗ୍ରଗତି ସମ୍ଭବ ବୋଲି ପ୍ରକାଶ କରି ଶ୍ରୀ ମହାପାତ୍ର କହିଲେ ଯେ ବିଭିନ୍ନ ଶିଳ୍ପରେ ବ୍ୟବହୃତ ସାମଗ୍ରୀ ଓ ପ୍ରଣାଳୀର ଅନ୍ତର୍ନିହିତ କୁପ୍ରଭାବଗୁଡ଼ିକ ଶ୍ରମିକମାନଙ୍କପ୍ରତି ଅନେକ ସମୟରେ ବିପଦ ଆଶଙ୍କା ଆଣିଦେଇ ଥାଏ । ତେଣୁ, ଅଧିକ ଉତ୍ପାଦନ ଯେତିକି ଧେୟ, ଶିଳ୍ପର ସୁରକ୍ଷା ସେତିକି ଶ୍ରେୟ । ଅତ୍ୟାଧୁନିକ ବୈଜ୍ଞାନିକ ପ୍ରଣାଳୀରେ ଉତ୍ପାଦନ ବୃଦ୍ଧି କରିବା ସଙ୍ଗେ ସଙ୍ଗେ ସୁରକ୍ଷା ପ୍ରତି ଯତ୍ନ ନିଆଯାଇ ଶ୍ରମିକ ସମାଜକୁ ଦୁର୍ଘଟଣା ଓ ବିଭିନ୍ନ ବୃତ୍ତିଗତ ରୋଗରୁ ମୁକ୍ତ ରଖିବାକୁ ଶ୍ରୀ ମହାପାତ୍ର ପରାମର୍ଶ ଦେଇଥିଲେ ।

କାରଖାନା କର୍ତ୍ତୃପକ୍ଷ କାରଖାନାରେ ସୁରକ୍ଷା ବ୍ୟବସ୍ଥା
ସଙ୍ଗେ ସଙ୍ଗେ ଶ୍ରମିକଙ୍କ ଅର୍ଥନୈତିକ ବ୍ୟବସ୍ଥା ଓ ସ୍ୱ
ଦୃଷ୍ଟି ଦେବା ଆବଶ୍ୟକ ବୋଲି ସେ କହିଥିଲେ । କା
ଯନ୍ତ୍ରପାତିକୁ ନିୟମିତଭାବେ ଯାଞ୍ଚ କରାଇବା ସଙ୍ଗେ
ଶ୍ରମିକଙ୍କ ସ୍ୱାସ୍ଥ୍ୟ ପରୀକ୍ଷା ଓ ପରିବେଶ ଉପରେ ଶ୍ରୀ
ବିଶେଷ ଗୁରୁତ୍ୱ ଆରୋପ କରିଥିଲେ ।

ଏହି ଉତ୍ସବରେ ସଭାପତିତ୍ୱ କରି ଶ୍ରମବିଭାଗ
ତଥା ଶାସନ ସଚିବ ଶ୍ରୀ ମଦନମୋହନ ମହାନ୍ତି କା
ସୁରକ୍ଷା ଉପରେ ବିଶେଷ ଗୁରୁତ୍ୱ ଆରୋପ କ
ଶିଳ୍ପ ନିରାପତ୍ତାର ପରିସର ବୃଦ୍ଧି ପାଉଛି ବୋଲି ଦର୍ଶାଇ
କାରଖାନାରେ କେତେକ ନିର୍ଦ୍ଧାରିତ ମାନରକ୍ଷାର
କରୁଛନ୍ତି ବୋଲି ସେ ପ୍ରକାଶ କରିଥିଲେ ।

ପ୍ରାରମ୍ଭରେ ଫ୍ୟାକ୍ଟ୍ରୀ ଓ ବୟଲର ମୁଖ୍ୟ
ଶ୍ରୀ ଏସ୍. ଏନ୍. ପତ୍ରୀ ଶିଳ୍ପ ସୁରକ୍ଷା ପୁରସ୍କାର
ବିବରଣୀ ପ୍ରଦାନ କରି କହିଲେ ଯେ ଶିଳ୍ପରେ ସୁରକ୍ଷା
ଅତ୍ୟନ୍ତ ବେଶୀ ଏବଂ ଏହାକୁ ନିୟନ୍ତ୍ରଣ କରିବାପାଇଁ
ଜ୍ଞାନ ସଂପନ୍ନ ବ୍ୟକ୍ତି ଓ ତାଲିମର ଆବଶ୍ୟକତା ରହି

## ବ୍ରାହ୍ମଣୀ ସେତୁ ଓ ସଂଯୋଗକାରୀ

ରାଉରକେଲା ଜାତୀୟ ରାଜ ପଥ ଡିଭିଜନ୍
୨୩ ନମ୍ବର ଜାତୀୟ ରାଜ ପଥରେ ବଣାଇଗଡ଼
ବ୍ରାହ୍ମଣୀ ନଦୀ ଉପରେ ଏକ ଉଚ୍ଚ ଓ ଦୀର୍ଘ ସେତୁର ନିର୍ମା
ତ୍ୱରାନ୍ୱିତ ହେଉଛି । ୩କୋଟି ୯୨ ଲକ୍ଷ ୫୦ ହଜାର
ବ୍ୟୟ ଅଟକଳରେ ୧୯୮୪ ମସିହା ଡିସେମ୍ବର
ଆରମ୍ଭ କରାଯାଇଥିବା ଏହି ସେତୁର ନିର୍ମାଣ ବାବଦ
ସରକାର ୩କୋଟି ୪୦ ଲକ୍ଷ ଟଙ୍କା ଦେଇଛନ୍ତି ଏ
ସେପ୍ଟେମ୍ବର ମାସ ସୁଦ୍ଧା ସର୍ବମୋଟ ୨କୋଟି ୩୧
ହଜାର ୬୪୫ଟଙ୍କା ବ୍ୟୟ କରାଯାଇଛି । ସେତୁ ନିର୍ମାଣ
୪୭ଭାଗ କାର୍ଯ୍ୟରତ ମଧ୍ୟରେ ସଂପୂର୍ଣ୍ଣ ହୋଇଗଲାଣି ଏ
ପରିବହନ ମନ୍ତ୍ରଣାଳୟ ଦ୍ୱାରା ନିର୍ଦ୍ଧାରିତ ସମୟସୀମା
ଏହାକୁ ସଂପୂର୍ଣ୍ଣ କରିବାକୁ ଉଦ୍ୟମ ହେଉଛି । ନିର୍ମା
ଅଗ୍ରଗତି ସଂପର୍କରେ ସ୍ୱତନ୍ତ୍ର ଦୃଷ୍ଟି ରଖିବାଲାଗି
ପ୍ରୋଜେକ୍ଟ ସବ୍‌ଡିଭିଜନ୍ କାର୍ଯ୍ୟାଳୟକୁ ବଣାଇଗ
କରାଯାଇଛି ।

ସେହିପରି ନିର୍ମାଣାଧୀନ ଏହି ସେତୁର
ସଂଯୋଗକାରୀ ରାସ୍ତାରେ ଏକ ହ୍ୟୁମ୍‌ପାଇପ୍ ସେତୁ
କାର୍ଯ୍ୟ ସମ୍ପୂର୍ଣ୍ଣ ପ୍ରାୟ । ଏ ବାବଦରେ ୧୧ ଲକ୍ଷ
୬୦୦ ଟଙ୍କା ବ୍ୟୟ ଅଟକଳ କରାଯାଇ ଗତ
ସୁଦ୍ଧା ୧୧ ଲକ୍ଷ ୪୧ ହଜାର ୮୩୯ ଟଙ୍କା ବ୍ୟୟ କରାଯା
ପରି ବ୍ରାହ୍ମଣୀ ସେତୁର ଦକ୍ଷିଣ ପାର୍ଶ୍ୱସ୍ଥ ସଂଯୋଗକାରୀ
ଅନ୍ୟ ଏକ ହ୍ୟୁମ୍‌ପାଇପ୍ ସେତୁ ନିର୍ମାଣ ଲାଗି ୧୨ ଲକ୍ଷ
୨୩୦ ଟଙ୍କା ବ୍ୟୟ ଅଟକଳ କରାଯାଇଥିଲା । ସେହି
୧୨ ଲକ୍ଷ ୯୩ ହଜାର ୪୫୨ ଟଙ୍କା ବ୍ୟୟ କରାଯା
ସେତୁର ମଧ୍ୟ ଶତକଡ଼ା ୮୦ ଭାଗ କାର୍ଯ୍ୟ ସଂପୂର୍ଣ୍ଣ ହେ

## ପରିବାର କଲ୍ୟାଣ କାର୍ଯ୍ୟକ୍ରମ

ଗତ ଅଗଷ୍ଟ ମାସରେ ପରିବାର କଲ୍ୟାଣ କାର୍ଯ୍ୟକ୍ରମ କ୍ଷେତ୍ରରେ ରାଜ୍ୟରେ ମୋଟ୍ ୧୦ ହଜାର ୧୦ ଜଣଙ୍କୁ ବନ୍ଧ୍ୟାକରଣ କରାଯାଇଛି । ୧୮ ଜଣ ବିବାହିତା ମହିଳା 'ଲୁପ୍' ଏବଂ ୧୪୪ଜଣ ବିବାହିତା ମହିଳା 'କପର-ଟି' ବ୍ୟବହାର କରିଛନ୍ତି । ବିବାହିତ ଲୋକଙ୍କୁ ୧୨ ଲକ୍ଷ ୧୬ ହଜାର ୭୪୫ 'ନିରୋଧ' ବଣ୍ଟନ କରାଯାଇଛି ।

ଉକ୍ତ ମାସରେ ପରିବାର କଲ୍ୟାଣ ସଂସ୍ଥା ତରଫରୁ ପରିବାର କଲ୍ୟାଣ ସଂପର୍କରେ ୧୬ଟି ଚଳଚ୍ଚିତ୍ର ପ୍ରଦର୍ଶନ, ୮୨ଟି ପରିବାର କଲ୍ୟାଣ ପ୍ରଶିକ୍ଷଣ ଶିବିର, ୬ଟି ପ୍ରଦର୍ଶନୀର ଆୟୋଜନ କରାଯାଇଥିଲା । ଏହା ବ୍ୟତୀତ ପରିବାର କଲ୍ୟାଣ ସଂପର୍କରେ ବିଭିନ୍ନ ସମ୍ବାଦପତ୍ର ଇତ୍ୟାଦିରେ ୧୮ଟି ବିଜ୍ଞାପନ ଦିଆଯାଇ ଏହି କାର୍ଯ୍ୟକ୍ରମର ବହୁଳ ପ୍ରଚାର କରାଯାଇଥିଲା ।

## କୁଟୀର ଶିଳ୍ପ ପ୍ରତିଷ୍ଠା

ଚଳିତ ଆର୍ଥିକ ବର୍ଷର ଗତ ଜୁଲାଇ ମାସ ସୁଦ୍ଧା ୨,୪୨୨ଟି କୁଟୀର ଶିଳ୍ପ ଓ ୬ଟି କ୍ଷୁଦ୍ର ଶିଳ୍ପ କଳାହାଣ୍ଡି ଜିଲ୍ଲାରେ ପ୍ରତିଷ୍ଠା କରାଯାଇ ସେସବୁ ମାଧ୍ୟମରେ ୩,୦୬୦ଜଣ ବ୍ୟକ୍ତିଙ୍କ ପାଇଁ ନିଯୁକ୍ତି ସୁଯୋଗ ସୃଷ୍ଟି କରାଯାଇ ପାରିଛି । କୁଟୀର ଶିଳ୍ପ ପାଇଁ ୪୧ ଲକ୍ଷ ୨୯ ହଜାର ଟଙ୍କା ଏବଂ କ୍ଷୁଦ୍ର ଶିଳ୍ପ ପାଇଁ ୧୩ ଲକ୍ଷ ୫୭ ହଜାର ଟଙ୍କା ବିନିଯୋଗ କରାଯାଇଛି ।

## କ୍ଷୁଦ୍ର ଓ କୁଟୀର ଶିଳ୍ପ ମାଧ୍ୟମରେ ନିଯୁକ୍ତି

ଚଳିତ ଆର୍ଥିକ ବର୍ଷର ପ୍ରଥମ ୪ ମାସ, ଅର୍ଥାତ୍ ଜୁଲାଇ ମାସ ସୁଦ୍ଧା ମୟୂରଭଞ୍ଜ ଜିଲ୍ଲାରେ ୮୯୧ଟି କୁଟୀର ଶିଳ୍ପ ଓ ୧୮ଟି କ୍ଷୁଦ୍ର ଶିଳ୍ପ ମାଧ୍ୟମରେ ୧୯୦୯ ଜଣ ବ୍ୟକ୍ତିଙ୍କୁ କାମ ଯୋଗାଇ ଦିଆଯାଇପାରିଛି । ଚଳିତ ଆର୍ଥିକ ବର୍ଷରେ ଏହି ଜିଲ୍ଲାରେ ୧୯୦ଟି କ୍ଷୁଦ୍ର ଶିଳ୍ପ ଓ ୪୮୮୦ଟି କୁଟୀର ଶିଳ୍ପ ପ୍ରତିଷ୍ଠା କରାଯିବାର ଲକ୍ଷ୍ୟ ରଖାଯାଇଛି । ବର୍ଷର ପ୍ରଥମାର୍ଦ୍ଧ ଅର୍ଥାତ୍ ବର୍ଷାଋତୁ ପରେ ପରେ ସାଧାରଣତଃ ଅଧିକ ସଂଖ୍ୟାରେ କ୍ଷୁଦ୍ର ଓ କୁଟୀର ଶିଳ୍ପ ପ୍ରତିଷ୍ଠା କରିବା ପାଇଁ ସୁବିଧାଜନକ ହୋଇଥିବା ଦୃଷ୍ଟିରୁ ଚଳିତ ବର୍ଷର ଲକ୍ଷ୍ୟ ହାସଲ ହୋଇଯିବ ବୋଲି ଆଶା କରାଯାଏ । ଗତ ଜୁଲାଇ ମାସ ସୁଦ୍ଧା ପ୍ରତିଷ୍ଠିତ ହୋଇଥିବା କ୍ଷୁଦ୍ରଶିଳ୍ପ ଓ କୁଟୀର ଶିଳ୍ପ ପାଇଁ ଯଥାକ୍ରମେ ୧୬ ଲକ୍ଷ ୮ ହଜାର ଟଙ୍କା ଓ ୫୫ ଲକ୍ଷ ୪୮ ହଜାର ଟଙ୍କା ବିନିଯୋଗ କରାଯାଇଛି ।

## ସେତୁ ନିର୍ମାଣ ଓ ରାସ୍ତା ଉନ୍ନୟନ

ସୁନ୍ଦରଗଡ଼ ପ୍ରୋଜେକ୍ଟ ଡିଭିଜନ୍ ଅନ୍ତର୍ଗତ କେତେକ ଗ୍ରାମ୍ୟ ରାସ୍ତାର ଉନ୍ନୟନ କରିବା ଏବଂ ୭ଟି ସେତୁ, ୨୧ଟି କଲଭର୍ଟ ଓ ଗୋଟିଏ କଜ୍‌ୱେ ନିର୍ମାଣ କରିବା ଲାଗି ଯୋଜନା ସମ୍ବଳରୁ ସମୁଦାୟ ୧ କୋଟି ୨୦ ଲକ୍ଷ ୪୫ ହଜାର ୮୦୦ ଟଙ୍କା ବ୍ୟୟ ଅଟକଳ କରାଯାଇଥିଲା ।

ଏଥିପାଇଁ ଯୋଗାଇ ଦିଆଯାଇଥିବା ଅର୍ଥ ମଧ୍ୟରୁ ୪ଟି ସେତୁର ନିର୍ମାଣ ଏବଂ ୩ଟି ରାସ୍ତାର ଉନ୍ନୟନ ଇତ୍ୟାଦି ବାବଦରେ ଗତ ମାର୍ଚ୍ଚ ମାସ ଶେଷ ସୁଦ୍ଧା ୨୬ ଲକ୍ଷ ୫୩ ହଜାର ୩୫୦ ଟଙ୍କା ବ୍ୟୟ କରାଯାଇଥିଲା । ଏହାକୁ ମିଶାଇ ଗତ ସେପ୍ଟେମ୍ବର ମାସ ସୁଦ୍ଧା ୫ଟି ଛୋଟ ବଡ଼ ସେତୁ ଓ ୧୭ଟି କଲଭର୍ଟ ନିର୍ମାଣ ଏବଂ ୩ଟି ରାସ୍ତାର ଉନ୍ନୟନ ବାବଦରେ ସର୍ବମୋଟ ୩୦ ଲକ୍ଷ ୯୦ ହଜାର ୨୧୧ ଟଙ୍କା ବିନିଯୋଗ କରାଯାଇଛି ବୋଲି ଏକ ସମୀକ୍ଷାରୁ ପ୍ରକାଶ । ସଂପ୍ରତି ପୂର୍ତ୍ତ ରାଷ୍ଟ୍ରମନ୍ତ୍ରୀ ମହମ୍ମଦ ମୁଜାଫର୍ ହୋସେନ୍ ଖାଁ ସୁନ୍ଦରଗଡ଼ ଗସ୍ତରେ ଯାଇଥିବା ଅବସରରେ ଏହି ଡ଼ିଭିଜନ୍‌ର କାର୍ଯ୍ୟାବଳୀ ସଂପର୍କରେ ସମୀକ୍ଷା କରିଥିଲେ ।

ନିର୍ମିତ ହୋଇଥିବା ଏହି ୫ଟି ସେତୁ ହେଲା :—ରଂଗମାଟି—ବଣାଇ ରାସ୍ତାରେ ବଣାଇକେଲା ନାଳସେତୁ, ଏହି ରାସ୍ତାରେ କଣ୍ଡାପାଲି ନାଳସେତୁ, ବଂଧପାଲୀ—କିଣ୍ଡିରିକେଲା ରାସ୍ତାରେ ପତନପୁର ନାଳସେତୁ, ସବ୍‌ଡ଼େଗା—ଲକ୍ଷ୍ମୀବର୍ଣ୍ଣା ରାସ୍ତାରେ ବିରାଲଗା ନାଳସେତୁ ଏବଂ ସାହାଜବାହାଲ—ଏକମା ରାସ୍ତାରେ ସାହାଜବାହାଲ ନାଳସେତୁ । ଏହିସବୁ ସେତୁର ନିର୍ମାଣ ବାବଦରେ ଗତ ସେପ୍ଟେମ୍ବର ସୁଦ୍ଧା ସମୁଦାୟ ୫ ଲକ୍ଷ ୬୧ ହଜାର ୬୧୨ ଟଙ୍କା ବ୍ୟୟ କରାଯାଇଛି ।

ସେହିପରି ଉନ୍ନତି କରାଯାଉଥିବା ରାସ୍ତା ୩ଟି ହେଲା :—କୁକୁରଭୁକା-ରାଞ୍ଚି-ବିହାର ସୀମାନ୍ତ ରାସ୍ତା, ଗୁରୁଣ୍ଡିଆ-ଜରଡ଼ା ରାସ୍ତା ଏବଂ ବଂଧପାଲି-କିଣ୍ଡିରିକେଲା ରାସ୍ତା । ଏସବୁ ରାସ୍ତାର ଉନ୍ନୟନ ଲାଗି ସେହି ମାସ ସୁଦ୍ଧା ଯଥାକ୍ରମେ ୨୩ ଲକ୍ଷ ୨୧ ହଜାର ୭୫୭ ଟଙ୍କା, ୧୯ ହଜାର ୯୯୯ ଟଙ୍କା ୧ ଲକ୍ଷ ୩୬ ହଜାର ୭୪୫ ଟଙ୍କା ବ୍ୟୟ କରାଯାଇଛି ।

ଏଠାରେ ଉଲ୍ଲେଖ କରାଯାଇପାରେ ଯେ ଉପରୋକ୍ତ ୫ଟି ସେତୁ, କୁରୁମକେଲା ନାଳସେତୁ ଓ ତୁଡୁଙ୍ଗ ନାଳସେତୁକୁ ମିଶାଇ ସମୁଦାୟ ୭ଟି ସେତୁ ଓ ଅନ୍ୟାନ୍ୟ ରାସ୍ତାର ଉନ୍ନୟନ ବାବଦରେ ଚଳିତ ଆର୍ଥିକ ବର୍ଷ ୨୯ ଲକ୍ଷ ୬୯ ହଜାର ଟଙ୍କା ମଞ୍ଜୁର କରାଯାଇଛି । ୫ଟି ସବ୍‌ଡ଼ିଭିଜନ୍ ଓ ୧୯ଟି ସେକ୍‌ସନ୍‌କୁ ନେଇ ଗଠିତ ଏହି ପ୍ରୋଜେକ୍ଟ୍ ଡ଼ିଭିଜନ୍‌ରେ ଥିବା ରାସ୍ତାର ସର୍ବମୋଟ୍ ଦୈର୍ଘ୍ୟ ହେଲା ୬୪୩.୧୦ କିଲୋମିଟର । ତନ୍ମଧ୍ୟରେ ପୂର୍ତ୍ତବିଭାଗ ୨୯ଟି ଆର. ଇ. ଓ. ରାସ୍ତାର ଦୈର୍ଘ୍ୟ ହେଲା ପ୍ରାୟ ୩୩୫ କିଲୋମିଟର ।

## ସଞ୍ଚୟ ପକ୍ଷ ପାଳନ

କୋରାପୁଟ ଜିଲ୍ଲାରେ ସଞ୍ଚୟ ପକ୍ଷ ପାଳନ ଉପଲକ୍ଷେ ଲକ୍ଷ୍ମୀପୁର ବ୍ଲକ୍‌ର ଦୁଇଟି ଗ୍ରାମକୁ ସଂପ୍ରତି "ସଂଚୟ ଗ୍ରାମ" ରୂପେ ଘୋଷଣା କରାଯାଇଛି । ଏହି ଦୁଇଟି ଗ୍ରାମ ହେଲା ଲକ୍ଷ୍ମୀପୁର ଓ ଚଂପି ।

ଢଂଗି ଗ୍ରାମର ସମୁଦାୟ ୧୬୫ଟି ପରିବାର ମଧ୍ୟରୁ ୧୬୦ଟି ପରିବାର ସଞ୍ଚୟ ଯୋଜନାର ପରିସରଭୁକ୍ତ ହୋଇଛନ୍ତି । ୭-ବର୍ଷିଆ ଜାତୀୟ ସଂଚୟ ସାର୍ଟିଫିକେଟ୍, ରେକରିଂ ଡିପୋଜିଟ୍ ଓ ପୋଷ୍ଟ ଅଫିସ୍ ସେଭିଂସ୍ ବହି ମାଧ୍ୟମରେ ସେମାନେ ସମୁଦାୟ ୩୭ ହଜାର ୮୭୦ ଟଙ୍କା ସଞ୍ଚୟ କରିଛନ୍ତି । ସେହିପରି ଲକ୍ଷ୍ମୀପୁର ଗ୍ରାମର ୪୨୦ଟି ପରିବାରଙ୍କ ମଧ୍ୟରୁ ୨୯୫ଟି ପରିବାର ସଂଚୟ ଯୋଜନାରେ ୪୦ ହଜାର ୭୦୦ ଟଙ୍କା ଜମା କରିଛନ୍ତି ।

## ପ୍ରୋଜେକ୍ଟ ଡିଭିଜନର ରାସ୍ତାଘାଟ ମରାମତ

ପୂର୍ତ୍ତ ବିଭାଗର ସୁନ୍ଦରଗଡ଼ ପ୍ରୋଜେକ୍ଟ ଡିଭିଜନ୍ ଅନ୍ତର୍ଗତ ସୁନ୍ଦରଗଡ଼, ପାନପୋଷ, ରାଜଗାଙ୍ଗପୁର, ବୀରମିତ୍ରପୁର ଓ ବଣାଇ ଅଞ୍ଚଳର ଗ୍ରାମ୍ୟ ରାସ୍ତାଗୁଡ଼ିକର ମରାମତି ଓ ଉନ୍ନତି କରିବା ବାବଦରେ ଚଳିତ ଆର୍ଥିକ ବର୍ଷ ପାଇଁ ଆଜି ସୁଦ୍ଧା ସମୁଦାୟ ୬୯ ଲକ୍ଷ ୨୯ ହଜାର ଟଙ୍କା ମଞ୍ଜୁର କରାଯାଇଛି । ରକ୍ଷଣାବେକ୍ଷଣ ପାଇଁ ୧୩ ଲକ୍ଷ ୨୮ ହଜାର ଟଙ୍କା, ସ୍ୱତନ୍ତ୍ର ମରାମତି ପାଇଁ ୨୭ ଲକ୍ଷ ୯୦ ହଜାର ଟଙ୍କା, ଯୋଜନା ସମ୍ବଳରୁ ୧୯ ଲକ୍ଷ ୬୯ ହଜାର ଟଙ୍କା ଏବଂ ଏବଂ ଆର୍ ଏଲ୍. ଇ. ଜି. ପି. ଅର୍ଥରୁ ୮ ଲକ୍ଷ ୪୨ ହଜାର ଟଙ୍କା, ଯୋଗାଇ ଦିଆଯାଇଛି ।

ଏହି ଅର୍ଥ ମଧ୍ୟରେ ପାନପୋଷ ପାଇଁ ମଞ୍ଜୁର ହୋଇଥିବା ୧୬ ଲକ୍ଷ ୧୭ ହଜାର ଟଙ୍କା ସର୍ବାଧିକ । ସେହିପରି ବୀରମିତ୍ରପୁର ଅଞ୍ଚଳର ରାସ୍ତା ପାଇଁ ୧୯ ଲକ୍ଷ ୮୯ ହଜାର ଟଙ୍କା, ବଣାଇ ରାସ୍ତା ପାଇଁ ୧୬ ଲକ୍ଷ ୬ ହଜାର ଟଙ୍କା, ସୁନ୍ଦରଗଡ଼ ରାସ୍ତା ପାଇଁ ୧୨ ଲକ୍ଷ ୪୯ ହଜାର ଟଙ୍କା ଏବଂ ରାଜଗାଙ୍ଗପୁର ରାସ୍ତା ପାଇଁ ୪ ଲକ୍ଷ ୬୮ ହଜାର ଟଙ୍କା ମଞ୍ଜୁର ହୋଇଛି ।

## ଯକ୍ଷ୍ମା ସିଲ୍ ବିକ୍ରୟ ଅଭିଯାନ

ରାଜଭବନଠାରେ ୩୭ତମ ଯକ୍ଷ୍ମା ସିଲ୍ ବିକ୍ରୟ ଅଭିଯାନ ଉଦ୍‌ଘାଟନ କରି ରାଜ୍ୟପାଳ ଶ୍ରୀ ବିଶ୍ୱମ୍ଭରନାଥ ପାଣ୍ଡେ ଯକ୍ଷ୍ମା ରୋଗର ନିରାକରଣ ପାଇଁ ଜନସାଧାରଣଙ୍କର ସକ୍ରିୟ ସହଯୋଗ କାମନା କରିଥିଲେ ।

ରାଜ୍ୟପାଳ କହିଲେ ଯେ ଶିଳ୍ପ ପ୍ରସାର ସଙ୍ଗେ ସଙ୍ଗେ ଯକ୍ଷ୍ମା ଓ ଛାତି ରୋଗର ପ୍ରାଦୁର୍ଭାବ ସାଧାରଣତଃ ବୃଦ୍ଧି ପାଇଥାଏ । ଏଣୁ, ଏହି ରୋଗର ନିରାକରଣ ପାଇଁ ଉଭୟ ସରକାରୀ ଓ ବେସରକାରୀ ସ୍ତରରେ ପ୍ରଗାଢ଼ ଉଦ୍ୟମ କରାଯିବା ଆବଶ୍ୟକ । ଯକ୍ଷ୍ମାରୋଗ ଏବେ ମଧ୍ୟ ଏକ ମାରାତ୍ମକ ରୋଗ ରୂପେ ପରିଚିତ । ଚିକିତ୍ସା ବିଜ୍ଞାନର ପ୍ରଗତି ସଙ୍ଗେ ସଙ୍ଗେ ଉଚିତ ସମୟରେ ରୋଗ ନିର୍ଣ୍ଣୟ ଓ ଚିକିତ୍ସା ବ୍ୟବସ୍ଥା କରାଗଲେ, ଏହି ରୋଗ ଲୋପ ପାଇପାରିବ । ଘରେ ରହି ଚିକିତ୍ସା କରାଯିବାର ସୁବିଧା ମଧ୍ୟ ରହିଛି । ସରକାରୀ ଓ ବେସରକାରୀ ସ୍ତରରେ ସକ୍ରିୟ ଉଦ୍ୟମ କରି ଏହି ରୋଗର ମୂଳୋତ୍ପାଟନ କରିବାକୁ ସେ ପରାମର୍ଶ ଦେଇଥିଲେ ।

ରାଜ୍ୟପାଳ କହିଲେ ଯେ କଟକର ଏସ୍. ସି. ବି. ମେ
କଲେଜରେ ଏକ ଆଧୁନିକ ଛାତିରୋଗ ଚିକିତ୍ସା
ଖୋଲାଯିବା ପାଇଁ ସରକାର ସ୍ଥିର କରିଛନ୍ତି । ରାଜ୍ୟ
ସଂଘ ଏ ରୋଗ ସଂପର୍କରେ ଜନସାଧାରଣଙ୍କୁ
କରାଇ ଦେବାକୁ ବିଭିନ୍ନ କାର୍ଯ୍ୟପନ୍ଥା ଗ୍ରହଣ
ଜନସାଧାରଣ ଟି. ବି. ସିଲ୍ କିଣି ଓ ବିଭିନ୍ନ ଭାବରେ
ଅର୍ଥଦାନ କରି ଏହାର କାର୍ଯ୍ୟକ୍ରମ ସଂପ୍ରସାରିତ
ସହାୟକ ହୁଅନ୍ତୁ ବୋଲି ରାଜ୍ୟପାଳ ନିବେଦନ କରିଥି

ସଂଘର ସଂପାଦକ ଅଧ୍ୟାପକ ହରିହର
କହିଥିଲେ ଯେ ଗତବର୍ଷ ଯକ୍ଷ୍ମା ସିଲ୍ ବିକ୍ରୟ କରି ୫
ଟଙ୍କା ମିଳିଥିଲା । ତା'ପୂର୍ବ ବର୍ଷ ଏବାବଦରେ ପ୍ରାୟ ୮
ଟଙ୍କା ସଂଗୃହୀତ ହୋଇଥିଲା । କଟକରେ ଆଧୁନିକ ଛା
ଚିକିତ୍ସା କେନ୍ଦ୍ର ଖୋଲିବା ପାଇଁ ରାଜ୍ୟ ସରକାର ୫
ମଞ୍ଜୁର କରିଛନ୍ତି ଓ ଏହି ଅର୍ଥରେ ଆଧୁନିକ
କିଣାଯିବ । ଏହା ବ୍ୟତୀତ ସଂଘର ସ୍ଥାୟୀଘର
ପାଇଁ କଟକ ବିଦ୍ୟାଧରପୁରରେ ସରକାର ଜମି
ଖୁବ୍ ଶୀଘ୍ର ଏହି ଘର ତିଆରି ଆରମ୍ଭ ହେବ ।
ଯକ୍ଷ୍ମା ସିଲ୍ ବିକ୍ରୟ ଅଭିଯାନକୁ ସଫଳ କରିବା
ଜନସାଧାରଣଙ୍କୁ ନିବେଦନ କରିଥିଲେ । ରାଜ୍ୟପ
ଉଦ୍‌ଘାଟନର ୩୦୦ ଟଙ୍କାର ଯକ୍ଷ୍ମା ସିଲ୍ କିଣିଥିଲେ ।

## ଫୁଲବାଣୀ ଜିଲ୍ଲାରେ ଶିଳ୍ପ ପ୍ରତି

ଗ୍ରାମାଞ୍ଚଳରେ ନିଯୁକ୍ତି ସୁବିଧାକୁ ଅଧିକ
କରିବା ପାଇଁ ରାଜ୍ୟର ନୂତନ ଶିଳ୍ପନୀତି (
ବ୍ୟବସ୍ଥା ରହିଛି । ଏଥିପାଇଁ ଖଦୀ ଓ ଗ୍ରାମ୍ୟ ଶି
ଶିଳ୍ପ ଏବଂ ହସ୍ତଶିଳ୍ପ ପ୍ରତିଷ୍ଠା ଉପରେ ଗୁରୁ
କରାଯାଉଛି ଏବଂ ପ୍ରତ୍ୟେକ ଜିଲ୍ଲାର ଜିଲ୍ଲା ଶିଳ୍ପ କେନ୍ଦ୍ର
କ୍ଷୁଦ୍ର ଓ କୁଟୀର ଶିଳ୍ପ ପ୍ରତିଷ୍ଠା ପାଇଁ ପ୍ରୋତ୍ସାହନ
ଦେବାର ବ୍ୟବସ୍ଥା କରାଯାଇ ବିଭିନ୍ନ ଜିଲ୍ଲା
କ୍ଷୁଦ୍ର ଶିଳ୍ପ ଓ କେତେ କୁଟୀର ଶିଳ୍ପ ପ୍ରତିଷ୍ଠା କରା
ଧାର୍ଯ୍ୟ କରାଯାଇଥାଏ ।

ତଦନୁଯାୟୀ ଫୁଲବାଣୀ ଜିଲ୍ଲାରେ ଚଳିତ ଆ
୨୪୦୦ଟି କୁଟୀର ଶିଳ୍ପ ଏବଂ ୮୦ଟି କ୍ଷୁଦ୍ର
କରାଯିବାର ଲକ୍ଷ୍ୟ ରଖାଯାଇଛି । ଚଳିତ ଆ
ପ୍ରଥମ ୪ ମାସ ମଧ୍ୟରେ (ଗତ ଜୁଲାଇ ମାସ
ଜିଲ୍ଲାରେ ୬୨୭ଟି କୁଟୀର ଶିଳ୍ପ ଓ ୪ଟି କ୍ଷୁଦ୍ର
କରାଯାଇ ସେଥି ମାଧ୍ୟମରେ ୧୨୩୮ ଜଣଙ୍କ କ
ଦିଆଯାଇଛି । କୁଟୀର ଶିଳ୍ପ ପାଇଁ ୧୪ ଲକ୍ଷ
ଟଙ୍କା ଓ କ୍ଷୁଦ୍ରଶିଳ୍ପ ପାଇଁ ୧ ଲକ୍ଷ ୭୫ ହଜାର ଟଙ୍କ
କରାଯାଇଛି । ଏହି ଦୃଷ୍ଟିରୁ ଚଳିତ ବର୍ଷର
ପୂରଣ ହୋଇପାରିବ ବୋଲି ଆଶା କରାଯାଉଛି ।

## ଜଳସେଚନ ସୁବିଧା ଓ ଫସଲ ଉ

ପୁରୀ ଜିଲ୍ଲା ନିମାପଡ଼ା ଅଞ୍ଚଳରେ କାର୍ଯ୍ୟକ
'କାଡା' କାର୍ଯ୍ୟକ୍ରମ ଭଲ ଭାବରେ କାର୍ଯ୍ୟକାରୀ ହେ

କେତେକ ଅଞ୍ଚଳରେ ଚାଷ ଜମିରୁ ଜଳ ନିଷ୍କାସନ ଯଥାଯଥ ଭାବରେ ହୋଇପାରୁ ନଥିବାଯୋଗୁ ଚାଷୀମାନେ କ୍ଷତିଗ୍ରସ୍ତ ହେଉଥିବାରୁ ସେ ଅଞ୍ଚଳରେ ଜଳ ନିଷ୍କାସନ କାର୍ଯ୍ୟକ୍ରମକୁ ତ୍ୱରାନ୍ୱିତ କରିବାକୁ କୃଷି ଓ ସମବାୟ ମନ୍ତ୍ରୀ ଶ୍ରୀ ରାସବିହାରୀ ବେହେରା ବିଭାଗୀୟ ଅଫିସରଙ୍କୁ ପରାମର୍ଶ ଦେଇଛନ୍ତି । ଗତ ନଭେମ୍ବର ୨୧ ତାରିଖରେ ଶ୍ରୀ ବେହେରା ନିମାପଡା ଅଞ୍ଚଳର କେତେକ ଗ୍ରାମ ପରିଦର୍ଶନ କରି ସ୍ଥାନୀୟ ଲୋକମାନଙ୍କ ସହ ବିଭିନ୍ନ ସମସ୍ୟାବଳୀ ସଂପର୍କରେ ଆଲୋଚନା କରିଥିଲେ ଓ ଜଳ ନିଷ୍କାସନ ସଂପର୍କରେ ବିଭାଗୀୟ କର୍ତ୍ତୃପକ୍ଷଙ୍କ ସହିତ ଆଲୋଚନା କରିବା ପାଇଁ ପ୍ରତିଶ୍ରୁତି ଦେଇଥିଲେ । ଚାଷ ଜମିକୁ ଜଳ ଯୋଗାଇଦେବା ଯେତିକି ଗୁରୁତ୍ୱପୂର୍ଣ୍ଣ, ଚାଷଜମିରୁ ଜଳ ନିଷ୍କାସନ କରିବା ସେତିକି ଗୁରୁତ୍ୱପୂର୍ଣ୍ଣ ବୋଲି ସେ ମତ ବ୍ୟକ୍ତ କରିଥିଲେ । ଗସ୍ତ ସମୟରେ ବିଂଶସୂତ୍ରୀ କାର୍ଯ୍ୟକ୍ରମକୁ ସଫଳ କରିବା ଏବଂ ବିଶେଷ କରି ଜଳସେଚନ କାର୍ଯ୍ୟକ୍ରମକୁ ଏଥିରେ ଅଗ୍ରାଧିକାର ଦିଆଯାଇଥିବାରୁ ଚାଷୀମାନଙ୍କ ନିଷ୍ଠା ଉପରେ ବିଂଶସୂତ୍ରୀ କାର୍ଯ୍ୟକ୍ରମ ନିର୍ଭର କରେ ବୋଲି ସେ କହିଥିଲେ । ଜଳସେଚନ ଥିବା ସୁବିଧା ପ୍ରତ୍ୟେକ ଜମିରେ ଫସଲ ଉତ୍ପାଦନ ପାଇଁ ଚାଷୀମାନେ ଉଦ୍ୟମ କରନ୍ତୁ ବୋଲି ସେ ଆହ୍ୱାନ ଜଣାଇଥିଲେ ।

## କର୍ମଚାରୀମାନଙ୍କୁ ଛଟେଇ କରାଯିବ ନାହିଁ

ସଂପ୍ରତି ରେଙ୍ଗାଲିଠାରେ ଶ୍ରମିକମାନଙ୍କର ଏକସମାବେଶରେ ଉଦ୍‌ବୋଧନ ଦେଇ ସେଚ, ସୂଚନା ଓ ଲୋକ ସଂପର୍କ ରାଷ୍ଟ୍ରମନ୍ତ୍ରୀ ଶ୍ରୀ ଭୂପିନ୍ଦର ସିଂହ କହିଲେ ଯେ ରାଜ୍ୟ ସରକାର କୌଣସି କର୍ମଚାରୀଙ୍କୁ ଛଟେଇ କରିବା ଚାହାଁନ୍ତି ନାହିଁ । ରେଙ୍ଗାଲି କର୍ମଚାରୀ ସଂଘ ଦ୍ୱାରା ଆଶଙ୍କା କରାଯାଉଥିବା ୱାର୍କଚାର୍ଜ କର୍ମଚାରୀଙ୍କ ଛଟେଇ ସଂପର୍କରେ ସେ ସ୍ପଷ୍ଟ କହିଥିଲେ ଯେ ବିଭିନ୍ନ ଜଳସେଚନ ପ୍ରକଳ୍ପଗୁଡ଼ିକର ନିର୍ମାଣ କାର୍ଯ୍ୟକାରୀ କରିବା ପାଇଁ ସ୍ୱଳ୍ପ କାଳ ନିମନ୍ତେ ଅସ୍ଥାୟୀ ୱାର୍କଚାର୍ଜ କର୍ମଚାରୀ ଆବଶ୍ୟକ ହୁଅନ୍ତି ଓ ପ୍ରକଳ୍ପର ନିର୍ମାଣ କାର୍ଯ୍ୟ ଶେଷ ହେଲେ ଏତେ ସଂଖ୍ୟକ କର୍ମଚାରୀଙ୍କ ନିମନ୍ତେ ଆଉ କାର୍ଯ୍ୟ ରହେ ନାହିଁ । ସେଭଳି ପରିସ୍ଥିତିରେ ଅନ୍ୟ ନୂତନ ପ୍ରକଳ୍ପଗୁଡ଼ିକରେ ଏହି ଅଭିଜ୍ଞ କର୍ମଚାରୀଙ୍କ ମଧ୍ୟରୁ ଯୋଗ୍ୟ ବ୍ୟକ୍ତିଙ୍କୁ ଚାହିଦା ଅନୁଯାୟୀ ପୁନଃନିଯୁକ୍ତି ଦେବା ଲାଗି ସରକାର ଯଥାସାଧ୍ୟ ଉଦ୍ୟମ କରିଥାନ୍ତି । ରେଙ୍ଗାଲି କର୍ମଚାରୀଙ୍କ କ୍ଷେତ୍ରରେ ଏହି ନୀତି ଅବଲମ୍ବନ କରାଯିବ । ଏହିଭଳି କ୍ଷେତ୍ରରେ ଆଦିବାସୀ ଓ ହରିଜନ ପ୍ରାର୍ଥୀଙ୍କୁ ଅଗ୍ରାଧିକାର ଦେବା ମଧ୍ୟ ସରକାର ଚାହାଁନ୍ତି ବୋଲି ଶ୍ରୀ ସିଂହ ସୂଚନା ଦେଇଥିଲେ ।

ଶ୍ରୀ ସିଂହ ରେଙ୍ଗାଲି ବୁଡ଼ି ଅଞ୍ଚଳର ମଲୁଡଙ୍ଗ ଝୁଂପୁଡା, ସୁଣ୍ଡିଝରୀ ଗ୍ରାମ ଓ ଶୁରିଶଛିଆ, ମହାମିଳୁ, ପେଟପୁରା, ବନବିର, ଖେମଳା ପୁନର୍ବସତି ଗ୍ରାମ ପରିଦର୍ଶନ କରିଥିଲେ । ନଦୀକୂଳର ଜୁଣ୍ଡେଇଗୋରା, ବଡବାଗଦରୀ, ସାନବାଗଦରୀ, ମହାଜନନାଳି, ହରିହରପୁର, ଝଜୁରୀ ଖମଣ ଆଦି ଗ୍ରାମ ରେଙ୍ଗାଲି ପ୍ରକଳ୍ପ ଦ୍ୱାରା କ୍ଷତିଗ୍ରସ୍ତ ହେଉଥିବା ଜାଣି ସେ ସେହି ଗ୍ରାମଗୁଡ଼ିକୁ ଦେଖିବାକୁ ଯାଇଥିଲେ ଏବଂ ଲୋକଙ୍କ ଆପତ୍ତି ଅଭିଯୋଗ ଶୁଣି ତା'ର ସମାଧାନ ଲାଗି ପନ୍ଥା ନିରୂପଣ ପାଇଁ ସଂପୃକ୍ତ ବିଭାଗୀୟ ଉଚ୍ଚ କର୍ମକର୍ତ୍ତାଙ୍କୁ ପରାମର୍ଶ ଦେଇଥିଲେ ।

ଏହି ଆଲୋଚନା ବେଳେ ପାଲଲହଡା ବିଧାୟକ ଶ୍ରୀ ବିବୁଧେନ୍ଦ୍ର ପ୍ରତାପ ଦାସ, ଦେଓଗଡ଼ ବିଧାୟକ ଶ୍ରୀ ରାଜ କିଶୋର ପ୍ରଧାନ, ଇଂଜିନିୟର-ଇନ୍-ଚିଫ୍ ଶ୍ରୀ ଦିବାକର ମିଶ୍ର, କର୍ମଚାରୀ ସଂଘର କର୍ମକର୍ତ୍ତାଗଣ ଉପସ୍ଥିତ ଥିଲେ ।

ଦେଓଗଡ ଫୁଟ୍‌ବଲ ଆସୋସିଏସନ୍ ଦ୍ୱାରା ଆୟୋଜିତ ଫୁଟବଲ୍ ଟୁର୍ଣ୍ଣାମେଣ୍ଟର ଫାଇନାଲ୍ ଖେଳରେ ଶ୍ରୀ ସିଂହ ମୁଖ୍ୟ ଅତିଥି ରୂପେ ଯୋଗ ଦେଇ ବିଜୟୀ ବେଲପାହାଡ ଦଳକୁ ସିଲ୍ଡ ପ୍ରଦାନ କରିଥିଲେ । ଚକ୍ରଧରପୁର ଓ ବେଲପାହାଡ ଦଳ ମଧ୍ୟରେ ହେଉଥିବା ଏହି ଫୁଟବଲ୍ ଖେଳରେ ବେଲପାହାଡ ଦଳ୨—୧ ଗୋଲରେ ବିଜୟୀ ହୋଇଥିଲେ । ଉତ୍ସବରେ ପାଲଲହଡା ଓ ଦେଓଗଡ ବିଧାୟକଙ୍କ ସମେତ ରେଢାଖୋଲ ବିଧାୟକ ଶ୍ରୀ ଅଭିମନ୍ୟୁ କୁମାର ମଧ୍ୟ ଯୋଗ ଦେଇଥିଲେ ।

## ଗୋତି ଶ୍ରମିକ ଥଇଥାନ

ଗୋତି ଶ୍ରମିକ ଥଇଥାନ କାର୍ଯ୍ୟକ୍ରମ ଆରମ୍ଭ ହେବା ଦିନଠାରୁ ଗତ ଅକ୍ଟୋବର ଶେଷସୁଦ୍ଧା ରାଜ୍ୟରେ ୩୨,୨୫୨ ଜଣ ଗୋତି ଶ୍ରମିକଙ୍କ ଥଇଥାନ କରାଯାଇଛି । ସେମାନଙ୍କ ମଧ୍ୟରେ ୯,୪୬୩ ଜଣ ତପସିଲଭୁକ୍ତ ଜାତି ଓ ୧୦,୬୯୪ ଜଣ ତପସିଲ୍-ଭୁକ୍ତ ସଂପ୍ରଦାୟର ଲୋକ ଅନ୍ତର୍ଭୁକ୍ତ । ଏହି ସମୟ ମଧ୍ୟରେ ବଲାଙ୍ଗୀର ଜିଲ୍ଲାରେ ସର୍ବାଧିକ ୫୩୯୨ ଜଣ ଓ ତା' ପଛକୁ କଟକ ଏବଂ କୋରାପୁଟ ଜିଲ୍ଲାରେ ଯଥାକ୍ରମେ ୫୨୨୯ ଜଣ ଓ ୩୮୬୪ ଜଣ ଗୋତି ଶ୍ରମିକଙ୍କୁ ଥଇଥାନ କରାଯାଇଛି । ଏହା ବ୍ୟତୀତ ବାଲେଶ୍ୱର ଜିଲ୍ଲାରେ ୮୧୫ ଜଣ, ଢେଙ୍କାନାଳ ଜିଲ୍ଲାରେ ୧,୨୪୬ ଜଣ ଗଂଜାମ ଜିଲ୍ଲାରେ ୧,୩୬୨ ଜଣ, କଳାହାଣ୍ଡି ଜିଲ୍ଲାରେ ୨,୨୧୧ ଜଣ, କେନ୍ଦୁଝର ଜିଲ୍ଲାରେ ୧,୩୯୪ ଜଣ, ମୟୂରଭଞ୍ଜ ଜିଲ୍ଲାରେ ୬୩୧ ଜଣ, ଫୁଲବାଣୀ ଜିଲ୍ଲାରେ ୨,୨୨୭ ଜଣ, ପୁରୀ ଜିଲ୍ଲାରେ ୨,୮୨୭ ଜଣ, ସମ୍ବଲପୁର ଜିଲ୍ଲାରେ ୨,୮୪୯ ଜଣ ଓ ସୁନ୍ଦରଗଡ଼ ଜିଲ୍ଲାରେ ୧୯୦୫ ଜଣ ଗୋତି ଶ୍ରମିକଙ୍କ ଥଇଥାନ କରାଯାଇଛି ।

## ବଧିରମାନଙ୍କୁ ଶ୍ରବଣ ସହାୟକ ଯନ୍ତ୍ର

ଫୁଲବାଣୀ ଆଦିବାସୀ ଅଧ୍ୟୁଷିତ ଅଞ୍ଚଳର ୧୩୧ ଜଣ ବଧିରଙ୍କୁ ଶ୍ରବଣ ଯନ୍ତ୍ର ଯୋଗାଇ ଦିଆଯିବା ଫଳରେ ସେମାନେ ଶୁଣିବାକୁ ସକ୍ଷମ ହୋଇପାରିଛନ୍ତି । ଗତ ନଭେମ୍ବର ୨୧ ତାରିଖ ଦିନ ଫୁଲବାଣୀଠାରେ ଏବଂ ୨୨ ତାରିଖ ଦିନ ବାଳିଗୁଡାଠାରେ ଏକ ସ୍ୱତନ୍ତ୍ର ଶିବିରରେ ଅଭିଜ୍ଞ ଚିକିତ୍ସକଙ୍କ ଦ୍ୱାରା ମୋଟ ୨୨୦ ଜଣ ବଧିର ବ୍ୟକ୍ତିଙ୍କୁ ପରୀକ୍ଷା କରାଯାଇଥିଲା । ସେଥି ମଧ୍ୟରୁ ୧୩୧ ଜଣ ଶ୍ରବଣ ଯନ୍ତ୍ର ଦ୍ୱାରା ଶୁଣିବାକୁ ସକ୍ଷମ ହୋଇଥିଲେ ଏବଂ ସେମାନଙ୍କୁ ଶ୍ରବଣ ଯନ୍ତ୍ର ମାଗଣାରେ ବଣ୍ଟନ କରାଯାଇଥିଲା । ଆଉ ୧୫ ଜଣ ବ୍ୟକ୍ତିଙ୍କୁ ଏହିଭଳି ଶ୍ରବଣ ଯନ୍ତ୍ର ଦେବା ଲାଗି ମଧ୍ୟ ବଛାଯାଇଛି ।

ଏହି ଯନ୍ତ୍ର ଯୋଗାଇବା ପାଇଁ ଗୋଷ୍ଠୀ ଉନ୍ନୟନ ବିଭାଗ ମୋଟ୍ ୩୬, ୬୮୦ ଟଙ୍କା ବିନିଯୋଗ କରିଥିଲେ । ଉକ୍ତ ଦୁଇଟି ଶିବିର ପରିଚାଳନାରେ ଫୁଲବାଣୀ ରୋଟାରୀ କ୍ଲବ,

ସତ୍ୟସାୟୀ ସେବା ଓ ବାଲ୍ମିଗୁଡ଼ା ବନବାସୀ ସେବା ସମିତି
ସ୍ୱେଚ୍ଛାସେବୀ ଅନୁଷ୍ଠାନ ସହାୟତା କରିଥିଲେ ।

## ବାଣିଜ୍ୟ ମେଳାରେ ଓଡ଼ିଶା ମଣ୍ଡପ

ନୂଆଦିଲ୍ଲୀଠାରେ ଅନୁଷ୍ଠିତ ବାଣିଜ୍ୟ ମେଳାରେ ଓଡ଼ିଶା
ମଣ୍ଡପକୁ ଗତ ନଭେମ୍ବର ୧୪ ତାରିଖଠାରୁ ଦର୍ଶକମାନଙ୍କ ଲାଗି
ଖୋଲାଯାଇଛି । ଓଡ଼ିଶାର ହସ୍ତ ତନ୍ତ ବସ୍ତ୍ର, ହସ୍ତଶିଳ୍ପ ଓ ତାରକସି
କାର୍ଯ୍ୟ ଦର୍ଶକମାନଙ୍କୁ ବିଶେଷ ଆକୃଷ୍ଟ କରିଛି । ପ୍ରଦର୍ଶନୀ ଆରମ୍ଭ
ହେବା ଦିନଠାରୁ (୨୮-୧୧-୧୯୮୬ ତାରିଖ) ପର୍ଯ୍ୟନ
୮୮ ହଜାର ଟଙ୍କାର ଉପରୋକ୍ତ ଦ୍ରବ୍ୟ ବିକ୍ରୟ ହ
ଏହି ସମୟ ମଧ୍ୟରେ ଓଡ଼ିଶା ଟେକ୍ସଟାଇଲ୍ ମିଲସ
କରିଥିବା ୧ ଲକ୍ଷ ଟଙ୍କାର ଲୁଗାପଟା ଏହାର ଅ
ଓଡ଼ିଶାର ସୁଖ୍ୟାତ ହସ୍ତତନ୍ତ ବସ୍ତ୍ର କିଣିବା ପାଇଁ
ପ୍ରତ୍ୟହ ଦର୍ଶକମାନଙ୍କର ଆଗ୍ରହ ବୃଦ୍ଧି ପାଉଥିବାରେ
ନଭେମ୍ବର ୨୯ ତାରିଖ ଦିନ ମୁଖ୍ୟମନ୍ତ୍ରୀ ଶ୍ରୀ ଜାନକ
ପଟ୍ଟନାୟକ ବାଣିଜ୍ୟ ମେଳାରେ ଓଡ଼ିଶା ଦିବସ ଉ
କରିଥିଲେ ।

# ଆନ୍ଧ୍ର-ଓଡ଼ିଶାର ସୀମା ବିଭ୍ରାଟ

ଡଃ: ସତ୍ୟନାରାୟଣ ରାଜଗୁରୁ

ସ୍ୱତନ୍ତ୍ର ଆନ୍ଧ୍ର ପ୍ରଦେଶ ଗଠନ ସକାଶେ ୧୯୧୦ ସାଲରୁ ଆନ୍ଦୋଳନ ସୃଷ୍ଟି ହୋଇ ୧୯୫୩ ମସିହାରେ ତାହା ସଫଳତା ଲାଭ କଲା । ୧୯୧୩ ସାଲରେ 'ଆନ୍ଧ୍ର-ମହାସଭା' ଗଠିତ ହୋଇ ରାଜନୈତିକ ସ୍ତରରେ ତାହା ଆନ୍ଧ୍ରର ଏକ ଜାତୀୟ ଆନ୍ଦୋଳନରେ ପରିଣତ ହେଲା । ସାର୍ ବି:ଏନ: ଶର୍ମା, ଦେବାନ୍ ବାହାଦୁର ଏମ୍ ରାମଚନ୍ଦ୍ର ରାଓ, ଏନ୍: ସୁବ୍ବାରାଓ, ଜି: ହରି ସର୍ବୋତ୍ତମ ରାଓ, ଦେଶଭକ୍ତ କୋଣ୍ଡା, ଭେଙ୍କଟ ରାଓ, ଦେଶୋଦ୍ଧାରକ କେ: ନାଗେଶ୍ୱର ରାଓ, ଆନ୍ଧ୍ର କେଶରୀ ଟି: ପ୍ରକାଶମ୍, ଆନ୍ଧ୍ର ରତ୍ନ ଦୁଗ୍‌ଗିଲାଲ୍, ଗୋପାଳ କୃଷ୍ଣୟା, ପଟ୍ଟାଭି ସୀତାରାମେୟା ପ୍ରମୁଖ ନେତୃ ସ୍ଥାନୀୟ ଲୋକ ସେଥିରେ ଯୋଗ ଦେଇ ସେହି ଜାତୀୟ ଆନ୍ଦୋଳନକୁ ପ୍ରାଣବନ୍ତ କରିଥିଲେ ।

ଭାଷାସୂତ୍ରରେ ପ୍ରଦେଶ ଗଠନ କରିବା ନୀତି ୧୯୧୬ ସାଲରେ ଭାରତର କଂଗ୍ରେସ ପାର୍ଟି ଗ୍ରହଣ କଲେ । ସେଥିର ଦୁଇବର୍ଷ ପରେ, ମାନ୍ଦ୍ରାଜଠାରେ ଆନ୍ଧ୍ରନେତାମାନେ ମଣ୍ଟେଗୁ-ଚେମ୍ସ୍‌ଫୋର୍ଡଙ୍କୁ ଭେଟି ତାଙ୍କ ଦାବୀ ଉପସ୍ଥାପିତ କଲେ । ୧୯୧୯ରେ ବିଲାତ ପାର୍ଲିଆମେଣ୍ଟରେ ଭାରତର ଶାସନ ସଂକ୍ରାନ୍ତ ସଂସ୍କାର ବିଷୟ ନେଇ ଆଲୋଚିତ ହେଉଥିବା ସମୟରେ ଆନ୍ଧ୍ର ପକ୍ଷରୁ ଏକ ପ୍ରତିନିଧି ଦଳ ସେଠାକୁ ପଠାଯାଇଥିଲା । ସେ ବର୍ଷ ଦିଲ୍ଲୀରେ ଅନୁଷ୍ଠିତ ଭାରତୀୟ ଲେଜିସ୍‌ଲେଟିଭ୍ ଆସେମ୍ବ୍ଲିରେ ସ୍ୱତନ୍ତ୍ର ଆନ୍ଧ୍ର ପ୍ରଦେଶ ଗଠନ ସକାଶେ ଅନୁକୂଳ ପ୍ରସ୍ତାବ ଗୃହୀତ ହୋଇଗଲା । କିନ୍ତୁ ତାହା କାର୍ଯ୍ୟରେ ପରିଣତ ହେଲା ନାହିଁ । ତେଣୁ ୧୯୨୭ ରେ ଏ ସମ୍ପର୍କରେ ଆନ୍ଧ୍ର ପକ୍ଷରୁ ସାଇମନ୍ କମିଶନ୍ ସମ୍ମୁଖରେ ଦାବୀ ଉପସ୍ଥାପିତ କରାଗଲା । ସାଇମନ୍ କିନ୍ତୁ ସେହି ଦାବୀକୁ ଏଡାଇ ଦେଇ ଓଡ଼ିଶାର ଏକତ୍ରୀକରଣ ସପକ୍ଷରେ ମତ ପ୍ରକାଶ କଲେ । ଏଥିରେ ଆନ୍ଧ୍ରମାନଙ୍କ ପକ୍ଷରୁ କେବଳ ନିରାଶା ନୁହେଁ କ୍ରୋଧ ଏବଂ ଓଡ଼ିଆଙ୍କ ପ୍ରତି ବିଦ୍ୱେଷ ମଧ୍ୟ ସୃଷ୍ଟି ହେଲା । ସେମାନେ ଅଧିକ ବିବ୍ରତ ହେଲେ, ଯେତେବେଳେ ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ ଗଠନ ପାଇଁ ସୀମା ନିର୍ଦ୍ଦେଶକ ଓଡୋନାଲ୍ କମିଟି ପକ୍ଷରୁ ମାନ୍ଦ୍ରାଜରୁ ଗଞ୍ଜାମ ଓ ବିଶାଖାପାଟଣା ଓଡ଼ିଶାର ଭାଗ ସ୍ଥିର କରାଯାଇ, ପରେ ସେଥିରେ କିଛି ପରିବର୍ତ୍ତନ ହୋଇଥିଲା । ସେହି ନିର୍ଦ୍ଧାରିତ ସୀମାକୁ ଆଧାର କରି ବ୍ରିଟିଶ ପାର୍ଲିଆମେଣ୍ଟ ପକ୍ଷରୁ ନିଯୁକ୍ତ Joint Committee on India Constitutional Reform (Session 1933-34) * ରେ ସିନ୍ଧୁ ଏବଂ ଓଡ଼ିଶା ପାଇଁ କେବଳ ସ୍ୱତନ୍ତ୍ର ପ୍ରଦେଶ ଗଠନ ସକାଶେ ସୁପାରିଶ କରାଗଲା । କିନ୍ତୁ ତାଙ୍କ ରିପୋର୍ଟରେ ଆନ୍ଧ୍ର ପ୍ରଦେଶ ଗଠନ ପାଇଁ ସୂଚନା ମଧ୍ୟ ରହିଲା ନାହିଁ । ଓଡ଼ିଶା ସମ୍ବନ୍ଧରେ ତାଙ୍କ ରିପୋର୍ଟରେ ଲେଖାଥିଲା:

"The statutory Commission describe the union which now exists between Orissa and Bihar as a glaring example of the artificial connection of areas which are not naturally related," and all the demand of the Oriyas for separation has been long and inssistent. Main difficulty here is a financial one; since Orissa is now and may will remain in deficit area. A separate province for Orissa would, however, be perhaps the most homogeneous province in the whole of the British India; Both racially and linguistically; the communal difficulty is practically non-existent; and its claim appears to have the sympathy and support of all parties in India. XXXX In this circumstances we recommend that a new province of Orissa be constituted."

ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ ଗଠନ ପାଇଁ ପାର୍ଲିଆମେଣ୍ଟ ସବ୍‌କମିଟି ପକ୍ଷରୁ ଏପରି ଅନୁକୂଳ ମତ ଦେଇ ତାଙ୍କ କର୍ତ୍ତବ୍ୟ ଶେଷ କରିଥିଲେ । ତଥାପି ସୀମା ନିର୍ଦ୍ଦେଶ କ୍ଷେତ୍ରରେ ବହୁ ଗଲ୍‌ତି ଥିବାରୁ ଓଡ଼ିଆଙ୍କ ପକ୍ଷରୁ ଅସନ୍ତୋଷ ପ୍ରକଟିତ ହେଲା । କାରଣ ଓଡୋନାଲ୍ କମିଟିର ସୀମା ନିର୍ଦ୍ଦେଶରେ ଗଞ୍ଜାମ ଓ ବିଶାଖାପାଟଣା ଜିଲ୍ଲାରେ ଥିବା ବହୁତ ଗୁଡ଼ିଏ ଓଡ଼ିଆ ଜମିଦାରୀ ଅଞ୍ଚଳ ବିଶେଷତଃ ଜୟପୁର ଓ ପାରଳାଖେମୁଣ୍ଡି

ସେହି ମାନଚିତ୍ର ହିଁ ଅଦ୍ୟତନ ଦକ୍ଷିଣ-ଓଡ଼ିଶାରେ ଭୂତପୂର୍ବ ପାରଳା ଜମିଦାରୀର ଦୁଇଟି ଖଣ୍ଡ ମଧ୍ୟରେ ଓଡ଼ିଶା ଓ ଆନ୍ଧ୍ର ପ୍ରଦେଶର ସୀମା ରୂପେ ନିରୂପିତ ହୋଇଛି ।

ସେହି ମାନଚିତ୍ରକୁ ଭିତ୍ତିକରି ୧୯୩୫ ସାଲରେ ସାର୍ କେ.ଭି ରେଡ଼ିଙ୍କ ନେତୃତ୍ୱରେ ବିଲାତର ଜଏଣ୍ଟ ପାର୍ଲାମେଣ୍ଟାରୀ କମିଶନ୍ ପୁଣି ଓଡ଼ିଆ ଓ ଆନ୍ଧ୍ରମାନଙ୍କ ପକ୍ଷରୁ ସାକ୍ଷ ନିଆଯାଇଥିଲା । ସେଥିରେ ଆନ୍ଧ୍ରମାନଙ୍କ ପକ୍ଷରୁ ବ୍ରହ୍ମପୁରର ଭଲମ୍ ରାମଲିଙ୍ଗମ୍ (ବ୍ରହ୍ମପୁର ନଗର ପାଳିକା) ଅଧ୍ୟାପକ ସୀତାପତି ଏବଂ ଆଡଭୋକେଟ୍ ଆସ୍ୟାଗାରି ସୁବାରାଓ ବିଲାତ ଯାଇଥିଲେ । କିନ୍ତୁ ଓଡ଼ିଆଙ୍କ ପକ୍ଷରୁ ଯେଉଁମାନେ ପାରଳାଖେମୁଣ୍ଡି ଜନସାଧାରଣଙ୍କଠାରୁ ଚାନ୍ଦା ସଂଗ୍ରହ କରି ବିଲାତ ଯାଇଥିଲେ, ତାଙ୍କ ପ୍ରସ୍ତାବ ହିଁ ଗୃହୀତ ହୋଇଥିଲା ।

ଆଗରୁ ୧୯୩୧ ସାଲରେ ଜନଗଣନା ଅଫିସର ତାଙ୍କ ମନ୍ତବ୍ୟରେ ଉଲ୍ଲେଖ କରିଥିଲେ ଯେ, ଓଡ଼ିଆ ଓ ତେଲୁଗୁ ଭାଷାର ସୀମାରେଖା ଗଞ୍ଜାମ ଜିଲ୍ଲାର ଋଷିକୁଲ୍ୟା ମୁହାଣଠାରୁ ଘୋଡାପାହାଡ ନଦୀ (ଇଛାପୁର) ମଧ୍ୟରେ ଚିହ୍ନିତ ହେବା ଉଚିତ; କିନ୍ତୁ ପଶ୍ଚିମ ଦିଗରେ ତାହା ମୋଟାମୋଟି ମାଳ ଅଞ୍ଚଳ ସଙ୍ଗେ ସଂପୃକ୍ତ ହୋଇରହିଛି ।

"In some ways the Rushikulya river system (down to the godohodo river) marks the southern boundary of the truly Oriya region. On the west, the Oriya boundary roughly Coinciders with the Agency on the south."*

ଏହି ରିପୋର୍ଟକୁ ଆଧାର କରି ଗଞ୍ଜାମର ତେଲୁଗୁମାନେ ବ୍ରହ୍ମପୁର ସହର ସମେତ ଦକ୍ଷିଣ ଗଞ୍ଜାମର ସମସ୍ତ ଅଂଶ ଭବିଷ୍ୟତରେ ଆଶା କରାଯାଉଥିବା ଆନ୍ଧ୍ର ପ୍ରଦେଶରେ ରହୁ ବୋଲି ଦାବୀ କରିଥିଲେ । କିନ୍ତୁ ତାଙ୍କର ଦାବୀ ଆଟ୍ଲି ଉପକମିଟିରେ ପ୍ରତ୍ୟାଖ୍ୟାତ ହେଲା । ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ ଗଠନ ପାଇଁ ଯେଉଁ ଅନୁକୂଳ ପ୍ରସ୍ତାବ 'ଶ୍ୱେତପତ୍ର' (white paper) ତା ୧୭.୩.୧୯୩୩ରେ ପ୍ରକାଶ କରାଗଲା । ସେଥିରେ ଏକ ନଜିର ଦେଇ ମାନ୍ଦ୍ରାଜର 'ଆନ୍ଧ୍ର ମହାସଭା' ଦାବୀ କଲେ ଯେ, ସ୍ୱତନ୍ତ୍ର-ଆନ୍ଧ୍ରପ୍ରଦେଶ ଶୀଘ୍ର ଘୋଷିତ ହେଉ । କିନ୍ତୁ ବିଲାତର ଶାସନ ଗୋଷ୍ଠୀ ପକ୍ଷରୁ ସାର୍ ରେଜିନାଲ୍‌ଡ୍ କ୍ରଡ୍‌କ୍ (Sir Reginald Craddock) ଜାଇଣ୍ଟ କମିଟିରେ ଗୋଟିଏ ସଂଶୋଧନ ପ୍ରସ୍ତାବ ଆଗତ କରି ଭାଷା ସୂତ୍ରରେ ଭାରତକୁ ବିଭକ୍ତ କରିବା ବିପଦ୍‌ଜନକ ବୋଲି ପ୍ରକାଶ କରିଥିଲେ— ନୂତନ ପ୍ରଦେଶ ଗଠନ ବ୍ୟାପାରରେ ସିନ୍ଧୁ ଏବଂ ଓଡ଼ିଶା ସମସ୍ୟା ପ୍ରତ୍ୟେକଟି ସ୍ୱତନ୍ତ୍ର ବୋଲି ମଧ୍ୟ ସେ କହିଥିଲେ:—

"The problem of Orissa differs from that of Sind. Long before the people of Orissa thought of themselves as a separate province their anxiety was Concentrated on the inclusion in to Orissa of adjacent Oriya speaking areas from the Madras presidency and the Oriya states under the political administration of the central provinces, in addition to the Samblpur District which is divided from the rest of Orissa. × × × × The Sambalpur District and the Khariar Zamindari (which in now to the added to Orissa) are no longer so Convenient. A protion of the (Central) province now that the states have been transfered to the control of the Governor General. Orissa is for the most part backward; It contains a large number of aboriginal tribes and it has not really the making of a fullfledged Governor's province. It has much better be treated, if it is to be separated, as a Chief Commissioner's Province, in which case it might be allowed the privilege of a small Legist. ature, similar to that granted to the small Province of coorg, that the better alternative in our opinion would be to leave it for ten years as a part of Bihar and Orissa; and luisur whether it might be more appropriately restored to Bengal × × × the constitution of this small linguistic Province will create a most inconvenient Precedent for door to it a large Telugu speaking area. There are said to be six million people only in Orissa of whom only about five million are oriya speaking; but the telugu area, which has already been given the smal of Andhra Province, Contains no less than eighteen milllion telugu speakers who are anxious to separate them selves from the Tamils of Madras. There are no more reasons for keeping the Oriyas outside Bengal then there are for refusing a similar claim- made by the Telugu speakers of the madras presidency. Further than that, any movement towards creating linguistic areas, if encouraged now, wold had to linguistic claims which would entail the dismember of various provinces.————"

୧୦ ବର୍ଷ ପରେ ୧୯୪୬ ରେ ଦିଲ୍ଲୀଠାରେ କାଉନସିଲ୍ ଅଫ୍ ଷ୍ଟେଟ୍ ପକ୍ଷରୁ ଆନ୍ଧ୍ରପ୍ରଦେଶ ଗଠନ ପାଇଁ ନୀତି ଗୃହୀତ ହେଲା । କାରଣ ୧୯୩୮ ସାଲରେ ମାନ୍ଦ୍ରାଜ ଲେଜିସ୍‌ଲେଟିଭ୍ ଆସେମ୍ବ୍ଲିରେ ଏପରି ଏକ ପ୍ରସ୍ତାବ ଆଗରୁ ଗୃହୀତ ହୋଇସାରିଥିଲା । ୧୯୪୭ ରେ ଦିଲ୍ଲୀର କନ୍‌ଷ୍ଟିଚ୍ୟୁଏଣ୍ଟ ଆସେମ୍ବ୍ଲିରେ ଏକଥା ଉଠିଥିବାରୁ ଡକ୍ଟର ଆମ୍ବେଦକର ତାହା ସପକ୍ଷରେ ମତ ଦେଇଥିଲେ । ପଣ୍ଡିତ ଜବାହାରଲାଲ ନେହେରୁ ଘୋଷଣା କଲେ ଯେ, ଆସନ୍ତା ଶାସନ ସଂଶୋଧନ ବେଳେ ତାହା କାର୍ଯ୍ୟକାରୀ ହେବ । ୧୯୪୮ ରେ ଯେତେବେଳେ ଧରକମିଶନ୍ ଗଠିତ ହେଲା, ସେତେବେଳେ ଏ ପ୍ରଶ୍ନ ତାଙ୍କୁ ବିଚାର ପାଇଁ ଦିଆଗଲା । କିନ୍ତୁ ଭାଷା ଭିତ୍ତିରେ ପ୍ରଦେଶ ଗଠନ କରିବାକୁ ଗଲେ ଭାରତରେ ଘୋର ଜଟିଳ ସମସ୍ୟାମାନ ଦେଖାଦେବ ବୋଲି ଏଥି ପୂର୍ବେ ବିଲାତରେ ସାର ରେଜିନାଲ୍‌ଡ କ୍ରଡ୍‌କ୍ ଯେଉଁ ଚେତାବନୀ ଦେଇଥିଲେ, ତାହା ଧର-କମିଶନଙ୍କୁ ମଧ୍ୟ ପ୍ରଭାବିତ କରିଥିଲା । ତେଣୁ ଭାଷାଭିତ୍ତିରେ ଆନ୍ଧ୍ରପ୍ରଦେଶ ଗଠନ କରିବା ବିରୁଦ୍ଧରେ ସେ ମତ ଦେଲେ ।

ଆନ୍ଧ୍ରମାନେ ହତାଶ ନ ହୋଇ ନିଖିଳ ଭାରତ କଂଗ୍ରେସ କମିଟିରେ ଏ ପ୍ରଶ୍ନ ଆଗତ କରି ତାଙ୍କ ପ୍ରାଦେଶିକ ଦଳ ପକ୍ଷରୁ ପ୍ରଭାବ ପକାଇବା ଫଳରେ ସେଥିରେ ସମାଧାନ ପାଇଁ କଂଗ୍ରେସ ପକ୍ଷରୁ ପଣ୍ଡିତ ନେହେରୁ, ପଟାଭିସୀତାରାମେୟା ଓ ସର୍ଦ୍ଦାର ପଟେଲଙ୍କୁ ମିଶାଇ ଗୋଟିଏ କମିଟି ଗଠିତ ହେଲା । କଂଗ୍ରେସର ସେହି ତିନିଜଣ ମୁଖ୍ୟ ନେତାଙ୍କ ପକ୍ଷରୁ ସ୍ୱତନ୍ତ୍ର ଆନ୍ଧ୍ର ପ୍ରଦେଶ ଗଠନ ପାଇଁ ଅନୁକୂଳ ମତ ପ୍ରକାଶ ପାଇଲା । କିନ୍ତୁ ମାନ୍ଦ୍ରାଜ ନଗର ଉପରେ ଆନ୍ଧ୍ରମାନଙ୍କ ଦାବୀ ଉପେକ୍ଷିତ ହେଲା । ଏଥିରେ ଆନ୍ଧ୍ରର ଜଣେ ଶ୍ରେଷ୍ଠ ନେତା ଟି. ପ୍ରକାଶମ୍ ଘୋର ଆପତ୍ତି ସୃଷ୍ଟି କରିବାରୁ ଆନ୍ଧ୍ର ଓ ତାମିଲମାନଙ୍କ ମଧ୍ୟରେ ତୀବ୍ର ମତଭେଦ ସୃଷ୍ଟି ହେଲା । ଏଥିରେ ଭାରତ ସରକାର ସେହି ସମସ୍ୟାର ଆଲୋଚନା ପାଇଁ ତା ୨୬-୧-୧୯୫୦ରେ ମାନ୍ଦ୍ରାଜ ସରକାରଙ୍କ ପକ୍ଷରୁ ଗୋଟିଏ

'ପାର୍ଟିସନ୍ କମିଟି' ଗଢ଼ିବାକୁ ଉପଦେଶ ଦେଲେ । କମିଶନ୍ ପଡାଗଲା, କିନ୍ତୁ ମୁଖ୍ୟ ଦାବୀ ଆନ୍ଧ୍ର ପ୍ରଦେଶ ଗଠନରେ ବିଳମ୍ବ ହେବାରୁ ଆନ୍ଧ୍ର ପକ୍ଷରୁ ପୋଟି ଶ୍ରୀ ରାମୁଲୁଙ୍କ ଅନଶନ ଓ ମୃତ୍ୟୁ ଘୋର ଉତ୍ତେଜନା ସୃଷ୍ଟି କଲା । ତେଣୁ ପ୍ରଦେଶ ଗଠନ କ୍ଷେତ୍ରରେ ଆନ୍ଧ୍ର (ତେଲୁଗୁଭାଷୀ) ପ୍ରଦେଶ ଓଡ଼ିଶା ପ୍ରଦେଶ ଗଠନର ଦୀର୍ଘ ୧୭ ବର୍ଷ ପରେ ତା ୧୯-୧୨-୧୯୫୨ରିଖ ଦିନ ଜନ୍ମ ଲାଭ କଲା । ଭାରତ ସରକାରଙ୍କ ପକ୍ଷରୁ ପ୍ରଧାନମନ୍ତ୍ରୀ ଲୋକସଭାରେ ଘୋଷଣା କଲେ ଯେ, ତେଲୁଗୁଭାଷୀ ଅଞ୍ଚଳଗୁଡ଼ିକ ଏକତ୍ର କରି ନୂତନ ଆନ୍ଧ୍ର ପ୍ରଦେଶ ଗଠିତ ହେବ । ଆନ୍ଧ୍ରର ଜଣେ ସ୍ୱଦେଶ ପ୍ରେମୀ ନେତାଙ୍କର ଆତ୍ମୋତ୍ସର୍ଗ ଫଳରେ ଏହା ସମ୍ଭବ ହୋଇ ଆନ୍ଧ୍ରକୁ ମାଡ୍ରାଜ ପ୍ରଦେଶରୁ ଅଲଗା କରି ଦିଆଗଲା ଏବଂ ସେଥିର ସୀମା ସମ୍ବନ୍ଧରେ ଏକ ରିପୋର୍ଟ କେନ୍ଦ୍ର ସରକାରଙ୍କୁ ଦେବା ପାଇଁ ଜଷ୍ଟିସ୍ କେ. ଏନ୍. ୱାଞ୍ଚୁଙ୍କୁ ନିଯୁକ୍ତ କରାଗଲା । ୧୯୫୩ ଜାନୁଆରୀ ୩୦ ତାରିଖରେ ତାଙ୍କ ରିପୋର୍ଟ ମିଳିବା ପରେ ସରକାରଙ୍କ ପକ୍ଷରୁ ଅନ୍ୟ ସବୁ କାର୍ଯ୍ୟ କରାଯିବ ବୋଲି ପ୍ରତିଶ୍ରୁତି ମଧ୍ୟ ଦିଆଗଲା ।

ଜଷ୍ଟିସ୍ ୱାଞ୍ଚୁ ୧୯୫୩ ସାଲ ଜାନୁଆରୀ ଦ୍ୱିତୀୟ ସପ୍ତାହରେ ମାଡ୍ରାଜଠାରେ ବିଭିନ୍ନ ଭାଷାଭାଷୀ ସଂଘ ଓ ନେତୃ ସ୍ଥାନୀୟ ଲୋକଙ୍କଠାରୁ ସ୍ମାରକ ପତ୍ରମାନ ଗ୍ରହଣ କଲେ ଏବଂ ସେମାନଙ୍କ ସଙ୍ଗେ ପ୍ରସ୍ତାବିତ ଆନ୍ଧ୍ରପ୍ରଦେଶ ସୀମା-ସରହଦ ସମ୍ପର୍କରେ ଆଲୋଚନା କରିଥିଲେ । ତା ପରେ ସେଥିରେ ବିଭିନ୍ନ ବିବାଦୀୟ ଅଞ୍ଚଳଗୁଡ଼ିକ ଗସ୍ତ କରି ତାଙ୍କ ନିଜମତ କେନ୍ଦ୍ର ସରକାରଙ୍କଠାରେ ଉପସ୍ଥାପିତ କଲେ । ଏ ସମ୍ପର୍କରେ ସେ ଆନ୍ଧ୍ରପ୍ରଦେଶର ୧୨ଟି ଜିଲ୍ଲା, ଯାହାକି ମାଡ୍ରାଜଠାରୁ କଟାଯାଇ ଆନ୍ଧ୍ରପ୍ରଦେଶ ଗଠିତ ହେଲା, ସେହି ଅଞ୍ଚଳଗୁଡ଼ିକ ସମ୍ବନ୍ଧରେ ରିପୋର୍ଟ ଦେବାକୁ ଯାଇ ଆନ୍ଧ୍ର ଏବଂ ଓଡ଼ିଶାର ବିବାଦୀୟ ସୀମାନ୍ତ ଅଞ୍ଚଳ ସଂପର୍କରେ ନିମ୍ନ ପ୍ରକାରେ ଜଷ୍ଟିସ୍ ୱାଞ୍ଚୁ ମତ ଦେଇଥିଲେ—

"There is a claim that certain areas in the District of Ganjam and Koraput in the Orissa State are predominantly Telugu and should be joined in the new state. As against this, there is a claim of the Oriyas living in parts of Srikakulam district that certain contiguous parts are predominantly Oriya speaking and should be joined to the Orissa state. It is not within my terms of reference to go in to these boundary disputs in detail. I, therefore, content myself by indicating these disputes and have accepted the present boundaries for my purpose. I feel however, that it would be better to wait for some time till the new state has stabilised so that the imotional upheavel, Which is vistble at present, settles down. If a Boundary Commission were to be appointed atonce before the new state has settled down, the excitement will continue and the process of organisation of the new state will be starded........"*

"ଅର୍ଥାତ୍ ପରିଶେଷରେ ଆନ୍ଧ୍ରମାନଙ୍କ ପକ୍ଷରୁ ଦାବୀ କରାଯାଇଛି ଯେ, ଓଡ଼ିଶା କ୍ଷେତ୍ରରେ ଥିବା ଗଞ୍ଜାମ ଜିଲ୍ଲା ଓ କୋରାପୁଟ ଜିଲ୍ଲାର କେତେକ ଅଞ୍ଚଳ ପ୍ରାଧାନ୍ୟ ଭାବେ ତେଲୁଗୁ ଅଞ୍ଚଳ । ସେହି ଅଞ୍ଚଳଗୁଡ଼ିକ ନୂତନ ଆନ୍ଧ୍ର ପ୍ରଦେଶରେ ରହିବା ଆବଶ୍ୟକ । ଏହି ମତ ବିରୁଦ୍ଧରେ ଶ୍ରୀକାକୁଲମ୍ ଜିଲ୍ଲାର ଓଡ଼ିଆମାନେ ଦାବୀ କରନ୍ତି ଯେ, ସେହି ଜିଲ୍ଲାର କେତେକ ସଂଲଗ୍ନ ଓଡ଼ିଆ ବିବାଦୀୟ ସୀମା ସମସ୍ୟା ବିସ୍ତୃତ କରିବା କ୍ଷମତା ମୋତେ ଦିଆଯାଇ ନାହିଁ । ତେଣୁ ସେହି ସୀମା ସରହଦଗୁଡ଼ିକ ବର୍ତ୍ତମାନ ଅଛି, ସେ ଦୃଷ୍ଟିରୁ ମୁଁ ବିବାଦୀୟ ସମସ୍ୟାଗୁଡ଼ିକ ମୋର ପରିସରଭୁକ୍ତ ବିଷୟ ଗ୍ରହଣ କରି ସ୍ଥିର କରିଛି" ।

ଜଷ୍ଟିସ୍ ୱାଞ୍ଚୁ ଏତିକି କହି ସାରି ତେଲୁଗୁମାନଙ୍କୁ ଉପଦେଶ
ଦେଇଥିଲେ—

"ଯାହାହେଉ, ମୁଁ ମନେ କରେ ଯେ ସେମାନେ (ଆନ୍ଧ୍ରମାନେ)
ନୂତନ ପ୍ରଦେଶ ଗଠିତ ହୋଇ ତାହା ସୁଦୃଢ଼ ହେବାପାଇଁ
ଅପେକ୍ଷା କରନ୍ତୁ । ତା'ହେଲେ ବର୍ତ୍ତମାନ ଦେଖାଯାଉଥିବା ଉତ୍ତେ
ସଂଘର୍ଷ ପ୍ରଶମିତ ହୋଇଯିବ । ଅଥବା ଯଦି ନୂତନ ପ୍ରଦେଶ
ପୂର୍ବରୁ ତୁରନ୍ତ ଏକ ସୀମା ନିର୍ଦ୍ଧାରଣ କମିଶନ ନିଯୁକ୍ତ ହୁଏ, ତା'
ଉତ୍ତେଜନା ବଢ଼ିବ ଓ ନୂତନ ପ୍ରଦେଶର ଗଠନ କାର୍ଯ୍ୟରେ ବା
ହେବ ।"

ଜଷ୍ଟିସ୍ ୱାଞ୍ଚୁଙ୍କର ଏହି ଉପଦେଶ ସୂଚନାରେ ତେଲୁଗୁ ଜାତି
କରିଥିଲେ । ସେମାନେ ଆନ୍ଧ୍ର ପ୍ରଦେଶ ଗଠନ ପୂର୍ଣ୍ଣ ହେବା ଯାଏ
କଲେ ସତ୍ୟ; କିନ୍ତୁ ସେତେବେଳେ କଂଗ୍ରେସ ଦଳ ମଧ୍ୟରେ ତାଙ୍କ
ଓ ପ୍ରତିପତ୍ତି ଓଡ଼ିଆଙ୍କ ଅପେକ୍ଷା ଯଥେଷ୍ଟ ଊର୍ଦ୍ଧ୍ୱରେ ଥିଲା । ତେଣୁ
ଭାରତରେ କଂଗ୍ରେସ ସରକାରଙ୍କ ଉପରେ ପ୍ରଭାବ ପକ
୧୯୫୪ ସାଲରେ ପ୍ରାଦେଶିକ ସୀମାଗୁଡ଼ିକ ବିଚାର କରିବ
ଷ୍ଟେଟ୍ସରିଅର୍ଗାନାଇଜେଶନ କମିଶନ (State Reorgan
Commission) ଭାରତ ସରକାରଙ୍କ ପକ୍ଷରୁ ଗଠିତ ହୋଇ ଆ
ଓଡ଼ିଶାର ସୀମା ସମ୍ବନ୍ଧରେ ସ୍ଥାନୀୟ ଅନୁଷ୍ଠାନଗୁଡ଼ିକ ପକ୍ଷରୁ
ସ୍ମାରକ ପତ୍ରମାନ ଗ୍ରହଣ କରାଗଲା । ଦକ୍ଷିଣ ଓ
ପାରଳାଖେମୁଣ୍ଡିର ହିତୈଷିଣୀ ସମାଜ ପକ୍ଷରୁ କମିଶନ୍ ସମ୍ମୁଖରେ
ପତ୍ର ଓ ସାକ୍ଷ ଦେବା ଭାର ମୋତେ ଦିଆଗଲା । ଆ
ଖରଦ୍ରାବାଦରୁ ଅଧ୍ୟାପକ ସୀତାପତିଙ୍କୁ ଡକାଇ ଆଣି ପାରଳାଖେ
ତାଙ୍କ ପକ୍ଷର ଦାବୀ ସାବ୍ୟସ୍ତ କଲେ । ଉଭୟ ପକ୍ଷରୁ ଦିଆ
ସାକ୍ଷ୍ୟ ଶୁଣିଲା ପରେ କମିଶନ୍ ସ୍ପଷ୍ଟ ବୁଝିପାରିଲେ ଯେ, ଆ
ଦାବୀ ମୂଲ୍ୟହୀନ । ତେଣୁ ବର୍ତ୍ତମାନ ଯେଉଁ ସୀମା ୧୯୩୬
ଓଡ଼ିଶାର ଦକ୍ଷିଣସୀମା ରୂପେ ନିର୍ଦ୍ଦେଶ କରାଯାଇଛି, ସେଥି
ବ୍ୟତିକ୍ରମ ହେବା ଉଚିତ ନୁହେଁ ବୋଲି କମିଶନ୍ ତାଙ୍କ ରି
ଉଲ୍ଲେଖ କରିଦେଲେ ।

ଏହାପରେ ଆନ୍ଧ୍ରମାନଙ୍କ ପକ୍ଷରୁ ଦକ୍ଷିଣ ଓଡ଼ିଶାରେ ଆଉ
ନୂତନ କୌଶଳ ଦୀର୍ଘ ତିରିଶ ବର୍ଷରୁ ଅଧିକ କାଳ ହେଲା ପ୍ରଚ
ସେମାନଙ୍କ ସ୍ୱାର୍ଥରକ୍ଷା କରି ଆସୁଛି । ଏଥିରେ ଇନ୍ଧନ
ଦେଉଛନ୍ତି । ଓଡ଼ିଶାର କେତେକ ଦେଶଦ୍ରୋହୀ ଓଡ଼ିଆ
କୋରାପୁଟ ପ୍ରଭୃତି ବିଚ୍ଛିନ୍ନ ଅଞ୍ଚଳରେ ତେଲୁଗୁମାନଙ୍କୁ ପ୍ରଶ୍ର
ମନୋଭାବ ଫଳରେ ଓଡ଼ିଶାର ଏହି ସୀମାନ୍ତ ଅଞ୍ଚଳରେ ଜୀବି
ପାଇଁ କୌଣସି ଶିଳ୍ପ କିମ୍ବା ବାଣିଜ୍ୟ ସଂପର୍କୀୟ ସୁବିଧା ନ ଥି
ସଂଖ୍ୟାରେ ବୁଦ୍ଧିଜୀବୀ ଶିକ୍ଷିତ ଓଡ଼ିଆମାନେ ଏଠାରୁ ଉଠିଯା
ଓଡ଼ିଶାରେ ବସବାସ କରି ରହିଲେଣି । ଓଡ଼ିଆମାନେ ପୂର୍ବ
କରୁଥିବା ବହୁତ ଗ୍ରାମ ଏବେ ଓଡ଼ିଆ ଶୂନ୍ୟ ହେଲେଣି ଓ
ତେଲୁଗୁମାନେ ବାସ କରି ଜମିବାଡ଼ି ଚାଷବାସ କରି ସୁଖରେ
ଆନ୍ଧ୍ରର ଶ୍ରୀକାକୁଲମ୍ ଓ ବିଜୟ ନଗର ଦୁଇଟି ଜିଲ୍ଲାରେ ରହିଥିବ
ଜନସଂଖ୍ୟା ଦକ୍ଷିଣ-ଗଞ୍ଜାମର ସେହି ଜନଶୂନ୍ୟ ଅଞ୍ଚଳଗୁଡ଼ି
କରିବାରେ ଲାଗିଛି । କେବଳ ସେତିକି ନୁହେଁ— ଏ ଅଞ୍ଚଳ
ବାଣିଜ୍ୟ ବ୍ୟବସାୟ କ୍ଷେତ୍ରଗୁଡ଼ିକ ମଧ୍ୟ ଓଡ଼ିଶା ସରକା
କୌଶଳରେ ମନାଇ ସେମାନେ ଅଧିକାର କରି
କୋରାପୁଟଠାରୁ ବ୍ରହ୍ମପୁର ମଧ୍ୟରେ ଉଭୟ ଭାଷାଭାଷୀ
ପରିସ୍ଥିତିର ଏକ ସମୀକ୍ଷା କଲେ ଏଥିରେ ସତ୍ୟତା ପ୍ରମାଣି
ବଂଶଧାରା ନଦୀରୁ ଲୁଚପୂର୍ବ ପାରଳାଖେମୁଣ୍ଡି ଜମିଦାରୀ ଗଙ୍ଗା
ଯେଉଁ ବିରାଟ ନଦୀବନ୍ଧ ଆନ୍ଧ୍ର ସରକାର ନୂତନ ଭାବରେ ନିର୍ମି
ତାହା ସମଗ୍ର ଶ୍ରୀକାକୁଲମ୍ ଜିଲ୍ଲାକୁ ସୁଜଳା ସୁଫଳା କରି ଗଢ଼ି
ବଂଶଧାରା ନଦୀର ତିନି ଚତୁର୍ଥାଂଶ ଭାଗ ଓଡ଼ିଶାରେ ପ୍ରବାହି
ଅଞ୍ଚଳର ଆଖୁଧରା ରୋଗ ପରି ତାହା କେବେ କେବେ ବନ୍ୟା

ଓଡ଼ିଶାର ଗ୍ରାମ ଓ ଘରଦ୍ୱାର ଉଜାଡ଼ି ନିଏ । । ବାସ୍ତବରେ ଦୁଇ ଭାଇ ମଧ୍ୟରେ ଓଡ଼ିଆ ଗଛ ବାଣ୍ଟି ଫଳ ଅଂଶ ଜଣକ ଭାଗରେ ଓ ତଳ ଅଂଶ ଆଉ ଜଣକ ଭାଗରେ ବଣ୍ଟା ହେବା ନ୍ୟାୟରେ ବଂଶଧାରାର ଜଳ ଓଡ଼ିଆ ଓ ତେଲୁଗୁ ଦୁଇ ଭାଇଙ୍କ ମଧ୍ୟରେ ବଣ୍ଟା ହୋଇଯାଇଛି । ଏଥିର ନିରାକରଣ ପାଇଁ ସ୍ଥାନୀୟ ଓଡ଼ିଆମାନେ ସ୍ୱତନ୍ତ୍ର 'ଗଜପତି-ଜିଲ୍ଲା' ଦାବୀ କରିଥିଲେ । ସରକାରଙ୍କ ପକ୍ଷରୁ ନିଯୁକ୍ତ ଏକ କମିଟି ଏଠାରେ ସର୍ବବିଧ ଅବସ୍ଥା ଓ ପ୍ରଶାସନିକ କ୍ଷେତ୍ରରେ ଶିଥିଳତା ଲକ୍ଷ୍ୟ କରି ନୂତନ ଜିଲ୍ଲା ଗଠନ କ୍ଷେତ୍ରରେ 'ଗଜପତି ଜିଲ୍ଲା'କୁ ସର୍ବାଗ୍ରେ ସମର୍ଥନ କରିଥିଲେ । କିନ୍ତୁ କେତେକ ସ୍ୱାର୍ଥପର ନେତାଙ୍କ ହସ୍ତକ୍ଷେପ ହେତୁ ତାହା ଅଦ୍ୟାବଧି କାର୍ଯ୍ୟକାରୀ ହେଲା ନାହିଁ ।

ବର୍ତ୍ତମାନ ଯେଉଁ ଅବସ୍ଥାରେ ଓଡିଶାର ବେହେଳିତ ଅଞ୍ଚଳ ସମେତ ବିଭିନ୍ନ ଓଡ଼ିଶାରେ ଓଡ଼ିଆମାନଙ୍କ ଦୀନ-ହୀନତା ପ୍ରକଟିତ ହେଉଛି, ସମ୍ଭବତଃ ଏପରି ଅବସ୍ଥା ସୃଷ୍ଟି ହେବା ପାଇଁ ମୁଖ୍ୟତଃ ତତ୍କର ତେଲୁଗୁ ନେତୃବର୍ଗଙ୍କ ଅଦୃଶ୍ୟ ହସ୍ତ ଖେଳା କରୁଛି । ଏ ଲେଖକ ଏବଂ ଦକ୍ଷିଣ ଓଡ଼ିଶାର ବହୁ ଚିନ୍ତାଶୀଳ ବ୍ୟକ୍ତି ଏଥିର ତାତ୍ପର୍ଯ୍ୟ ଆମ ସରକାରଙ୍କୁ ହୃଦୟଙ୍ଗମ କରାଇବାକୁ ଚେଷ୍ଟାକରି, କିଛି ଫଳ ପାଇ ନାହାନ୍ତି । ପାରଳାଖେମୁଣ୍ଡି ସହିତ ଓଡ଼ିଶା ଭିତର ଦେଇ ଗୋଟିଏ ରାସ୍ତା ମଧ୍ୟ ଏ ପର୍ଯ୍ୟନ୍ତ ତିଆରି ହୋଇ ପାରିଲା ନାହିଁ । ପାରଳାଠାରୁ ଗୁଣ୍ପୁର ମଧ୍ୟରେ ବହୁକାଳରୁ ମହାରାଜାଙ୍କ ଅମଳରେ ସୃଷ୍ଟି ହୋଇଥିବା ଛୋଟିଆ ରେଳଗାଡ଼ିକୁ କୋରାପୁଟର ରାୟଗଡାଠାରୁ ଗୁଣ୍ପୁର ଦେଇ ପଲାସା ପର୍ଯ୍ୟନ୍ତ ଯଦି ବ୍ରଡ଼ଗେଜରେ ପରିଣତ କରାଯାଆ, ତେବେ ସୁନାବେଡାର ଦାମନଯୋଡିଠାରେ ପ୍ରତିଷ୍ଠିତ ଆଲୁମିନିୟମ୍ ପ୍ରକଳ୍ପ ସହିତ ଓଡ଼ିଶାର ସଂଯୋଗ ପାଇଁ ତାହା ଗୋଟିଏ ନିକଟତମ ରେଳପଥ ହୋଇପାରନ୍ତା । ପଲାସା – ପାରଳାଖେମୁଣ୍ଡି ରେଳପଥ ପାଇଁ କେତେବର୍ଷ ତଳେ ମାପ-ଚୁପ ହୋଇଥିବା ବୋଲି ଆମେ ଜାଣୁ । କିନ୍ତୁ ତାହା କାର୍ଯ୍ୟକାରୀ ହେଲେ ଏଠାରେ ବହୁ ତେଲୁଗୁ ବସ୍‌ମାଲିକଙ୍କ ସ୍ୱାର୍ଥରେ ବାଧା ସୃଷ୍ଟି ହେବ । ତେଣୁ ତାହା ଏକ ବିସ୍ମୃତ ପର୍ଯ୍ୟାୟ ହୋଇ ରହିଲା । ନେରଡ଼ି ଗ୍ରାମଠାରେ ବଂଶଧାରାର ଏକ ଜଳଭଣ୍ଡାର ପ୍ରକଳ୍ପ କାର୍ଯ୍ୟକାରୀ ହୋଇଥିଲେ ତାହା କେତେକ ପରିମାଣରେ ଓଡ଼ିଶାର କୃଷକମାନଙ୍କ ଦୁର୍ଦ୍ଦଶା ମେଣ୍ଟାଇ ପାରନ୍ତା । ସେହି ପ୍ରକଳ୍ପ ସମ୍ବନ୍ଧରେ ଆଲୋଚନା ହୋଇ ତାହା ସରକାରଙ୍କ ଫାଇଲ ଭିତରେ ଲୁଚି ରହିଲା । ବାଲିମେଳାଠାରେ ଏବଂ ମାଲକାନ୍‌ଗିରିର ପ୍ରାକୃତିକ ସୁବିଧା ଗ୍ରାସ କରିବାକୁ ଆନ୍ଧ୍ର ପ୍ରଦେଶ ପକ୍ଷରୁ ଯେଉଁ ଜଳ-ବିଦ୍ୟୁତ୍ ପ୍ରକଳ୍ପ କ୍ଷେତ୍ରରେ ହଟଚମଟ ସୃଷ୍ଟିଛି, ତାହା ଆମକୁ ଅଧିକ ବିପଦର ଭିତରେ ପକାଇ ଦେବ । ସ୍ଥଳରେ କହିବାକୁ ଗଲେ ଆସ ବଡ଼ଳ ନାୟମାରା ବନହୀନେନ ଲକ୍ଷ୍ୟ ଯଥାର୍ଥ ଆମକୁ ସ୍ମରଣ କରାଇ ଦେଉଛି । ଓଡ଼ିଶା ସରକାର ତାଙ୍କ ସୀମାନ୍ତ ଅଞ୍ଚଳ ଗୁଡ଼ିକର ସୁରକ୍ଷା ପାଇଁ ଦ୍ରୁତପଦକ୍ଷେପ ନ ନେଲେ, ଇତିହାସ ତାଙ୍କୁ କଦାପି କ୍ଷମା ଦେବ ନାହିଁ ।


* Vol. I (Para ii) proceedings, P. P. 69-70

* Vol. II, Para 38

* Ibid, P. 264

* Ibid, P. 538

* Census Report of the Madras presidency, 1931, P. 289.

* Ibid, P. 444-45

* Report of Hon'ble Mr. Justice Wanchoo on the formation of Andhra State (1953) P. 4.



ଚିତ୍ରକର ଲେନ୍
ପାରଳାଖେମୁଣ୍ଡି, ଗଞ୍ଜାମ




ପଥର ଯେଉଁଠି କଥା କହେ...

# ଜାତୀୟ ସଂହତି

ଡଃ ଭାସ୍କର ...

ଜାତୀୟ ସଂହତି ହେଉଛି ଏକ ଗୁରୁତ୍ୱପୂର୍ଣ୍ଣ ବିଷୟ ଏବଂ ଏହା ଦେଶର ସମସ୍ତଙ୍କ ସହ ସଂପୃକ୍ତ । ବର୍ତ୍ତମାନ ଆମ ଦେଶର ବିଚ୍ଛିନ୍ନତା ବିଭେଦକାରୀ ଶକ୍ତି ରୂପେ ପ୍ରତିଫଳିତ ହୋଇ ଜାତୀୟ ସଂହତି ଏବଂ ଏକତାକୁ ବ୍ୟାହତ କରିଛି । ଆତତାୟୀ ହାତରେ ପ୍ରଧାନମନ୍ତ୍ରୀ ଶ୍ରୀମତୀ ଇନ୍ଦିରା ଗାନ୍ଧୀଙ୍କ ହତ୍ୟା ସମଗ୍ର ବିଶ୍ୱକୁ ସ୍ତମ୍ଭୀଭୂତ କରିଛି । ଏହି ବିଭେଦକାରୀ ଶକ୍ତିଗୁଡ଼ିକୁ ନିରାକରଣ କରିବା ହେଉଛି ଏକ ଜାତୀୟ ଆବଶ୍ୟକତା । ଦଳମତ ନିର୍ବିଶେଷରେ ଜାତୀୟ ଏକତାକୁ ଗୁରୁତ୍ୱପୂର୍ଣ୍ଣ ସ୍ଥାନ ଦେବା ଏକାନ୍ତ ଆବଶ୍ୟକ । ବିଚ୍ଛିନ୍ନତା ଏବଂ ବିଭେଦ ପୂର୍ବରୁ ଆମ ଦେଶରେ ଏକତା ଥିଲା ବୋଲି ସ୍ପଷ୍ଟ ରୂପେ ପ୍ରମାଣିତ ହୁଏ । ଅବଶ୍ୟ ବିଶ୍ଳେଷଣ ମାଧ୍ୟମରେ କହିବା କଷ୍ଟ ଯେ କେଉଁଠାରେ ଏକତାର ନୀତିଗୁଡ଼ିକ ନିର୍ଦ୍ଦିଷ୍ଟ ଭାବରେ ଅନ୍ତର୍ନିହିତ । ଗୋଟିଏ ଫୁଲକୁ ଅନାୟାସରେ ପରୀକ୍ଷାଗାରରେ ଅନୁଧ୍ୟାନ କରି ଏହାର ଅଂଶ ବିଶେଷ ବାହାର କରାଯାଇ ପାରେ । କିନ୍ତୁ ଏକ ଜାତିର ନୈତିକ ଏକତା ପରୀକ୍ଷାଗାରର ଅନୁଶୀଳନର ବିଷୟ ନୁହେଁ । ସ୍ୱାଧୀନତା ପୂର୍ବରୁ ବ୍ରିଟିଶ ଶାସକମାନେ ଭାରତକୁ ଏକ ଏକତାବଦ୍ଧ ରାଷ୍ଟ୍ରରୂପେ ଗ୍ରହଣ କରିବାକୁ ପ୍ରସ୍ତୁତ ନଥିଲେ । କିନ୍ତୁ ସ୍ୱାଧୀନତାର ସୂର୍ଯ୍ୟୋଦୟ ପରେ ସମଗ୍ର ଭାରତ ବର୍ଷ ଗୋଟିଏ ସମ୍ବିଧାନ ଏବଂ ଗୋଟିଏ ପତାକା ପ୍ରବର୍ତ୍ତନ କରି ଏକ ସାର୍ବଭୌମ ଗଣତାନ୍ତ୍ରିକ ସାଧାରଣତନ୍ତ୍ର ରୂପେ ବିଶ୍ୱଦରବାରରେ ପରିଚିତ ହେଲା । ତେଣୁ ଆମର ବିଚ୍ଛିନ୍ନତା, ଆଞ୍ଚଳିକତା, ପ୍ରାଦେଶିକତା କିମ୍ବା ଅନ୍ୟାନ୍ୟ ବିଭେଦକାରୀ ଶକ୍ତିଗୁଡ଼ିକ କେବଳ ଉପର ଦେଖାଣିଆ ବୋଲି କୁହାଯାଇପାରେ ।

ଜାତୀୟ ଏକତାକୁ ଜାତୀୟ ସଂହତି ବୋଲି ବର୍ଣ୍ଣନା କରାଯାଇଥାଏ । ଦେଶର ଜନସାଧାରଣ ନିଜକୁ ଏକ ଏବଂ ଅବିଭକ୍ତ ମନେକଲେ ଜାତୀୟ ଏକତାର ସୂତ୍ରପାତ ହୁଏ ।

ଏହା ବାହ୍ୟିକ କିମ୍ବା ସାଙ୍ଗଠନିକ ନ ହୋଇ ଅଧିକ ...
ମନସ୍ତାତ୍ତ୍ୱିକ । ସାଂସ୍କୃତିକ ଏକତା ଏବଂ ...
ପ୍ରଣାଳୀ ସଂହତିର ସୂତ୍ରପାତ କରେ । ଭୌଗୋ...
ଅନୁରୂପ ଐତିହାସିକ ଅଭିଜ୍ଞତା, ଧର୍ମ, ଭାଷା, ...
ସ୍ୱାର୍ଥ ଏବଂ ଏକ ସାଧାରଣ ରାଜନୈତିକ ...
ସନସ୍ତାତ୍ତ୍ୱିକ ଚିନ୍ତାଧାରାକୁ ଉପଜୀବ୍ୟ ଓ ତ୍ୱରାନ୍ୱିତ ...
କିନ୍ତୁ ଇହୁଦୀମାନେ (Jews) କେବେହେଲେ ...
ଇତିହାସ ଅଥବା ଭାଷାଗତ ଐକ୍ୟ ମାଧ୍ୟମ...
ହୋଇ ନଥିଲେ । ସୁଇଜରଲ୍ୟାଣ୍ଡର ଅଧିବା...
ସେହିପରି ଭାଷାଗତ ଏକତା କିମ୍ବା ସାଂସ୍କୃତି...
କେବେହେଲେ ନଥିଲା । ଯୁକ୍ତରାଷ୍ଟ୍ର ଆମେରିକାର ...
ମାନେ ବିଭିନ୍ନ ଦେଶ ଏବଂ ବିଭିନ୍ନ ସଂସ୍କୃତିରୁ ଆ...
ରୂପେ ପରିଚିତ । ପ୍ରତ୍ୟେକ ମାର୍କିନ ଅଧିବା...
ଜୀବନଯାତ୍ରା ପ୍ରଣାଳୀ ମାଧ୍ୟମରେ ଏକତାବଦ୍ଧ ...
କରନ୍ତି ।

ଭାରତ ହେଉଛି ବହୁ ଧର୍ମ, ବହୁ ଜାତି ...
ଭାଷାଭାଷୀ ଅଧିବାସୀଙ୍କର ଦେଶ । ନାନାବିଧ ...
ଏବଂ ସଂସ୍କୃତି ଭାରତର ବିଭିନ୍ନ ଅଞ୍ଚଳରେ ...
ଭାରତର ରୀତି, ଧର୍ମ ଏବଂ ଭାଷାଗୁଡ଼ିକ ଏପରି...
ବ୍ୟାପକ ଯେ ବିଦେଶୀ ପରିବ୍ରାଜକମାନେ ...
ସହାବସ୍ଥାନ ଦେଖି ଆଶ୍ଚର୍ଯ୍ୟାନ୍ୱିତ ହୋଇଥାନ୍ତି । ...
ମଧ୍ୟରେ ଖାଦ୍ୟ, ପୋଷାକ ଏବଂ ରୂପରେଖରେ ...
ସ୍ପଷ୍ଟରୂପେ ପ୍ରକଟିତ । ତଥାପି ଆମେ ସମସ୍ତେ ...
ବୋଲି ଗର୍ବ କରିଥାଉ । ଥରେ ଜଣେ ବିଦେଶୀ ...
ଭାରତ ଭ୍ରମଣସାରି ଫେରିଲାବେଳେ ମତବ୍ୟକ୍ତ ...
ଯେ ଭାରତରେ ସେ ପଞ୍ଜାବୀ, ତାମିଲ, କେରଳୀ ...
ପ୍ରଭୃତି ବିଭିନ୍ନ ଲୋକଙ୍କୁ ଭେଟିଥିଲେ । କିନ୍ତୁ ...

ହେଲେ ନିଜକୁ ଭାରତୀୟ ବୋଲି ପରିଚୟ ଦେଉ ନଥିଲେ । ଏହି ଉଦାହରଣର ତାତ୍ପର୍ଯ୍ୟ ହେଉଛି ଭାରତୀୟମାନେ ବିଭିନ୍ନ ଆଞ୍ଚଳିକ, ପ୍ରାଦେଶିକ ତଥା ଭାଷାଗତ ବିଭିନ୍ନତା ଦ୍ୱାରା ଏପରି ଭାବରେ ବିଭକ୍ତ ଯେ ନିଜକୁ ଭାରତୀୟ ବୋଲି କେହି ଜଣେ ହେଲେ ପରିଚୟ ଦେଇ ନଥାନ୍ତି ।

## ଏକତାର ଉତ୍ସ

ଭାରତର ବାହ୍ୟିକ ଏକତା ଭୌଗୋଳିକ ସ୍ଥିତି ଯୋଗୁ ଅନେକ ମାତ୍ରାରେ ସମ୍ଭବ ହୋଇଛି । ଭାରତରେ କେବେହେଲେ ଗୋଟିଏ ଭାଷା, ଗୋଟିଏ ଜାତି କିମ୍ବା ଗୋଟିଏ ଧର୍ମ ପ୍ରଚଳିତ ନଥିଲା । ଅର୍ଥନୈତିକ ଦୃଷ୍ଟିରୁ ଭାରତ ବିଭିନ୍ନ ଅଞ୍ଚଳରେ ବିଭକ୍ତ । ବାସ୍ତବରେ ଅର୍ଥନୈତିକ ଏକତା ହେଉଛି ଏକ ଆଧୁନିକ ଚିନ୍ତାଧାରା । ଏହି ସମସ୍ତ ବିଭିନ୍ନତା ସତ୍ତ୍ୱେ ଭାରତରେ ଜାତୀୟ ଏକତା ଏବଂ ସଂହତି ବହୁ ପରିମାଣରେ ପ୍ରଚଳିତ । ବହୁ ସଂଖ୍ୟକ ଭାରତୀୟ ଶାସକ ଅଥବା ବିଦେଶୀ ବିଜେତାମାନେ ଭାରତର ଏକତାକୁ ସ୍ୱୀକାର କରିଛନ୍ତି । ପ୍ରତ୍ୟେକ ଶାସକ ମତବ୍ୟକ୍ତ କରିଛନ୍ତି ଯେ ରାଜନୀତିକ ଏକତା ବିନା ଭାରତରେ ଶାନ୍ତି ଏବଂ ପ୍ରଗତି ସମ୍ଭବ ନୁହେଁ । ତା' ସହିତ ଆମର ଋଷି, ମୁନି, ଦାର୍ଶନିକ, ଲେଖକ, କବି, ଆଇନଜ୍ଞ ଏବଂ ପ୍ରାଚୀନ ମନିଷୀମାନେ ସମଗ୍ର ଭାରତବର୍ଷରେ ଭାବଗତ ଏବଂ ଆଧାତ୍ମିକ ଏକତା ଆନୟନ ନିମିତ୍ତ ବହୁବିଧ ଅବଦାନ କରିଯାଇଛନ୍ତି । ସେମାନେ ସମସ୍ତେ ଗୁଣୀ ଅଧିକେ ବ୍ୟକ୍ତିତ୍ୱଥିଲେ ଏବଂ ସେହି ଅନୁସାରେ ଭାରତର ସର୍ବତ୍ର ସେମାନେ ପୂଜ୍ୟ ବିବେଚିତ ହେଉଥିଲେ । ଶ୍ରୀ ଶଙ୍କରାଚାର୍ଯ୍ୟ ନିଜର ଆଧ୍ୟାତ୍ମିକ ସାମ୍ରାଜ୍ୟବାଦ ଦେଶସାରା ପ୍ରତିଷ୍ଠାକରି ବିଭିନ୍ନ ଅଞ୍ଚଳରେ ହିନ୍ଦୁ ଧର୍ମର ପ୍ରତିଷ୍ଠା କରି ଧର୍ମ ପୀଠର ରଚିଥିଲେ । ପୂର୍ବାଞ୍ଚଳରେ ପୁରୀ, ଉତ୍ତରାଞ୍ଚଳରେ ବଦ୍ରୀନାଥ, ପାଶ୍ଚାତ୍ୟରେ ଦ୍ୱାରକା ଏବଂ ଦାକ୍ଷିଣାତ୍ୟର ଶୃଙ୍ଗେରୀ ଏବଂ କାଞ୍ଚି ହେଉଛି ଏହି ଅବଦାନର ଜ୍ୱଳନ୍ତ ଉଦାହରଣ । ଜଣେ ହିନ୍ଦୁ ଦେଶର ଉପରୋକ୍ତ ଏହି କ୍ଷେତ୍ର ପରିଭ୍ରମଣ କଲାପରେ ଯାଇ ତାହାର ଧାର୍ମିକ ଭ୍ରମଣ ସଂପୂର୍ଣ୍ଣ ହୁଏ । ଯେ କୌଣସି ଭାରତୀୟ ଭାରତର ଯେ କୌଣସି ଅଞ୍ଚଳରେ ପରିଚିତ ଲୋକ ପରି ବ୍ୟବହାର କରେ । ଉତ୍ତର ଭାରତରେ କେରଳୀ ଏବଂ ମାଦ୍ରାଜୀମାନେ ମଧ୍ୟ ଦେଖିବାକୁ ମିଳନ୍ତି । ଗଙ୍ଗା ନଦୀରେ ସ୍ନାନ କରିବା ପାଇଁ ସେମାନଙ୍କର ବ୍ୟାକୁଳତା ଦେଖିବାର କଥା । ସେଥିପାଇଁ ଦୃଢ଼ ଭାବରେ କୁହାଯାଏ ଯେ ଭାରତର ବିଭିନ୍ନତା ଆଶ୍ଚର୍ଯ୍ୟଜନକ କିନ୍ତୁ ଅଧିକ ଆଶ୍ଚର୍ଯ୍ୟଜନକ ହେଉଛି ବିଭିନ୍ନତା ମଧ୍ୟରେ ଏକତାର ସ୍ଥିତି" ( unity In diversity ) ମନୋରମ ମନ୍ଦିର, ଗୀର୍ଜା, ମସଜିଦ୍, ଗୁମ୍ଫା ପ୍ରଭୃତିରେ ବିଭିନ୍ନ ଧର୍ମର ନାନାବିଧ କଳା ଏବଂ ଭାସ୍କର୍ଯ୍ୟରୁ ଭାରତର ସାଂସ୍କୃତିକ ଗୌରବର ପ୍ରମାଣ ମିଳେ । କୋଣାର୍କ, ଏଲିଫେଣ୍ଟା, ଏଲୋରା, ଅଜନ୍ତା, ତାଜମହଲ, କୁତବମିନାର ଏବଂ ବୁଲନ୍ ଦରୱାଜା ପ୍ରଭୃତି ଏହିସବୁର ଜ୍ୱଳନ୍ତ ପ୍ରମାଣ । ସମଗ୍ର ଭାରତୀୟମାନେ ଏହାକୁ ନେଇ ଗର୍ବ କରନ୍ତି ଏବଂ ଏଗୁଡ଼ିକୁ ଜାତୀୟ ସଂପତ୍ତି ରୂପେ ସମ୍ମାନ ଦେଇଥାନ୍ତି । ଏଥିରେ ଏକ ଭାରତୀୟ ଭାବମୂର୍ତ୍ତି ସ୍ପଷ୍ଟ ରୂପେ ପ୍ରକଟିତ । ଭାରତର ଜଣେ ମୁସଲମାନ ଅନୁଭବ କରେ ଯେ ତାର ପ୍ରାଣକେନ୍ଦ୍ର ହଉଛି ମକ୍କା ଏବଂ ମଦିନା କିନ୍ତୁ ମକ୍କା ବା ମଦିନା ପରିଭ୍ରମଣ କଲେ ସେଠାରେ ସେ ଭାରତୀୟ ବା ହିନ୍ଦୁ ହିସାବରେ ବିବେଚିତ ହୋଇଥାଏ । ଅପର ପକ୍ଷରେ ସମସ୍ତ ଭାରତୀୟମାନେ ନିଜକୁ ଏକ ଏବଂ ଅବିଭକ୍ତ ମନେ କରନ୍ତି, ସମଗ୍ର ଭାରତବର୍ଷକୁ ନିଜର ଘର ରୂପେ ବିଚାରିଥାନ୍ତି । ତା' ସହିତ ଆମର ଲେଖକ, କବି, କଳାକାର, ବୈଜ୍ଞାନିକମାନେ ସର୍ବଭାରତୀୟ ବ୍ୟକ୍ତିତ୍ୱ ରୂପେ ପରିଚିତ ।

ସ୍ୱାମୀ ବିବେକାନନ୍ଦ, ରାଜା ରାମମୋହନ ରାୟ, ରାମକୃଷ୍ଣ, ଅରବିନ୍ଦ, ଗାନ୍ଧୀ, ତିଳକ, ନେହେରୁ ଏବଂ ଆଜାଦ ପ୍ରଭୃତି ହେଉଛନ୍ତି ଭାରତୀୟ ଏକତା ଏବଂ ଜାତୀୟତାର ପ୍ରତିମୂର୍ତ୍ତି । ବିଶ୍ୱକବି ରବୀନ୍ଦ୍ରନାଥ ବଙ୍ଗଳାରେ ଜନ୍ମ ଗ୍ରହଣ କରିଥିଲେ ହେଁ ସେ ନିଜର ସାଧନା ବଳରେ ଏକ ଆନ୍ତର୍ଜାତିକ ବ୍ୟକ୍ତିତ୍ୱ ରୂପେ ପରିଚିତ । ଏହି ମନିଷୀମାନଙ୍କର କୌଣସି ସଂକୀର୍ଣ୍ଣ ଆନୁଗତ୍ୟ ନଥିଲା । ସେମାନେ କେଉଁଠାରେ ଜନ୍ମଗ୍ରହଣ କରିଥିଲେ ତାହା କେହି ମନେ ନ ରଖି, ତାଙ୍କୁ ସର୍ବଭାରତୀୟ ବ୍ୟକ୍ତିତ୍ୱ ରୂପେ ସମ୍ମାନିତ କରିଥାନ୍ତି ।

ବେଦ ଏବଂ ଉପନିଷଦଗୁଡ଼ିକ ହେଉଛି ଭାରତୀୟ ସଂସ୍କୃତିର ଭିତ୍ତିଭୂମି । ରାମାୟଣ, ମହାଭାରତ, ଗୀତା ଏବଂ ମନୁସଂହିତା ପରି ପ୍ରାଚୀନ ଆଇନ ପୁସ୍ତକ ସମଗ୍ର ଭାରତରେ ଭାବଗତ ଏବଂ ଆଧ୍ୟାତ୍ମିକ ଏକତା ଆନୟନ କରିଥିଲେ । ସମଗ୍ର ଭାରତବର୍ଷରେ ଏଗୁଡ଼ିକର ସ୍ଥାୟୀ ଗୁରୁତ୍ୱ ରହିଛି ଏବଂ ଏଗୁଡ଼ିକ ସମସ୍ତ ଭାରତୀୟମାନଙ୍କୁ ପ୍ରଭାବିତ କରିଛନ୍ତି । ତାହା ସହିତ ଭାରତର ପ୍ରାଚୀନ ସଂସ୍କୃତିକ ପରମ୍ପରା ଇସଲାମ ଇଂରେଜମାନଙ୍କ ଦ୍ୱାରା ପ୍ରଭାବିତ ଏବଂ ଏବଂ ତ୍ୱରାନ୍ୱିତ ହୋଇଛି । ମୁସଲମାନମାନଙ୍କ ସ୍ଥାପତ୍ୟ କଳା, ସାହିତ୍ୟ, କବିତା, ସଙ୍ଗୀତ ଭାରତୀୟ ଜୀବନକୁ ଉଦ୍ଦିମତ କରିଛି । ଇସଲାମ ଧର୍ମ, ଗୋଷ୍ଠୀଗତ ପ୍ରାର୍ଥନା ମାଧ୍ୟମରେ ଆମକୁ ଏକ ଏବଂ ଅବିଭକ୍ତ ହେବାର ପ୍ରେରଣା ଦେଇଛି । ୟୁରୋପୀୟମାନେ ଆମକୁ ଜାତୀୟତା, ଉଦାରବାଦ, ଗଣତନ୍ତ୍ର, ବୈଜ୍ଞାନିକ ଏବଂ କାରିଗରୀ ଦୃଷ୍ଟିଭଙ୍ଗୀ ମାଧ୍ୟମରେ ଅଧିକ ଏକଜୁଟ କରିଛନ୍ତି । ଏହିସବୁ ଚିନ୍ତାଧାରା ଭାରତର ଏକ ପ୍ରାନ୍ତରୁ ଅନ୍ୟ ପ୍ରାନ୍ତ ପର୍ଯ୍ୟନ୍ତ ସମାନ ଭାବରେ ପ୍ରଚଳିତ ।

ଭାରତରେ କୌଣସି 'ଆଞ୍ଚଳିକ କିମ୍ବା ପ୍ରାଦେଶିକ ସଂସ୍କୃତି ନାହିଁ । ସେସବୁ ହେଉଛି ଭାରତୀୟ ସଂସ୍କୃତିର ଅଙ୍ଗ ବିଶେଷ. ଭାରତରେ ମରାଠୀ, ତାମିଲ ଓ ଓଡ଼ିଆ ଉପନିଷଦ ଗୀତା କିମ୍ବା ରାମାୟଣ ଦେଖିବାକୁ ମିଳେ ନାହିଁ । ସାଂସ୍କୃତିକ ଦୃଷ୍ଟିରୁ ଆମେ ସମସ୍ତେ ଏକ ଏବଂ ଅବିଭକ୍ତ । ଆମର ସାଂସ୍କୃତିକ ବିଭିନ୍ନତା, ଅର୍ଥନୈତିକ ବିଭିନ୍ନତା ଯୋଗୁଁ ପ୍ରକଟିତ ହୋଇଛି । ସମଗ୍ର ଭାରତବାସୀଙ୍କ ଜୀବନଯାପନ ପ୍ରଣାଳୀ ପ୍ରାୟ ଅଧିକ ସମାନ ଧରଣର । ଭାରତର ଏକତା, ସାଂସ୍କୃତିକ ବିଭିନ୍ନତା ଭିତରେ ପ୍ରତିଷ୍ଠିତ । ମଣିଷ ଜୀବନ ପରି ଏହା କାଳକ୍ରମେ ପରିବର୍ତ୍ତନୀୟ ।

ଭାଷାଗତ ସଂକୀର୍ଣ୍ଣତା ଯୋଗୁ ପ୍ରାଦେଶିକ ବିଭିନ୍ନତା ବିକାଶ ଲାଭ କରିଛି । ତାମିଲନାଡୁର ଡି. ଏମ୍. କେ. ଝାଡ଼ଖଣ୍ଡ, ଖଲିସ୍ତାନ ଏବଂ ଅହୋମ ଆନ୍ଦୋଳନଗୁଡ଼ିକ ସଂକୀର୍ଣ୍ଣ ମନୋଭାବ

ଦ୍ୱାରା ପ୍ରଭାବିତ । ଆମ ଦେଶର ସ୍ୱାଧୀନତା ଜାତୀୟ ଏକତାର ଶୀର୍ଷ ସୀମା ଥିଲା ବୋଲି କୁହାଯାଇପାରେ । ଯାତାୟତର ଅଭାବ ଅସୁବିଧା ଏହାର ମୁଖ୍ୟ ପ୍ରତିବନ୍ଧକ ଥିଲା । ଦ୍ୱିତୀୟତଃ ହିନ୍ଦୁ ସମାଜକୁ ବିଭିନ୍ନ ଜାତିଆଣ ଭିତ୍ତିରେ ବିଭକ୍ତ କରାଯିବାରୁ ଜାତୀୟ ଏକତା ବ୍ୟାହତ ହେଲା । ବ୍ରିଟିଶ ଶାସନ କାଳରେ ଗମନାଗମନ ପ୍ରସାର ଯୋଗୁ ଭାରତୀୟ ଏକତା ଅଧିକ ପରିମାଣରେ ହୋଇଥିଲା । ସ୍ୱାଧୀନତା ପରେ ଜାତିଆଣ ବିଗ୍ରହର କ୍ରମବିକାଶ ଘଟିଲା ଏବଂ ଆମର ସାମାଜିକ ଅବସ୍ଥା ନୂତନ ଆଭିମୁଖ୍ୟ ହେଉଛି ଆମ ଜାତୀୟ ଏକତାର ଇତିହାସ ।

ବିଭେଦ ଏବଂ ଅସଂହତି :–

ସ୍ୱାଧୀନତା ପରେ ପ୍ରାଦେଶିକ, ଭାଷାଗତ ଏବଂ ସାଂପ୍ରଦାୟିକ ଆନୁଗତ୍ୟ ନେତୃବୃନ୍ଦ ତଥା ଜନସାଧାରଣଙ୍କୁ ନାନା ଭାବେ ବିଭକ୍ତ କଲା । ଅଶିକ୍ଷିତ ଏବଂ ନିରକ୍ଷର ଜନସାଧାରଣ ସାମ୍ପ୍ରଦାୟିକ ମନୋଭାବର ଶରବ୍ୟ ହେଲେ । ପଞ୍ଜାବ, ଜବଲପୁର ଏବଂ ଆସାମ ପ୍ରଭୃତି ହିଂସାତ୍ମକ କାଣ୍ଡ ତଥା ବିଚ୍ଛିନ୍ନତାବାଦୀ ପ୍ରଭାବରେ ଧ୍ୱଂସାତ୍ମକ ପରିସ୍ଥିତିର ସମ୍ମୁଖୀନ ହେଲେ । ଦାକ୍ଷିଣାତ୍ୟର ହିନ୍ଦୀ ବିରୋଧୀ ଆନ୍ଦୋଳନ, ମାଡ୍ରାଜର ଦ୍ରାବିଡ଼ସ୍ଥାନ ପ୍ରଭୃତି ଏହି ବିଚ୍ଛିନ୍ନତାବାଦୀ ଶକ୍ତିର ଉଦାହରଣ ।

ଏହି ସବୁ ରୋଗର ନିରାକରଣ ନିମିତ୍ତ ସମାଧାନ ପନ୍ଥାର ଆବଶ୍ୟକତା ନିତାନ୍ତ ଜରୁରୀ ହୋଇ ପଡ଼ିଛି । ଏହି ସମସ୍ୟାଗୁଡ଼ିକ ଅସଂଖ୍ୟ ଏବଂ ବିଭିନ୍ନ ଧରଣର । ଏହାର କାରଣ ନିର୍ଦ୍ଧାରଣ କରି ସମୟୋପଯୋଗୀ ସଂସ୍କାର ଗ୍ରହଣ କରିବା ଏକାନ୍ତ ଆବଶ୍ୟକ ।

ସଂପ୍ରତିକ ଯୁଗ ଆତ୍ମାର ସଂଘର୍ଷ ଦ୍ୱାରା ପ୍ରକଟିତ । ପୃଥିବୀର ସର୍ବତ୍ର ଉଣାଅଧିକେ ଏକତା ବିରୋଧୀ ଶକ୍ତି କାର୍ଯ୍ୟତତ୍ପର । ବିଭିନ୍ନ ସ୍ଥାନରେ ଘଟୁଥିବା ଘଟଣାବଳୀ ଏହି ସଂଘର୍ଷ ପୂର୍ଣ୍ଣ ପରିସ୍ଥିତିର ପ୍ରମାଣ ଦିଏ । ମାନବ ସମାଜ ଆଶା ଏବଂ ବିଶ୍ୱାସ ପରିବର୍ତ୍ତେ ନିରାଶା ଏବଂ ଅବିଶ୍ୱାସର ଶରବ୍ୟ ହୋଇଛି । ଦକ୍ଷିଣ ଆଫ୍ରିକା, ଆଫଗାନିସ୍ଥାନ, ମଧ୍ୟ ପ୍ରାଚ୍ୟ ଏବଂ ଲାଟିନ ଆମେରିକାରେ ସଂଗ୍ରାମ ଏବଂ ସଂଘର୍ଷ ଅନବରତ ଲାଗିରହିଛି । ଫଳରେ ସ୍ଥିରତା ପରିବର୍ତ୍ତେ ଅସ୍ଥିରତା ଆନ୍ତର୍ଜାତିକ ଜୀବନର ବୈଶିଷ୍ଟ୍ୟ ରୂପେ ଦେଖା ଦେଉଛି । ପ୍ରସ୍ତର ମାଧ୍ୟମରେ ନିଜର ମନନାକୁ ଅନ୍ୟମାନଙ୍କ ଉପରେ ବଳପୂର୍ବକ ଲଦି ଦିଆ ଯାଉଛି । ଏକତା ପରିବର୍ତ୍ତେ ଜନସାଧାରଣ ସମାନତା ପ୍ରତି ଅଧିକ ଆକୃଷ୍ଟ ହେଉଛନ୍ତି ।

କ୍ଷମତାଲୋଭୀ ରାଜନୀତିଜ୍ଞ ଏବଂ ସୁବିଧାବାଦୀ ନେତୃବୃନ୍ଦ ଜନସାଧାରଣଙ୍କ ଅଜ୍ଞତାର ସୁଯୋଗ ନେଇ ଫାଇଦା ଉଠେଇବାକୁ ବଦ୍ଧପରିକର । ନିର୍ବାଚନରେ ପ୍ରାର୍ଥୀମାନେ ନିଜ ଯୋଗ୍ୟତା ଉପରେ ନିର୍ବାଚିତ ନ ହୋଇ ଜାତି ଏବଂ ସଂପ୍ରଦାୟ ଭିତ୍ତିରେ ନିର୍ବାଚିତ ହେଉଛନ୍ତି । ଭାରତୀୟ ରୂପେ ଅନୁଭବ କରି ବଞ୍ଚି ରହିବା ପାଇଁ ଇଚ୍ଛୁଥିବା ବ୍ୟକ୍ତିବୃନ୍ଦଙ୍କୁ ଅବାଞ୍ଛିତମନେ କରାଯାଉଛି । ଏହାଦ୍ୱାରା ଗଣତନ୍ତ୍ର ନିଜ ପାଇଁ ସମସ୍ୟା ସୃଷ୍ଟି କରିଛି । ରାଜନୀତିଜ୍ଞମାନେ ଅନୁଭବ କରନ୍ତି ଯେ ନିର୍ବାଚନରେ ଜିତିବା ପାଇଁ ଜାତିଆଣ ଏବଂ ଭାଷାଗତ ପ୍ରଭେଦର ସୁଯୋଗ ନେଇ ଗୋଷ୍ଠୀଗତ ସମର୍ଥନ
ଏକାନ୍ତ ଆବଶ୍ୟକ । ସଂଖ୍ୟା ଲଘୁ ସଂପ୍ରଦାୟ
ନ୍ତ କଲେ ନିର୍ବାଚନରେ ଜିତିବା ସହଜ
ସାଂପ୍ରତିକ ରାଜନୀତିରେ ସର୍ବଭାରତୀୟ ବ୍ୟକ୍ତି
ବହୁ ପରିମାଣରେ ଅନୁଭୂତ ହୁଏ । ଗାନ୍ଧୀ, ନେ
ଏବଂ ଶାସ୍ତ୍ରୀଙ୍କ ପରି ସର୍ବଭାରତୀୟ ନେତା ଆ
ଦେଖିବାକୁ ମିଳୁ ନାହାନ୍ତି । ପ୍ରାଦେଶିକ ଏବଂ
ଭାବରେ ନେତୃବୃନ୍ଦ ଦେଖା ଦେଇଛନ୍ତି । ସେଥି
ଭିତ୍ତିରେ ଆମର ରାଜ୍ୟଗୁଡ଼ିକ ଗଠିତ ।

ସଂହତିର ପନ୍ଥା

ଆମ ଦେଶର ଏକତା ଭାଷାଗତ ସାମ୍ରାଜ୍ୟ
ପରାହତ ହୋଇଛି । କେତେକ ରାଜନୈତିକ
ସୁଯୋଗ ନେଇ ଜନସାଧାରଣଙ୍କୁ ବିଭକ୍ତ କରିଛନ୍ତି
ସାମ୍ରାଜ୍ୟବାଦ" ବିରୁଦ୍ଧରେ ନିର୍ବାଚନ ଲଢ଼ି
କେତେକ ରାଜନୈତିକ ଦଳ କ୍ଷମତାସୀନ ହେ

ଅର୍ଥନୈତିକ ଯୋଜନା ଅନ୍ୟ ଏକ ସମ
ଦେଖାଦେଇଛି । ଆମ ଦେଶରେ କେତେକ
ଉନ୍ନତ ହୋଇଥିଲାବେଳେ ଅନ୍ୟ କେତେକ ଦାରିଦ୍ର
ରେଖା ତଳେ ସଢ଼ୁଛନ୍ତି । ଆଞ୍ଚଳିକ ଯୋଜ
ଅର୍ଥନୈତିକ ପ୍ରଗତି କ୍ଷେତ୍ରରେ ଅସମତା ଦେଖ
ଯୋଜନା ଯୋଗୁଁ ରାଜ୍ୟଗୁଡ଼ିକ ମଧ୍ୟରେ ଅର୍ଥନୈତି
ରକ୍ଷା କରାଯାଇ ପାରୁନାହିଁ । ଫଳରେ ଧନୀ
ହେଉଥିଲା ବେଳେ ଗରିବ ଅଧିକ ଗରିବ ହେଉ

ସ୍ୱାଧୀନତା ପରେ ଗୁଣାତ୍ମକ ବିକାଶ
ହୋଇପାରୁନାହିଁ । ନୈତିକ ମୂଲ୍ୟବୋଧର
ଘଟୁଛି । ଗୁଣାତ୍ମକ ଶିକ୍ଷାର ବିକାଶ ହେ
ନୈତିକ ମୂଲ୍ୟବୋଧର ପୁନରୁଜ୍ଜୀବନ ସ
ଆଞ୍ଚଳିକ-ପ୍ରୀତି, ଦଳଗତ ଆନୁଗତ୍ୟ ଓ ଭାଷା
ଭିତ୍ତିରେ ଭାରତୀୟମାନେ ବିଭିନ୍ନ ଶ୍ରେଣୀରେ
ଭାରତୀୟ ପ୍ରୀତି ଉପରେ ଆଜି କାଲି ଜୋର ଦିଅ
ଫଳରେ ଜାତୀୟ ସଂହତି ବ୍ୟାହତ ଏବଂ ପରାହତ

ଏହାର ବିପଦ୍‌ଜନକ ଫଳାଫଳ ପ୍ରତି ଏବେଠାରୁ
ହେବା ଏକାନ୍ତ ଆବଶ୍ୟକ । ଆଞ୍ଚଳିକତା ଭି
ସଂଖ୍ୟକ ରାଜନୈତିକ ଦଳ ସଙ୍ଗଠିତ । ଫଳ
ଆନୁଗତ୍ୟର ଅଭାବ ବହୁ ପରିମାଣରେ ପରିଲକ୍ଷି
କେତେକ ରାଜନୈତିକ ଦଳ ଜାତୀୟ ମନୋଭା
କରୁଥିଲାବେଳେ ଅନ୍ୟମାନେ ଭାଷାଗତ, ଆଞ୍ଚଳିକ
ଏବଂ ଶ୍ରେଣୀଗତ ପ୍ରଭାବରେ ପରିଚାଳିତ । ଏ
ଚିରନ୍ତନ ସ୍ୱାର୍ଥ ଦୃଷ୍ଟିରୁ କେତେଦୂର ଗ୍ରହଣ
ଅନୁଧ୍ୟାନର ବିଷୟ ହେବା ଉଚିତ ।
ପରିବର୍ତ୍ତନ ନ ହେଲେ ଦେଶର ଭବିଷ୍ୟତ ବିପଦ୍‌ଜନ
ସମ୍ଭାବନା ରହିଛି । ବିରୋଧୀ ଦଳଗୁଡ଼ିକ
ସୁବିଧା ଦୃଷ୍ଟିରୁ ଯେଉଁ ଭୂମିକା ଗ୍ରହଣ କରିଛନ୍ତି ତା
ଏକତା ଦୃଷ୍ଟିରୁ କେତେଦୂର ବାଞ୍ଛନୀୟ ତା
ଦେଖିବାର କଥା । ଗଣତାନ୍ତ୍ରିକ ଆଦର୍ଶ ଏ
ପରିସ୍ଥିତି ମଧ୍ୟରେ ନାନାବିଧ ପ୍ରଭେଦ ପରିଲକ୍ଷି

ଜନସାଧାରଣ ଆଶା କରୁଥିବା ସରକାର ଗଠନ କରନ୍ତି ଏବଂ ବିରୋଧୀ ଦଳର ଭୂମିକା ଅନେକ ମାତ୍ରାରେ ଶାସକ ଦଳର ଦୃଷ୍ଟିଭଙ୍ଗୀ ଉପରେ ନିର୍ଭର କରେ । ତେଣୁ ଜାତୀୟ ହିତ ଦୃଷ୍ଟିରୁ ଭାବଗତ ଐକ୍ୟ ପ୍ରତିଷ୍ଠା ହେବା ଏକାନ୍ତ ଆବଶ୍ୟକ ।

ସାମ୍ପ୍ରଦାୟିକ ଏବଂ ଧର୍ମଗତ ଭିତ୍ତିରେ ପ୍ରତିଷ୍ଠିତ ରାଜନୈତିକ ଦଳଗୁଡ଼ିକ ଶ୍ରେଣୀଗତ ସଂଘର୍ଷର ସୂତ୍ରପାତ କରିଥାଆନ୍ତି । ଏପରି ସଂକୀର୍ଣ୍ଣ ଭାବଧାରା ଜାତୀୟ ଐକ୍ୟ ଏବଂ ସଂହତି ପ୍ରତି ବାଧା ସୃଷ୍ଟି କରିଥାଏ । ସାମ୍ପ୍ରଦାୟିକ ଏବଂ ଧର୍ମଗତ ପ୍ରଚାର କାଳକ୍ରମେ ସାମ୍ପ୍ରଦାୟିକ ଗଣ୍ଡଗୋଳ ଏବଂ ଧର୍ମଗତ ଅଶାନ୍ତିର ସୂତ୍ରପାତ କରେ । ଜାତିର ବୃହତ୍ତର ହିତ ଦୃଷ୍ଟିରୁ ସାମ୍ପ୍ରଦାୟିକ ମନୋଭାବର ନିରାକରଣ ଏକାନ୍ତ ଆବଶ୍ୟକ ମନେହୁଏ ।

ସ୍ଥାୟୀ ଶାନ୍ତି ଏବଂ ସଂହତି ନିମିତ୍ତ ଆଧ୍ୟାତ୍ମିକ ଶିକ୍ଷାର ଆବଶ୍ୟକତା ରହିଛି । ଅସଂହତି ଏବଂ ବିଭେଦ ହେଉଛି ସମଷ୍ଟିଗତ ମନର ରୋଗ । ଶିକ୍ଷା ମାଧ୍ୟମରେ ମନ ଏବଂ ହୃଦୟର ପରିବର୍ତ୍ତନ ହେଲେ ଯାଇ ଏହି ଅବସ୍ଥାର ପରିବର୍ତ୍ତନ ଘଟି ପାରିବ । ଅସଂହତି ମୁଖ୍ୟତଃ ରାଜନୈତିକ, ପ୍ରଶାସନିକ, ଭାଷାଗତ ଏବଂ ସାଂସ୍କୃତିକ କାରଣ ଯୋଗୁଁ ଦେଖା ଦେଇଥାଏ ।

ପ୍ରଶାସନିକ କ୍ଷେତ୍ରରେ ଏକତା ଆଣିବାକୁ ହେଲେ ସମଗ୍ର ଦେଶର ସମନ୍ୱିତ କର୍ମଚାରୀ ସେବା ଗଠିତ ହେବା ଆବଶ୍ୟକ । ସମସ୍ତ ଭାରତୀୟ ସେବା କ୍ଷେତ୍ରରେ ସମାନ ଧରଣର ଯୋଗ୍ୟତା, ଦରମା ଏବଂ ପଦୋନ୍ନତି ବ୍ୟବସ୍ଥା ପ୍ରଚଳିତ ହେବା ଆବଶ୍ୟକ । ତେବେ ଯାଇ ସମାନ ଧରଣର କାର୍ଯ୍ୟଦକ୍ଷତା ପ୍ରତିଫଳିତ ହେବ ଏବଂ ଏହା ଆଞ୍ଚଳିକ ଆନୁଗତ୍ୟଠାରୁ ଦୂରେ ରହିପାରିବ । ଅର୍ଥନୈତିକ ଦୃଷ୍ଟିରୁ ଆମ ଦେଶ ଯେ ଏକ ଏବଂ ଅବିଭକ୍ତ, ଏପରି ଚିନ୍ତାଧାରା ବିକାଶ ଲାଭ କରିବା ଦରକାର । କେନ୍ଦ୍ର ସରକାର ସର୍ବଭାରତୀୟ ନୀତି ଏବଂ ନିୟମ ପ୍ରଣୟନ କରି ଅନାୟାସରେ ଏପରି ଭାବଧାରାର ଉଦ୍ରେକ କରିପାରିବେ । ଭାଷାଗତ ଐକ୍ୟ ନିମିତ୍ତ ସେହିପରି ସଂଘବଦ୍ଧ ଉଦ୍ୟମ ଏକାନ୍ତ ଆବଶ୍ୟକ । ଭାରତୀୟ ସଂସ୍କୃତି ପ୍ରତି ସମସ୍ତ ଭାରତୀୟ ଭାଷାର ଋଣୀ ଅଧିକେ ଅବଦାନ ରହିଛି ।

ଭାରତର ଭାବଗତ ସମନ୍ୱୟ ସମିତି (Emotional Integration Committee) ସୁପାରିଶ କରିଛି ଯେ କେତେକ ଶିକ୍ଷାଗତ ପ୍ରସ୍ତାବ ଗୃହୀତ ହେଲେ ଜାତୀୟ ସଂହତି ସମ୍ଭବ ହୋଇ ପାରିବ । ଆମକୁ ବିଭକ୍ତ କରୁଥିବା ଶକ୍ତିଗୁଡ଼ିକୁ ପରିହାର କରିବା ଏକାନ୍ତ ଆବଶ୍ୟକ । ତା ସହିତ ଆମକୁ ଏକତାଭୁକ୍ତ କରୁଥିବା ଦିଗଗୁଡ଼ିକୁ ଭାରତର ପ୍ରାପ୍ତବୟସ୍କ ଲୋକଙ୍କ ସମ୍ମୁଖରେ ଉପସ୍ଥାପିତ କରିବା ଦରକାର । ଦେଶପ୍ରୀତି ତଥା ଭାରତ ପ୍ରୀତି ଜାତି, ଧର୍ମ, ସଂସ୍କୃତି ଏବଂ ରାଜନୀତି ନିର୍ବିଶେଷରେ ବୃଦ୍ଧି ଲାଭ କରିବା ଏକାନ୍ତ ଆବଶ୍ୟକ ।

ସଂସ୍କୃତିମନା ବ୍ୟକ୍ତିବୃନ୍ଦଙ୍କୁ ନେଇ ଏକ ସ୍ୱାଧୀନ ଅନୁଷ୍ଠାନ ଗଠନ କରାଗଲେ ଏହି ଯୋଜନାକୁ କାର୍ଯ୍ୟକାରୀ କରାଯାଇ ପାରିବ । ଏହି ଅନୁଷ୍ଠାନରେ ବସ୍ତୁନିଷ୍ଠ ବ୍ୟକ୍ତିବୃନ୍ଦ ରହିବା ଆବଶ୍ୟକ । ଯେଉଁମାନେ ଦେଶର ଆବଶ୍ୟକତା ଏବଂ ବାସ୍ତବତା ଦୃଷ୍ଟିରୁ ନିରପେକ୍ଷ ଦୃଷ୍ଟିଭଙ୍ଗୀ ପୋଷଣ କରିପାରିବେ । ମୌଳିକ ମାନବିକ ମୂଲ୍ୟବୋଧ, ଯଥା : ସତ୍ୟ, ସହନଶୀଳତା ଏବଂ ଆନୁଗତ୍ୟ ଜନସାଧାରଣଙ୍କ ମନରେ ବହୁ ପରିମାଣରେ ପ୍ରଚାରିତ ଏବଂ ପ୍ରସାରିତ ହେବା ଆବଶ୍ୟକ । ଦେଶ ଆଗରେ ଏକ ଉଦ୍ଦେଶ୍ୟ ଏବଂ ଅଭିମୁଖ୍ୟ ଉପସ୍ଥାପିତ ହେବା ଦରକାର । ଧର୍ମ ଏବଂ ରାଜନୀତିର ଯୁଗ ଶେଷ ହେଉଛି । ସାଂପ୍ରତିକ ସମୟ ହେଉଛି ବିଜ୍ଞାନ ଏବଂ କାରିଗରୀ ବିଦ୍ୟାର ଯୁଗ । ସମୟ ଉପଯୋଗୀ ଅଭିମୁଖ୍ୟ ଗୃହୀତ ନହେଲେ ଧ୍ୱଂସାତ୍ମକ ପରିଣତିର ସମ୍ଭାବନା ରହିଛି । ବିଜ୍ଞାନ ଏବଂ ଆଧ୍ୟାତ୍ମିକତାର ସମନ୍ୱୟ ସାଧିତ ହେଲେ ଏହି ଅଭିମୁଖ୍ୟ ଅଚିରେ ଚରିତାର୍ଥ ହୋଇ ପାରିବ । ସେହି ଅନୁସାରେ ଶିକ୍ଷା ପଦ୍ଧତିରେ ପରିବର୍ତ୍ତନ ହେବା ଆବଶ୍ୟକ । ବିଭେଦ ଶକ୍ତିର ବିପଦଗୁଡ଼ିକ ବିଷୟରେ ଜନସାଧାରଣଙ୍କୁ ସଚେତନ କରାଇବା ଦରକାର । ଐକ୍ୟ ପାଇଁ ଆବଶ୍ୟକୀୟ ମନସ୍ତାତ୍ତ୍ୱିକ ସଂହତି ଆନୟନ କରାଯିବା ଦରକାର । ଏଥିପାଇଁ ଜନସାଧାରଣ ତଥା ନେତୃବୃନ୍ଦଙ୍କ ନୈତିକ ଭିତ୍ତିଭୂମୀ ଦୃଢଭାବରେ ଗଢି ଉଠିବା ଆବଶ୍ୟକ । ଆଞ୍ଚଳିକ ଭିତ୍ତିରେ ଅର୍ଥନୈତିକ ଯୋଜନା ଏବଂ ପ୍ରଶାସନିକ ବ୍ୟବସ୍ଥା ସ୍ୱାଗତ ଯୋଗ୍ୟ । ରାଜନୀତିଜ୍ଞ ଏବଂ ନେତୃବୃନ୍ଦ ଅନୁଭବ କରିବା ଦରକାର ଯେ ଆମ ଦେଶ ଅର୍ଥନୈତିକ ଦୃଷ୍ଟିରୁ ଏକ ଏବଂ ଅବିଭକ୍ତ । ଭାରତମାତାକୁ ସୁଜଳା, ସୁଫଳା ଏବଂ ଶସ୍ୟ ଶାମଳା କରିବା ପାଇଁ ବ୍ୟକ୍ତିଗତ ସ୍ୱାର୍ଥକୁ ଜଳାଞ୍ଜଳି ଦେବା ଦରକାର । ଜାତୀୟ ସ୍ୱାର୍ଥ ସାଧିତ ହେଲେ ଆମର ସଂହତି ଏବଂ ମୁକ୍ତି ସମ୍ଭବ ହୋଇପାରିବ । ଭାରତୀୟ ଜାତୀୟତାବାଦ ଦୃଷ୍ଟିରୁ ବିଭେଦକାରୀ ଶକ୍ତିଗୁଡ଼ିକର ନିରାକରଣ ଏକାନ୍ତ ଜରୁରୀ ହୋଇପଡ଼ିଛି ।

ସାଂପ୍ରତିକ ଦୁନିଆଁରେ ବିଶ୍ୱରାଷ୍ଟ୍ର ଗଠନର ଭାବଧାରା ବିକାଶ ଲାଭ କରୁଥିବା ବେଳେ ସଂକୀର୍ଣ୍ଣ ଭାବଧାରା ନୀଚମନାର ପରିଚାୟକ । ଆଜିର ବୈଜ୍ଞାନିକ ଦୁନିଆଁରେ କ୍ଷମତାର ବିକେନ୍ଦ୍ରୀକରଣ ନିମିତ୍ତ ଆବଶ୍ୟକୀୟ ଆନୁଷ୍ଠାନିକ ବ୍ୟବସ୍ଥା ଆବଶ୍ୟକ । ସମାଜ ଏବଂ ସାମାଜିକ ଶ୍ରେଣୀ ସଂଗଠନରେ ବିଭେଦକାରୀ ଶକ୍ତିର ଉଦ୍ରେକ ହୋଇଥାଏ । ଶିକ୍ଷିତ, ଅଶିକ୍ଷିତ ଆଧୁନିକ, ପାରଂପରିକ ଏବଂ ସେବକ ଓ ପ୍ରଭୁ ମଧ୍ୟରେ ସ୍ୱାର୍ଥର ସଂଘର୍ଷ ନ ଘଟି ସମନ୍ୱୟ ଏବଂ ସହାବସ୍ଥାନ ପ୍ରତିଷ୍ଠି‌ ହେଲେ ଧନୀ ଦରିଦ୍ର, ମଧ୍ୟରେ ଆଉ ପ୍ରଭେଦ ରହିବ ନାହିଁ । କ୍ଷମତା ପାଇଁ ସଂଗ୍ରାମର ଶେଷ ହେବା ଉଚିତ । ତାହା ସହିତ ଶ୍ରେଣୀ ସଂଘର୍ଷ ଏବଂ ମତଭେଦର ବିଲୟ ସାଧିତ ହେଲେ ସାମାଜିକ ସଂହତି ସାଧିତ ହେବ । ଫଳରେ ସଂହତିବଦ୍ଧ ଭାରତରେ ଏକ ଉନ୍ନତ ଭବିଷ୍ୟତ ଜନ୍ମଲାଭ କରିପାରିବ

ସ୍ୱାଧୀନତା ହେଉଚି, ଜାତିର ଏକ ଅନମନୀୟ
ଆତ୍ମଶକ୍ତି, କଠୋର ସାଧନା ଓ ସଙ୍କଳ୍ପର ପ୍ରତୀକ । — ନେତାଜୀ ସୁଭାଷଚନ୍ଦ୍ର ବୋଷ

# ଓଡ଼ିଶାରେ ତୈଳତାଳ ଚାଷ

ଡକ୍ଟର ରମେଶ

୧୯୮୧ ଜନଗଣନା ହିସାବରେ ଓଡ଼ିଶାର ଜନ ସଂଖ୍ୟା ୨୬ ମିଲିଅନ୍‌ରୁ ଅଧିକ । ପ୍ରତ୍ୟେକ ନାଗରିକଙ୍କୁ ସୁଷମ ଖାଦ୍ୟ (Balanced diet ) ଯୋଗାଇବାକୁ ହେଲେ ନିର୍ଦ୍ଦିଷ୍ଟ ପରିମାଣର ଶର୍କରା ସ୍ନେହ ପଦାର୍ଥ, ଲବଣ, ଭିଟାମିନ୍ ଓ ତୈଳ ଜାତୀୟ ଖାଦ୍ୟ ପଦାର୍ଥ ଦରକାର । ସବୁଜ ବିପ୍ଳବ ଶର୍କରା ଖାଦ୍ୟ ଯୋଗାଇବାରେ ସହାୟକ ହେଉଛି । ଡାଲି ଜାତୀୟ ଖାଦ୍ୟ ପଦାର୍ଥ ଅଧିକ ଅମଳ ଲାଗି ଚେଷ୍ଟା ଚାଲିଛି । ସେହିପରି ତୈଳ ଜାତୀୟ ଖାଦ୍ୟ ପଦାର୍ଥ ଅଧିକ ଅମଳ କରିବା ଲାଗି ଯୋଜନା କରାଯାଉଛି । ୧୯୮୧ ଜନଗଣନା ହିସାବରୁ ଜଣାଯାଏ ଯେ ୭୩,୬,୪୪୫ ହେକ୍ଟର ଜମିରୁ ୪୮,୪,୭୭୧ ଟନ୍ ଖାଦ୍ୟ ତେଲ ମିଳୁଛି । ଅଧିକ ତୈଳ ଅମଳ କରିବା ଲାଗି ଅଧିକ ଜମିରେ ତୈଳବୀଜ ଫସଲ ଉନ୍ନତ ଚାଷ ପ୍ରଣାଳୀ ଅବଲମ୍ବନ କରି ଓ ଉନ୍ନତ ପ୍ରଣାଳୀ ଦ୍ୱାରା ବୀଜରୁ ଅଧିକ ତୈଳ ବାହାର କରିବା ଲାଗି ବ୍ୟବସ୍ଥା ଚାଲିଥିଲେ ମଧ୍ୟ ତେଲର ଚାହିଦା ମେଣ୍ଟାଇବା କଷ୍ଟ ସାଧ୍ୟ ହେଉଛି । ତେଣୁ ଅନ୍ୟପନ୍ଥା ଗ୍ରହଣ କରିବା ଲାଗି ତୈଳ ତାଳ ଫସଲ ଚାଷ କରିବା ଲାଗି ଚେଷ୍ଟା ଚାଲିଛି କାରଣ ଏହା ତୈଳ ଫସଲ ଗୁଡ଼ିକରେ ବହୁ ଅଧିକ ପରିମାଣର ତେଲ ଯୋଗାଇ ପାରୁଛି—

| ତୈଳଫସଲର ନାମ | ହେକ୍ଟର ପ୍ରତି ତେଲ ଅମଳ (କି.ଗ୍ରା./ହେକ୍ଟର) |
|---|---|
| ୧. ଖୁଣି | ୪୦୦ ରୁ ୬୦୦ |
| ୨. ଚିନାବାଦାମ | ୩୫୦ ରୁ ୪୫୦ |
| ୩. ନଡ଼ିଆ | ୭୦୦ ରୁ ୧୫୦୦ |
| ୪. ସୋୟାବିନ୍ | ୫୫୦ ରୁ ୮୦୦ |
| ୫. ଅଳସି | ୫୦୦ ରୁ ୧୦୦୦ |
| ୬. ତୈଳ ତାଳ (ଅଏଲ୍ ପାମ୍) | ୨୫୦୦ ରୁ ୪୦୦୦ |

ଗିରିଜନମାନେ ଅଳସୀ ଆଦି ଫସଲରୁ ତେଲ ବ୍ୟବ
କିନ୍ତୁ ତୈଳ ତାଳ ତୁଳନାରେ ଏହି ପ୍ରକାରର ଫସଲର ଅ
ହୋଇଥାଏ ।

ଅଏଲ୍ ପାମ୍, ନଡ଼ିଆ, ଗୁଆ, ଖଜୁରୀ ଆଦି ଜାତୀୟ
ଏହା ୧୫ରୁ ୩୦ ମିଟର ଯାଏଁ ବଢ଼ିଥାଏ ଓ ୧୨
ବଞ୍ଚିପାରେ କିନ୍ତୁ ଲାଭ ଦାୟକ ଅମଳ ଦୃଷ୍ଟିରୁ ଏହା ୬୦
ଗଛ ଲଗାଯିବା ୩ରୁ ୬ବର୍ଷ ପରେ ପ୍ରଥମେ ଫଳ କାଢ଼ି
କରେ । କିନ୍ତୁ ୮ରୁ ୨୦ବର୍ଷ ଯାଏଁ ଅମଳ ବୃଦ୍ଧି ହେବାରେ

ଏହି ଫସଲ ଚାଷ ଲାଗି ଯେଉଁ ମୃତ୍ତିକା ଓ ଜଳବାୟୁ
ତାହା ଓଡ଼ିଶାରେ ଦେଖିବାକୁ ମିଳେ । ଏହା ଏକ ଗ୍ରୀଷ୍ମମ
ଉପଯୁକ୍ତ ମୃତ୍ତିକା, ପବନ, ଆର୍ଦ୍ରତା ଅନ୍ୟାନ୍ୟ ଆନୁ
ପାଇଲେ ଉତ୍ତମ ଫସଲ ଅମଳ କରିବାରେ ସହାୟକ
ଉଦ୍ଭିଦ ବଢ଼ିବା ଓ ଫଳିବା ଲାଗି ସାଧାରଣତଃ ୨
ସେଣ୍ଟିଗ୍ରେଡ ଉତ୍ତାପ ଖୋଲା ପ୍ରାନ୍ତର ଉତ୍ତମ ସୂର୍ଯ୍ୟା
ରହୁଥିବା ଉପ-ମୃତ୍ତିକା, ମୃତ୍ତିକାର ଉତ୍ତମ ଜଳଧାରଣ
ନିଷ୍କାସନ ଶକ୍ତି ଦରକାର କରେ । ସମତଳ ଜମିରେ ଏ
ଅମଳକ୍ଷମ ହୋଇଥାଏ । ପାହାଡ଼ିଆ ଅଞ୍ଚଳର ନିମ୍ନ ଭ
ଉପଯୁକ୍ତ ହୋଇଥାଏ । ବର୍ଷରେ ୨୦୦୦ ରୁ ୩୦୦
ଯାହାକି ପ୍ରତି ମାସର ୧୦୦ ମି:ମି ବୃଷ୍ଟିପାତ
ଅଞ୍ଚଳରେ ଏହା ଉତ୍ତମ ଭାବେ ଫଳ ଦେଇଥାଏ । କିନ୍ତୁ
ଅଞ୍ଚଳରେ ମଧ୍ୟ ଚାଷ କରାଯାଇ ପାରେ । ଏହି ଫ
ଜମିରେ ଭଲ ଭାବେ ଅମଳକ୍ଷମ ହେଉଥିଲେ ହେଁ ଏହା
ଚାଷ କରାଯାଇ ପାରେ । ଯେଉଁ ଜମିରେ ତାଳ ଓ
ବଢ଼ିପାରେ ସେହି ଜମିରେ ଏହି ଫସଲ ଚାଷ କ
ଜମିଗୁଡ଼ିକର ଉପଯୁକ୍ତ ବ୍ୟବହାର କରାଯାଇ ପାରେ
ପରିଷ୍କାର କରି ଏହି ଫସଲ ଚାଷ କରାଯାଇ ପାରେ । ବ
ଲେଟ ରାଇଟ୍ ମାଟି ଏଥିଲାଗି ଉପଯୁକ୍ତ ନୁହେଁ । କିନ୍ତୁ
ପରିଚାଳନା ପଦ୍ଧତି ଅନୁସରଣ କରି ସେହି ଜମିଗୁଡ଼ିକର
ପାରିଲେ ଏହା ଚାଷ କରିବା ସମ୍ଭବ ହୋଇଥାଏ । ପି
୬.୫ ଅମ୍ଳତା ( P.H ) ଥିବା ଜମିରେ ବଢ଼ିପାରେ

୫.୫ ଅମ୍ଳତା ଉତ୍କୃଷ୍ଟ ଅଟେ । ଏହି ଫସଲ ସମୁଦ୍ର ପତନଠାରୁ ୯୦୦ ମିଟର ଉଚ୍ଚ ଜମିରେ ଚାଷ କରାଯାଇ ପାରେ ।

ଏହିସବୁ ଦୃଷ୍ଟିରୁ ଜଣାଯାଏ ଯେ ଓଡ଼ିଶାରେ ଅଏଲ୍ ପାମ୍ ଚାଷ କରାଯିବାରେ କିଛି ଅସୁବିଧା ନାହିଁ । ଓଡ଼ିଶାରେ ଯେଉଁ ଚାରୋଟି ପ୍ରାନ୍ତ ରହିଛି (ସମୁଦ୍ରକୂଳିଆ ପ୍ରାନ୍ତ, ପୂର୍ବଘାଟ ପର୍ବତମାଳା, ଉତ୍ତରୀୟ ମାଳଭୂମି ଅଞ୍ଚଳ ଓ ନଦୀ ପ୍ରବାହିତ ଉପତ୍ୟକା ବା ସେଣ୍ଟ୍ରଲ ଟେବଲ ଲେଣ୍ଡ) ଉଣା ଅଧିକେ ସମସ୍ତ ଅଞ୍ଚଳରେ ଏହା ଚାଷ କରାଯାଇ ପାରେ କିନ୍ତୁ ସମୁଦ୍ର କୂଳିଆ ପ୍ରାନ୍ତର ( Coastal region ) ସବୁଠାରୁ ଉତ୍କୃଷ୍ଟ ହୋଇଥାଏ । ଏହି ଫସଲ ଚାଷ କରିବା ଲାଗି ବିଶେଷ ଅସୁବିଧା ହୋଇ ନଥାଏ । ନଡ଼ିଆ, ଗୁଆ ଆଦି ଫସଲ ଚାଷ ପରି ଏହାର ଚାଷ କରାଯାଇ ପାରେ । ପ୍ରଥମେ ବିହନ ସଂଗ୍ରହ କରି ଚାରା ଉତାରିବାକୁ ହୁଏ । ଚାରା ଉତାରିବା ପଟି ବା ଜରି କାଗଜର ମୁଣା ତିଆରି କରି ଖତ ମିଶା ମାଟି ଭର୍ତ୍ତି କରି ପ୍ରତ୍ୟେକଟିରେ ଗୋଟିଏ ଗୋଟିଏ ମଞ୍ଜି ପୋତି ପାଣି ଦେଇ ୧୨ ରୁ ୧୮ ମାସ ଯାଏଁ ତଦ୍ଵ ନିଆଯାଏ । ହେକ୍ଟର ପ୍ରତି ୪୦୦ ଟି ମଞ୍ଜି ଦରକାର କରିଥାଏ । ଜମିରେ ୯ରୁ ୧୦ ମିଟର ବ୍ୟବଧାନରେ ଗାତ ଖୋଳି (୦.୬×୦.୬×୦.୬ ମିଟର) ସେଥିରେ ଖତ ମିଶାଇ ଗାତ ଭର୍ତ୍ତି କରି ଚାରା ଲଗାଯାଏ । ତ୍ରିଭୁଜାକାର ପ୍ରଣାଳୀରେ ଗଛ ଲଗାଇଲେ ୧୩୫ ରୁ ୧୪୦ ଗଛ ଲଗାଯାଇ ପାରେ । ଗଛ ଲଗାପରେ ସେଗୁଡ଼ିକର ପରବର୍ତ୍ତୀ ଯତ୍ନ ଦରକାର କରିଥାଏ । ଧାଡ଼ି ମଧ୍ୟାନ୍ତର ଜମିରେ ବର୍ଷା ଋତୁରେ ସବୁଜସାର ଚାଷ କରି ପୋତି ଦେଲେ ବହୁତ ଉପକାର ମିଳେ । ପତ୍ର କାଟଛାଣ୍ଟ, ଖତସାର ପ୍ରୟୋଗ, ଘାସ ବାଛିବା, କଭର କ୍ରପ୍ ଚାଷ (କେଲୋପୋ ଗୋନିଏମ୍ ଆଦି ଛୁଇଁ ଜାତୀୟ ଫସଲ), ଦରକାର ମୁତାବକ ଅଣୁସାର ପ୍ରୟୋଗ ଇତ୍ୟାଦି ଦରକାର କରେ । "ଟେନେରା" କିସମ ଉତ୍କୃଷ୍ଟ ବୋଲି ଧରାଯାଏ । ହିସାବ ଦ୍ୱାରା ଦେଖାଯାଇଛି ଯେ ହେକ୍ଟର ପ୍ରତି ଫଳ ଶସରୁ ୧୪ ଟନ୍ ଓ ମଞ୍ଜିରୁ ୨.୮ ଟନ ତେଲ ଆମଦାନୀ ହୋଇଥାଏ । ଯାହାର ଦାମ ଟ୪୦୦୦ଙ୍କାରୁ ଟ୫୦୦୦ଙ୍କା ଯାଏ ହୋଇଥାଏ ।

ଅଏଲ୍ ପାମ୍ ତୈଳ ଖାଇବା ତେଲ ରୂପେ ବ୍ୟବହାର ହେବା ସଙ୍ଗେ ସଙ୍ଗେ ନାନା ପ୍ରକାରର ଶିଳ୍ପରେ ଦରକାର କରିଥାଏ । ବିଶେଷ କରି ଡାଲଡା ତିଆରି କାରଖାନା ଓ ସାବୁନ୍ କାରଖାନାମାନଙ୍କ ଲାଗି ଏହା ଅଧିକ ଦରକାରୀ ହୋଇଥାଏ । "ଅଏଲ୍ ପାମ୍ ଅଫ୍ ଇଣ୍ଡିଆ" ୨୦୦୦ ହେକ୍ଟର ଜମି ୧୯୮୬-୮୭ ସୁଦ୍ଧା ଚାଷ କରି ୧,୫୦୦ ଟନ୍ ତୈଳ ଉତ୍ପାଦନ କରିବା ଲାଗି ଯୋଜନା କରୁଥିବା ଜଣାଯାଏ ଓ ୧୯୯୦-୧୯୯୧ ସୁଦ୍ଧା ୫୦୦୦ ଟନ ତୈଳ ଉତ୍ପାଦନ କରିବାକୁ ଚେଷ୍ଟା କରୁଥିବା ଜଣାଯାଏ । ଓଡ଼ିଶାରୁ ଏହି ଫସଲ ଚାଷ ହାତକୁ ନେବାକୁ ହେଲେ ତେଲ ନିଷ୍କାସନ କରିବା ଲାଗି ସୁବିଧା କରିବା ଦ୍ୱାରା ଚାଷ କାର୍ଯ୍ୟ କରିବାକୁ ଚାଷୀମାନେ ଆଗଭର ହୋଇ ପାରିବେ ।

ବିଦ୍ୟାନ ଭବନ
୬୬, ସୂର୍ଯ୍ୟନଗର
ଭୁବନେଶ୍ୱର-୩



ବୀର ସୁରେନ୍ଦ୍ର ସାଏଙ୍କ ସ୍ମୃତି ଉଦ୍ଦେଶ୍ୟରେ ଡାକଟିକଟ ପ୍ରଚଳନ... ରାଜ୍ୟପାଳ ଶ୍ରୀ ପାଣ୍ଡେ...

# ଗାନ୍ଧୀଜୀ ଓ ଅସ୍ପୃଶ୍ୟତା

ଶ୍ରୀ କୈଳାସ ଚନ୍ଦ୍ର ମ

'ଗାନ୍ଧିଜୀ ଓ ଅସ୍ପୃଶ୍ୟତା'–ବର୍ତ୍ତମାନ ହୁଏତ ଏଭଳି ଏକ ଶୀର୍ଷକ କୌଣସି ପାଠକଙ୍କ ମନରେ ଚମକ ସୃଷ୍ଟି କରିନପାରେ । କିନ୍ତୁ ଏଭଳି ଏକ ସମୟ ଥିଲା, ଯେତେବେଳେ ଅସ୍ପୃଶ୍ୟତା ସମସ୍ୟାଟି ସମଗ୍ର ଭାରତ ବର୍ଷରେ ସବୁ ଭାରତୀୟ ତଥା ଅଣଭାରତୀୟମାନେ ଖୁବ୍ ସଚେତନଭାବେ 'ଅସ୍ପୃଶ୍ୟତା ସମସ୍ୟା' ଉପରେ ବିସ୍ତୃତ ବିମର୍ଷ ଆରମ୍ଭକରି ଦେଇଥିଲେ । ସେ ହେଉଛି ୧୯୩୨ ମସିହା କଥା; ଯେତେବେଳେ ଗାନ୍ଧିଜୀ ସତ୍ୟାଗ୍ରହକୁ ଏକ ଭିନ୍ନ ଦିଗରେ ପରିଚାଳିତ କରିବାକୁଯାଇ ହରିଜନ ଆନ୍ଦୋଳନ ଆରମ୍ଭ କରିଦେଇଥିଲେ । ଏଥିପାଇଁ ତାଙ୍କୁ ଦୀର୍ଘ ଦିନ ଧରି ଅନଶନ କରିବାକୁ ପଡ଼ିଥିଲା ଏବଂ ମାସ ମାସ ଧରି ଭାରତସାରା ବୁଲିବୁଲି ସଭାସମିତି କରିଆରେ ଲୋକଙ୍କୁ ଏ ସଂପର୍କରେ ଚିନ୍ତାକରିବାକୁ ପ୍ରବର୍ତ୍ତାଇ ଥିଲେ । ଆଜି ଗାନ୍ଧିଜୀଙ୍କର ସେ ସ୍ୱପ୍ନ ଓ ସାଧନା କେତେଦୂର ସାର୍ଥକ ହେଉଛି ଏବଂ ଏ ପରିପେକ୍ଷୀରେ ଆମେ କ'ଣ କରିପାରିବା, ତା'ର ବିସ୍ତୃତ ବିବେଚନା କରିବାର ବେଳ ଆସିଛି । 'ଅସ୍ପୃଶ୍ୟତା' କଥାଟି ହିନ୍ଦୁ ଧର୍ମାବଲମ୍ବୀଙ୍କ ଭିତରେ ବହୁଦିନରୁ ପ୍ରଚଳିତ ହୋଇ ଆସିଛି । ଭାରତର ସର୍ବ ପ୍ରାଚୀନ ଗ୍ରନ୍ଥ ବେଦରେ ବର୍ଣ୍ଣାଶ୍ରମ କଥା ଉଲ୍ଲେଖ ଅଛି । ମହାଭାରତ ଯୁଗରେ ମଧ୍ୟ ବର୍ଣ୍ଣାଶ୍ରମ କରିଆରେ ଜାତି ବିଭାଜନକରଣ କଥା ଭଗବତ ଗୀତାରେ ନାୟକ ପରମକାରୁଣିକ ଶ୍ରୀକୃଷ୍ଣଙ୍କ ମୁଖରୁ ଶୁଣୁ । କିନ୍ତୁ ଅସ୍ପୃଶ୍ୟତା କଥା ବେଦ, ରାମାୟଣ, ମହାଭାରତ–କୌଣସି ଗ୍ରନ୍ଥରେ ଉଲ୍ଲେଖ ଥିବାର ପ୍ରମାଣ ମିଳେ ନାହିଁ ।

କର୍ମାନୁଯାୟୀ ବର୍ଣ୍ଣଭେଦ କଥା ଅବୈଜ୍ଞାନିକ ନୁହେଁ, ବରଂ ଏହା ସଭ୍ୟତା ଓ ସଂସ୍କୃତିର ପରିଚୟ ଦିଏ । ବର୍ତ୍ତମାନ ମଧ୍ୟ ଏହାକୁ ଆମେ (Division of Labour) ଭାବେ ଗ୍ରହଣ

କରିଛୁ । ଏହା କାର୍ଯ୍ୟଦକ୍ଷତା ବୃଦ୍ଧିକରେ ।
ପରବର୍ତ୍ତୀକାଳରେ ଅଧିକ ସୁଖ, ସ୍ୱାଛନ୍ଦ୍ୟ ଓ ସୁବିଧ
କରୁଥିବା ଲୋକମାନେ, ସବୁଦିନ ସେହି ସମାନ
ସୁଯୋଗ ଗ୍ରହଣ କରିବା ଉଦ୍ଦେଶ୍ୟରେ ବର୍ଣ୍ଣଭେଦ
ଅସ୍ପୃଶ୍ୟତା' କଥାଟିକୁ ଯୋଡ଼ି ଦେଇଛନ୍ତି । ସ
ଯୁଗରେ ହିନ୍ଦୁ ଧର୍ମ ଭିତରେ ଉଗ୍ର ସାଂପ୍ରଦ
ମୁଣ୍ଡଟେକିଛି ଏବଂ ଏହି ସାଂପ୍ରଦାୟିକ ମତ ଓ
ଅସ୍ପୃଶ୍ୟତା କଥାକୁ ସ୍ୱୀକୃତି ଦେବାର ଅପପ୍ରୟାସ କର
ଦୀର୍ଘ ଦିନ ଏ ଦେଶ ବୈଦେଶିକ ଶକ୍ତିମାନଙ୍କଦ୍ୱାର
ହେବା ଫଳରେ ଆମର ଦାସ ମନୋବୃତ୍ତି ଅଧିକ ପ୍ର
ହୋଇଛି, ଯାହାଫଳରେକି ଯେଉଁମାନେ ଉଚ୍ଚ
ଅଛନ୍ତି, ନିମ୍ନ ସ୍ତରରେଥିବା ଲୋକମାନଙ୍କୁ, ସେମ
ଆହୁରି ଦୂରେଇ ଦେବାକୁ ଚେଷ୍ଟା କରିଛନ୍ତି । ରାମ ମ
ରାୟ, ମହର୍ଷିଦୟାନନ୍ଦ, ବିବେକାନନ୍ଦ ପ୍ରମୁଖ ସଂସ୍କା
ଏ ସଂପର୍କରେ ସ୍ୱର ଉତ୍ତୋଳନ କରିଛନ୍ତି । କିନ୍ତୁ ସବ
ସ୍ତରରେ ଅସ୍ପୃଶ୍ୟତାର ନିବାରଣ ପାଇଁ ଆନ୍ଦୋଳନା
ଗ୍ରହଣ କରିବାରେ ଗାନ୍ଧିଜୀ ହେଉଛନ୍ତି ଅଗ୍ରଣୀ ।

୧୯୩୨ ମସିହା ଅଗଷ୍ଟ ୧୭ ତାରିଖରେ ବ୍ରିଟିଶ ପ୍ର
ର୍‌ଯାମ୍‌ସେ ମ୍ୟାକ୍‌ଡୋନାଲ୍‌ଡ୍‌ଙ୍କର 'କମ୍ୟୁନାଲ ଆୱାର୍
ପାଇଲା । ଏହି ଆୱାର୍ଡ଼ରେ ସଂପ୍ରଦାୟିକ ଭିତ୍ତିରେ
ସଭାରେ ପ୍ରତିନିଧିତ୍ୱ କରିବାର ବ୍ୟବସ୍ଥାଥିଲା । ଗାନ୍ଧି ଦେ
ଇଂରେଜମାନେ କେବଳ ହିନ୍ଦୁ, ମୁସଲମାନ, ଖ୍ରୀଷ୍ଟି
ଭିତ୍ତିରେ ଭାରତୀୟମାନଙ୍କୁ ଭାଗ ଭାଗ କରିବାକୁ ଗ
ବରଂ ସେମାନେ ହିନ୍ଦୁଧର୍ମରେ ଥିବା ସବର୍ଣ୍ଣ ଅସବ
ଓ ବିଭିନ୍ନ ସଂପ୍ରଦାୟ ଭିତ୍ତିରେ ମଧ୍ୟ ଭାରତୀୟମାନଙ୍କୁ
କରି ଶାସନ କରିବାକୁ ଚାହାନ୍ତି । ତେଣୁ ଗାନ୍ଧିଜ

ପ୍ରବଳ ବିରୋଧ କରିବା ସଙ୍ଗେ ସଙ୍ଗେ ଏହା ପ୍ରତ୍ୟାହାର କରି ନିଆନଗଲେ ସେହିବର୍ଷ ସେପ୍ଟେମ୍ବର ୨୦ରୁ ଅନଶନ କରିବେ ବୋଲି ଧମକ ଦେଇଥିଲେ । ଏହି ସମୟରୁ ଅସ୍ପୃଶ୍ୟ' ଶବ୍ଦକୁ ପ୍ରତ୍ୟାହାର କରି ସମସ୍ତେ ସମାନ ବୋଲି ସେ କହିବାକୁ ଆରମ୍ଭକଲେ । ସମସ୍ତେ ଭଗବାନଙ୍କର ସନ୍ତାନ ବୋଲି ଗାନ୍ଧିଜୀ ଦୃଢ଼ କଣ୍ଠରେ ଘୋଷଣା କରିଥିଲେ । ସେହିଦିନୁ 'ହରିଜନ' ଶବ୍ଦଟି ଅସ୍ପୃଶ୍ୟମାନଙ୍କ ଉଦ୍ଦେଶ୍ୟରେ ପ୍ରଚଳିତ ହେଲା । ଗାନ୍ଧିଜୀ ତାଙ୍କ ଦ୍ୱାରା ପ୍ରକାଶିତ' Young India ର ନାମ ପରିବର୍ତ୍ତନ କରି ହରିଜନ' ନାମକରଣ କରିଥିଲେ । ଗାନ୍ଧିଜୀଙ୍କର ଏହି 'ହରିଜନ ଆନ୍ଦୋଳନ' ଏତେ ବ୍ୟାପକ ହେଲାଯେ, ଇଂରେଜ ସରକାର ତାଙ୍କର 'କମ୍ୟୁନାଲ ଆଓ୍ୱାର୍ଡ଼'କୁ ପ୍ରତ୍ୟାହାର କରିନେଲେ ।

ଗାନ୍ଧିଜୀ ଦେଖିଲେ କେବଳ ଗୋଟିଏ ସ୍ଥାନରେ ରହି ଲୋକଙ୍କ ମନରୁ ଏହି 'ଅସ୍ପୃଶ୍ୟତା' ସପକ୍ଷବାଦୀ ଚିନ୍ତାଧାରା ଦୂରକରି ହେବନାହିଁ । ତେଣୁ ସେ ଦେଶସାରା ବୁଲି ବିଭିନ୍ନ ସଭାସମିତିମାନଙ୍କରେ ଏ ସଂପର୍କରେ ପ୍ରଚାର କରିବାକୁ ଆରମ୍ଭ କରିଦେଲେ । ତାଙ୍କ ଗସ୍ତକ୍ରମକୁ ସେତେବେଳେ 'ହରିଜନ ଉଦ୍ଧାର ଗସ୍ତକ୍ରମ' ବୋଲି ମଧ୍ୟ କୁହାଯାଉଥିଲା । ଗାନ୍ଧିଜୀ ଏହି ସମୟରେ ୧୯୩୪ ମସିହା ମେ ମାସ ୯ ତାରିଖରୁ ଜୁନ ମାସ ୮ ତାରିଖ ପର୍ଯ୍ୟନ୍ତ ଓଡ଼ିଶା ଗସ୍ତରେ ଆସିଥିଲେ । ନିଜର ପ୍ରିୟ ସାବରମତୀ ଆଶ୍ରମକୁ ମଧ୍ୟ ସେହି ହରିଜନମାନଙ୍କ ଉଦ୍ଦେଶ୍ୟରେ ଦାନ କରିଦେଇଥିଲେ । ଗାନ୍ଧିଜୀ ତାଙ୍କର ଏହି କାର୍ଯ୍ୟକ୍ରମ, ବିଭିନ୍ନ ପତ୍ର ପତ୍ରିକା ଓ ଆତ୍ମଜୀବନୀର ବିଭିନ୍ନ ଲେଖା ମାଧ୍ୟମରେ 'ଅସ୍ପୃଶ୍ୟତା' ସମସ୍ୟାଟିକୁ ଯେପରି ଦେଖିଥିଲେ, ବୁଝିଥିଲେ ଓ ତାର ସମାଧାନ ପାଇଁ ଉପାୟ ନିର୍ଣ୍ଣୟ କରିଥିଲେ ସେ କଥାଟି ଆମେ ଆଲୋଚନା କରିବା ।

ଗାନ୍ଧିଜୀ 'ହରିଜନ' ପତ୍ରିକାରେ ଲେଖିଥିଲେ, "ଆଜିର ହିନ୍ଦୁଧର୍ମ, ଅସ୍ପୃଶ୍ୟତା କଳଙ୍କକୁ ଏପରି ଧରି ରଖିଛି ଯେ ଏହାକୁ ହଠାତ୍ ପୋଛି ଦେଇହେବନାହିଁ । ଅବହମାନ କାଳରୁ ଏହି କଳଙ୍କ ଚଳି ଆସିଛି ବୋଲି ମୁଁ ବିଶ୍ୱାସ କରିପାରିବି ନାହିଁ । ମୁଁ ଭାବୁଛି ଯେ ଏହି ଜଘନ୍ୟ, ଦୁଃଖଦାୟକ ଓ ପରାଭୂତକାରୀ 'ଅସ୍ପୃଶ୍ୟତା' ମନୋଭାବ ଆମ ସଭ୍ୟତା ନିମ୍ନତମ ସ୍ତରରେ ଥିବା ସମୟରୁ ଚାଲିଆସିଛି ଏବଂ ସେହି ପାପ ଏବେ ମଧ୍ୟ ଆମ ସମାଜରେ ଜଡ଼ିତ ହୋଇ ରହିଛି । ମୋ ମତରେ ଏହି ପବିତ୍ର ଭୂମିରେ ଯେ ପର୍ଯ୍ୟନ୍ତ ଆମେ ଏହି ଅଭିଶାପରୁ ମୁକ୍ତ ନହୋଇଛୁ ସେ ପର୍ଯ୍ୟନ୍ତ ଆମେ ଭୋଗୁଥିବା ଦୁର୍ଦ୍ଦଶାକୁ ଆମର ଅକ୍ଷମଣୀୟ ପାପର ଉପଯୁକ୍ତ ଦଣ୍ଡବୋଲି ମନେ କରିବି । କୌଣସି ଜଣେ ଲୋକର ଜୀବିକା-ଧନ୍ଦା ଯୋଗୁ ସେ ଅସ୍ପୃଶ୍ୟ ବିବେଚିତହେବ ଏହା ମୁଁ ଆଦୌ ବୁଝିପାରୁନାହିଁ । ତେଣୁ ଗାନ୍ଧିଜୀଙ୍କ ମତରେ ଏହା ଆବହମାନ କାଳରୁ ନାହିଁ ଏବଂ ଅସ୍ପୃଶ୍ୟତା ଏକ ଅକ୍ଷମଣୀୟ ଅପରାଧ । ଏହା ଏକ ସାମାଜିକ କଳଙ୍କ । ଏହାକୁ ଦୂର କରିବା ଆମର ପରମ କର୍ତ୍ତବ୍ୟ ।

ଦିଲ୍ଲୀ ଶ୍ରଦ୍ଧାନନ୍ଦ ବସ୍ତିର ହରିଜନମାନେ ଏକ ଅଭିନନ୍ଦନ ପତ୍ରରେ ଗାନ୍ଧିଜୀଙ୍କୁ ପଚାରିଥିଲେ "ଆମ ପାଇଁ ଅଲଗା କୂପ ଖନନ କଲେ କିମ୍ବା ଅଲଗା ବିଦ୍ୟାଳୟ ଖୋଲିଲେ ଆମକୁ ଅଲଗା କରି ରଖିବାର ପ୍ରକ୍ରିୟା ସ୍ଥାୟୀ ହୋଇଯିବ ନାହିଁକି ?" ଗାନ୍ଧିଜୀ ଏ ସଂପର୍କରେ ଏକ ସୁନ୍ଦର କଥା ଲେଖିଥିଲେ । ଗାନ୍ଧିଜୀ କହିଥିଲେ "ଅସ୍ପୃଶ୍ୟତାକୁ ଆମେ ଶାରୀରିକ ସ୍ତରରେ ବିଚାର କରିବାରୁ ଏପରି ଘଟୁଛି । ତଥାକଥିତ ସବର୍ଣ୍ଣମାନେ ଭାବୁଛନ୍ତି, ବୋଧହୁଏ ଏକ ସଙ୍ଗେ ଭୋଜନ କଲେ ଏକ ବିଦ୍ୟାଳୟରେ ଅଧ୍ୟୟନ କଲେ ସେମାନେ ଅସ୍ପୃଶ୍ୟ ହୋଇଯିବେ । ଏହା ଏକ ଭ୍ରମ । ଯେ ପର୍ଯ୍ୟନ୍ତ ସେମାନଙ୍କ ମନରେ ସଂସ୍କାର ନଆସିଛି, ସେ ପର୍ଯ୍ୟନ୍ତ ହରିଜନଭାଇମାନେ କ'ଣ ଶିକ୍ଷାଲାଭରୁ ବଞ୍ଚିତ ହେବେ ? ବିଶୁଦ୍ଧ ଜଳପାନରୁ ବଞ୍ଚିତ ହେବେ ? ତେଣୁ ସେମାନଙ୍କ ସ୍ୱାସ୍ଥ୍ୟ ଓ ଶିକ୍ଷାଦୃଷ୍ଟିରୁ ଏହା କରାଯାଇଛି । ପୁନଶ୍ଚ ଏ ସଂପର୍କରେ ହରିଜନ ପତ୍ରିକାରେ ସେ ଲେଖିଥିଲେ, ""ବର୍ଣ୍ଣବ୍ୟବସ୍ଥା ଆବିଷ୍କୃତ ହେଲାବେଳେ ସେଥିରେ ଉଚ୍ଚନୀଚ ଭାବନା ନଥିଲା ବୋଲି ମୋର ମନେହୁଏ । ଏ ସଂପର୍କରେ କେହି ଉଚ୍ଚ ନୁହନ୍ତି କି କେହି ନୀଚ ନୁହନ୍ତି । ସେଥି ପାଇଁ ଯେ ନିଜକୁ ଉଚ୍ଚ ମନେ କରୁଛି ସେ କଦାପି ଉଚ୍ଚ ନ ହୋଇପାରେ । ଯେ ନିଜକୁ ନୀଚ ମନେକରୁଛି, ସେ ତା'ର ଅଜ୍ଞାନତା ଦୋଷରୁ ସେପରି ଭାବୁଛି । ନିଜକୁ ନୀଚ ମନେ କରିବାକଥା, ଉଚ୍ଚ ହେବାର ସୁଖ ଭୋଗ କରୁଥିବା ଲୋକେ ତାହାକୁ ଶିଖାଇଛନ୍ତି । ବ୍ରାହ୍ମଣଠାରେ ଜ୍ଞାନଥିଲେ, ଜ୍ଞାନ ହୀନ ନିଶ୍ଚୟ ତାକୁ ସମ୍ମାନ କରିବ । ଯେଉଁ ବ୍ରାହ୍ମଣ ଏହି ସମ୍ମାନ ଯୋଗୁ ଅହଂକାରୀ ହୋଇଯିବ କିମ୍ବା ନିଜକୁ ଉଚ୍ଚ ମନେକରିବ, ସେ ସେହି ମୁହୂର୍ତ୍ତରୁ ଆଉ ବ୍ରାହ୍ମଣ ହୋଇ ରହିବ ନାହିଁ । ଗୁଣର ପୂଜା ଚିରଦିନ ହେବ । ମାତ୍ର ଗୁଣବାନ ବ୍ୟକ୍ତି ଯେଉଁ ଦିନଠାରୁ ନିଜକୁ ଅନ୍ୟଠାରୁ ଉଚ୍ଚମନେ କରିବ, ସେହି ଦିନଠାରୁ ତା'ର ସବୁଗୁଣ ଅକାରଣ ହୋଇଯିବ । ଏହି ବର୍ଣ୍ଣ ବ୍ୟବସ୍ଥା ଯାହା ହୋଇଥାଉ ବା ନ ହୋଇଥାଉ, ବର୍ତ୍ତମାନ କେହି ନିଜକୁ ଉଚ୍ଚ ବୋଲାଇ ଏ ସମାଜରେ ଜୀବନ ନିର୍ବାହ କରିପାରିବ ନାହିଁ । ତାହାର ଏ ଦାବୀ ସ୍ୱେଚ୍ଛାରେ ସମାଜ ମାନିନେବ ନାହିଁ । ଜୋର ଜବରଦସ୍ତି ଦ୍ୱାରା ସେ ମୁଣ୍ଡ ନୁଆଁଇ ଦେଇପାରେ, ମାତ୍ର ଦୁନିଆରେ ଯେଉଁ ଜାଗରଣ ଆସିଛି ସେଥିରେ ସ୍ୱେଚ୍ଛାଶ୍ରଭ ବହୁ ପରିମାଣରେ ଦେଖାଦେଇଥିଲେହେଁ ଲୋକମତ ଉଚ୍ଚନୀଚ ଭେଦଭାବକୁ ସହ୍ୟ କରିବାକୁ ଆଉ ପ୍ରସ୍ତୁତ ନୁହନ୍ତି । "

ତେଣୁ ବର୍ତ୍ତମାନ ସମାଜରେ ସ୍ପୃଶ୍ୟ, ଅସ୍ପୃଶ୍ୟ ଭେଦ ବୁଦ୍ଧିହୀନ ନୁହେଁ । ଏଥିରେ ସଂସ୍କାର ଲୋଡ଼ା । ଗାନ୍ଧିଜୀଙ୍କ ମତରେ ଏ ସଂସ୍କାର ଉଭୟ ଦିଗରୁ କରିବାକୁ ହେବ । ଗୋଟିଏ ଦିଗରେ ଅସ୍ପୃଶ୍ୟମାନଙ୍କୁ ନିର୍ମମ ଭାବରେ ପଦଦଳିତ କରି ରଖିଥିବା ତଥାକଥିତ ସବର୍ଣ୍ଣମାନେ, ଅସବର୍ଣ୍ଣମାନଙ୍କ ପ୍ରତି ନିଜର କର୍ତ୍ତବ୍ୟ କରି ଶିଖିବେ । ଅପରପକ୍ଷରେ ଅସବର୍ଣ୍ଣମାନେ ମନ୍ଦ ଅଭ୍ୟାସଗୁଡ଼ିକୁ ଛାଡ଼ି, ଯେପରି ସେମାନଙ୍କ ଜୀବନଯାପନ ପ୍ରଣାଳୀରେ ଆବଶ୍ୟକୀୟ ପରିବର୍ତ୍ତନ କରିପାରିବେ ଓ ସେଥିପାଇଁ ସବର୍ଣ୍ଣମାନେ ସେମାନଙ୍କୁ ସାହାଯ୍ୟ କରିବେ । ଗାନ୍ଧିଜୀଙ୍କ ମତରେ "ଏହି ସଂସ୍କାରର ଫଳଶ୍ରୁତି ହେବ, ପ୍ରଥମତଃ–ଉଚ୍ଚନୀଚ ଭେଦଭାବକୁ ଲୋପ କରିବା ଏବଂ ଦ୍ୱିତୀୟତଃ ସମସ୍ତଙ୍କୁ ଜୀବିକା ଅର୍ଜ୍ଜନ କରିବାର ଅଧିକାର ଦେଇ ସମସ୍ତଙ୍କର ମଜୁରୀ ସମାନ ରଖିବା । ଏହା ଫଳରେ

ଜଣେ ଅନ୍ୟ ଜଣଙ୍କଠାରୁ ନିଜକୁ ନ୍ୟୂନ ମନେ କରିବ ନାହିଁ ଏବଂ ଅପର ପକ୍ଷରେ ଏକ ଅର୍ଥନୈତିକ ସାମ୍ୟତା ମଧ୍ୟ ପ୍ରତିଷ୍ଠା କରାଯାଇ ପାରିବ ।

କିନ୍ତୁ ଗାନ୍ଧିଜୀ ଏହି ଅସ୍ପୃଶ୍ୟତାକୁ କେବଳ ଶାରୀରିକ ସ୍ତରରେ ନ ଦେଖି ଏହାକୁ ଏକ ଆତ୍ମିକ ସ୍ତରରେ ଦେଖୁଥିଲେ । 'ଅସ୍ପୃଶ୍ୟତା' ଶବ୍ଦକୁ ମଧ୍ୟ ସେ ବ୍ୟାପକ ଅର୍ଥରେ ଗ୍ରହଣ କରିଥିଲେ । ୧୯୩୩ ମସିହାରେ ନାଗପୁରଠାରେ ଏକ ବିରାଟ ସାଧାରଣ ସଭାରେ ଗାନ୍ଧିଜୀ କହିଥିଲେ, ହିନ୍ଦୁମାନଙ୍କ ହୃଦୟରୁ ଯଦି ପ୍ରକୃତରେ ଅସ୍ପୃଶ୍ୟତା ଭାବ ଦୂର ହୋଇଯାଏ ଅର୍ଥାତ ସବର୍ଣ୍ଣ ହିନ୍ଦୁମାନେ ଯଦି ଏହି ଭୟାନକ କଳଙ୍କକୁ ସ୍ୱେଚ୍ଛାରେ ବହିଷ୍କୃତ କରିଦିଅନ୍ତି, ତେବେ ଆମ୍ଭେମାନେ ଦେଖିବୁ ଯେ ହିନ୍ଦୁ, ମୁସଲମାନ, ପାର୍ଶୀ, ଖ୍ରୀଷ୍ଟିଆନ–ଆମ୍ଭେମାନେ ନିଜ-ନିଜକୁ ଯାହା ବୋଲାଉ ପଛକେ ଆମେ ସମସ୍ତେ ଏକ ଏବଂ ଅଖଣ୍ଡ ଦେଶରେ ଆମେ ଅଲଗାଅଲଗା ଜାତିନୋହୁ–ସମସ୍ତେ ଏକ । ଏହି ଅସ୍ପୃଶ୍ୟତାର ପ୍ରତିବନ୍ଧକ ଦୂର ହେବା ମାତ୍ରକେ ଆମେ ସମସ୍ତେ ସେହି ଐକ୍ୟ ଉପଲବ୍ଧି କରି ପାରିବା । ମୁଁ ଅନେକଥର କହିଛି, ଅସ୍ପୃଶ୍ୟତା ଗୋଟିଏ ବହୁରୂପୀ ଓ ବହୁ ମସ୍ତକ ବିଶିଷ୍ଟ ରାକ୍ଷସ । ଈର୍ଷା ମଧ୍ୟ ଏକ ପ୍ରକାର ଅସ୍ପୃଶ୍ୟତା । ମୁଁ ଜାଣେ ନାହିଁ, ମୋର ଜୀବଦ୍ଦଶା ଭିତରେ ଅସ୍ପୃଶ୍ୟତା ନିବାରଣ କରିବାର ସ୍ୱପ୍ନ ବାସ୍ତବ ହୋଇ ନାହିଁ । ଯେଉଁମାନେ ଧର୍ମ ଭାବାପନ୍ନ, ଧର୍ମର ବହି ବିଶ୍ୱାସ ନ କରି ପ୍ରକୃତ ଧର୍ମରେ ଅନ୍ତଃନିହିତ ସା ବିଶ୍ୱାସ କରନ୍ତି, ଯେଉଁ ଗୋଟିଏ ପ୍ରକାରର ସୁସ୍ଥ ଅ ବିରାଟ ମାନବ ସମାଜର ଅନିଷ୍ଟ ସାଧନ କରୁଅଛି, ଦୂରୀକରଣରେ ବିଶ୍ୱାସ ନ କରି ସେମାନେ ରହିପାରିବେ ସବି ହୃଦୟରୁ ଏହି ପାପ ଦୂରୀଭୂତ ହୋଇ ପାରିବ, ପରସ୍ପରକୁ ବୁଝିବା ଓ ପରସ୍ପର ମଧ୍ୟରେ ସଦ୍‌ଭା ଦିଗରେ ଆମ୍ଭମାନଙ୍କର ଆଖି ଖୋଲିଯିବ । ଅସ୍ପୃଶ୍ୟତା ଦୂର ହୋଇଗଲେ ମାନବଜାତିର ଯେ କଲ୍ୟାଣ ହେବ, ତାହା କହିବା ଅସମ୍ଭବ ।"– ଗାନ୍ଧିଜୀଙ୍କର ଏହି ମହାନ ସ୍ୱପ୍ନ ଏବେବି ସଂପୂର୍ଣ୍ଣରୂ ହୋଇ ନାହିଁ । ତେଣୁ ଗାନ୍ଧିଜୀଙ୍କର ଏହି ସ୍ୱପ୍ନକୁ କରିବା ନିମନ୍ତେ ପ୍ରତ୍ୟେକ ଭାରତୀୟ ଆଗେଇ ଉଚିତ ଏବଂ ବିଶେଷକରି ଯୁବ ସଂପ୍ରଦାୟ ଏ ଅଗ୍ରଣୀ ଭୂମିକା ଗ୍ରହଣ କରିବା ଉଚିତ ।

ବିଧାୟକ,
ଓଡ଼ିଶା ବିଧାନ ସଭା,
ଭୁବନେଶ୍ୱର ।



ରାଜ ଭବନର ଔଷଧ ଜାତୀୟ ବୃକ୍ଷ ଉଦ୍ୟାନରେ ରାଜ୍ୟପାଳଙ୍କ ଦ୍ୱାରା ଚନ୍ଦନ ଗଛ ରୋପଣ . . .

# ସଞ୍ଚୟର ମହତ୍ତ୍ୱ

ଶ୍ରୀ କୃଷ୍ଣଚନ୍ଦ୍ର ନାୟକ

ସଞ୍ଚୟ ଶବ୍ଦର ଅର୍ଥ ହେଉଛି ସଂଗ୍ରହ କରିବା, ସାଇତି ରଖିବା, ଅପବ୍ୟୟ ନ କରିବା ଓ ସୁବିନିଯୋଗ କରିବା, ଏହା ଦ୍ରବ୍ୟର ଉପଯୋଗୀତାକୁ ବୃଦ୍ଧି କରିଥାଏ । ବହୁ ସମୟରେ ଆମ୍ଭେମାନେ କେତେକ ଜିନିଷର ଉପଯୁକ୍ତ ବ୍ୟବହାର ନକରି ବହୁଳ ବ୍ୟବହାର କରିଥାଉ । ତଦ୍ୱାରା ଏହି ଜିନିଷର ଉପଯୋଗୀତା କମି ଯାଇଥାଏ । ଉଦାହରଣ-ସ୍ୱରୂପ ଗୋଟିଏ ପରିବାରର ଦୈନିକ ଚଳାଚଳ ଲାଗି ପ୍ରାୟ ୪୦ ବାଲ୍‌ଟି ପାଣି ଦରକାର । ତାର ପାଖରେ ପୋଖରୀ ଅଛି ବୋଲି ୬୦ ବାଲ୍‌ଟି ପାଣି ଆଣି ବ୍ୟବହାର କଲେ ଘର ଦ୍ୱାର କାଦୁଅ ହେବ ସିନା ଅଧିକ ସଫା ହେବ ନାହିଁ । ସେହିପରି ଆମ ହାତରେ ଥିବା ଅର୍ଥନୈତିକ ସମ୍ବଳର ଉପଯୁକ୍ତ ବିନିଯୋଗ ଦରକାର ।

ଆୟ ଓ ବ୍ୟୟ ମଧ୍ୟରେ ଥିବା ବଳକା ରାଶି ହେଉଛି ସଞ୍ଚୟ । ଏହି ସଞ୍ଚୟ ଦୁଇଟି ଉପାୟରେ ହାସଲ କରାଯାଇପାରେ । ଆୟଠାରୁ ବ୍ୟୟକୁ କମ୍‌କରି ବା ବ୍ୟୟଠାରୁ ଆୟକୁ ଅଧିକ କରି । ପ୍ରଥମଟିରେ ଆୟ ନିର୍ଦ୍ଦିଷ୍ଟ ଓ ବ୍ୟୟ ପରିବର୍ତ୍ତନଶୀଳ, ଦ୍ୱିତୀୟଟିରେ ବ୍ୟୟ ନିର୍ଦ୍ଦିଷ୍ଟ କିନ୍ତୁ ଆୟ ଅନିର୍ଦ୍ଦିଷ୍ଟ । ବିଚାର କଲେ ଦେଖାଯିବ ଯେ ପ୍ରଥମଟି ଅପେକ୍ଷାକୃତ ସହଜ ପନ୍ଥା । ହଠାତ୍ ଜଣେ ବ୍ୟକ୍ତିର ବା ସାରା ଅର୍ଥନୀତିର ଆୟ ବଢ଼ାଇ ହେବ ନାହିଁ । ଚେଷ୍ଟା କଲେ କିନ୍ତୁ ବ୍ୟୟକୁ କମାଇ ହେବ ।

ବ୍ୟକ୍ତିଗତ ଜୀବନରେ ଆପଣଙ୍କର ବ୍ୟୟକୁ ସଂକୋଚ କରି ଉଦ୍‌ବୃତ୍ତ ରାଶିକୁ ଯେକୌଣସି ଲାଭଜନକ ଉପାୟରେ ବିନିଯୋଗ କରନ୍ତୁ । ଏହି ସଞ୍ଚିତ ଅର୍ଥ ସୁଧ ଅର୍ଜ୍ଜନକରି ଦିନକୁ ଦିନ ବଢ଼ିବାରେ ଲାଗିବ । କ୍ରମଶଃ ଆପଣଙ୍କ ହାତରେ ଥିବା ବଳକା ପୁଞ୍ଜି ଆପଣଙ୍କୁ ଅଧିକ ଆୟ ଦେବାରେ ସକ୍ଷମ ହେବ । ସଞ୍ଚୟ ଦ୍ୱାରା ଆପଣଙ୍କ ହାତରେ ଥିବା ଉଭୟ ପୁଞ୍ଜି ଓ ଆୟର ପରିମାଣ ବୃଦ୍ଧି କରିହେବ । ଏହା ଦ୍ୱାରା ଆପଣ ଯେ କେବଳ ଅଧିକ ସୁଖ ସ୍ୱାଚ୍ଛନ୍ଦ୍ୟରେ ରହି ପାରିବେ ତା'ନୁହେଁ, ଆପଣଙ୍କର ସାମାଜିକ ମର୍ଯ୍ୟାଦା ମଧ୍ୟ ବଢ଼ିଯିବ ।

ସାରା ସମାଜ ବା ଅର୍ଥନୀତି ଲାଗି ସଞ୍ଚୟର ମହତ୍ତ୍ୱ କ'ଣ ଏଠାରେ ବିଚାର କରାଯାଉ । ସଞ୍ଚୟର ଅନ୍ୟ ଏକ ଅର୍ଥ ହେଉଛି ମନ୍ଥର ଭୋଗ । ଆପଣଙ୍କ ଆୟରୁ କିଛି ଅଂଶ ଆପଣ ଆଜି ଉପଭୋଗ ନକରି ୫ ବର୍ଷ ପରେ ଭୋଗ କରିବା ଦ୍ୱାରା ଦେଶର ସୀମିତ ସମ୍ବଳ ଉପରେ ଚାପ କମ୍ ହୋଇଥାଏ । ଆପଣଙ୍କ ଦ୍ୱାରା ଉପେକ୍ଷିତ ଏହି ଦ୍ରବ୍ୟ ସମାଜର ବହୁ ଉପକାର କରିଥାଏ । ଆମ୍ଭେମାନେ ପ୍ରତ୍ୟେକେ ଯେତେ ରେଡ଼ିଓ ସେଟ୍ ବା ଟେପ୍‌ରେକର୍ଡର କିଣୁଛୁ ତାହା ନିଶ୍ଚୟ ରପ୍ତାନୀ କରାଯାଇ ଦେଶ ଲାଗି ବହୁ ବୈଦେଶିକ ମୁଦ୍ରା ଅର୍ଜ୍ଜନ କରାଯାଇ ପାରନ୍ତା । ସେହିପରି ସିମେଣ୍ଟ, ଲୁହା ପ୍ରଭୃତି ଦ୍ରବ୍ୟ ଉପରୁ ବ୍ୟକ୍ତିଗତ ଚାହିଦାର ଚାପ କମିଲେ ଦେଶର ଉନ୍ନୟନମୂଳକ କାର୍ଯ୍ୟରେ ଅଧିକ ପରିମାଣରେ ବ୍ୟବହାର ହୋଇପାରନ୍ତା । ଜଣେ ବ୍ୟକ୍ତି ହେଉ ବା ଗୋଟିଏ ଅର୍ଥନୀତି ହେଉ ଏହାର ଉନ୍ନତି ସାଧନ ହୋଇ ପାରିବ କେବଳ ଅଧିକ ଉତ୍ପାଦନ ମାଧ୍ୟମରେ । ଉତ୍ପାଦନ ସମ୍ଭବ ହୁଏ ବିନିଯୋଗ (Investment) ଦ୍ୱାରା ଓ ବିନିଯୋଗ ସମ୍ଭବ ହୁଏ ସଞ୍ଚୟ ଦ୍ୱାରା । ତେଣୁ ସଞ୍ଚୟ ଓ ସଞ୍ଚିତ ସମ୍ବଳର ବିନିଯୋଗ ଉନ୍ନତିର ମୂଳ ରହସ୍ୟ । ଆମ ଦେଶରେ ଉନ୍ନୟନମୂଳକ କାର୍ଯ୍ୟ ଯେ ଧିମେଇ ପଡ଼ିଛି, ତାର କାରଣ ଆମ ଆର୍ଥିକ ଅଭାବ ନୁହେଁ—ସଞ୍ଚୟର ଅଭାବ । ତାତ୍ତ୍ୱିକ ଦୃଷ୍ଟି କୋଣରୁ ବିଚାର କଲେ ଦେଖାଯାଏ ଯେ ସଞ୍ଚୟ ଓ ବିନିଯୋଗର ପରିମାଣ ସର୍ବଦା ସମାନ । ସଞ୍ଚୟ କମ୍ ହେଲେ ବିନିଯୋଗ କମ୍ ହୁଏ ଓ ବିନିଯୋଗ କମ୍ ହେଲେ

ଅର୍ଥନୈତିକ ଅଗ୍ରଗତି ବାଧାପ୍ରାପ୍ତ ହୁଏ । ବର୍ତ୍ତମାନ ଅବସ୍ଥାରେ ଭାରତର ଉନ୍ନତି ଲାଗି ଆବଶ୍ୟକ ଅଧିକ ସମ୍ବଳ । ଏହି ସମ୍ବଳ ମିଳିପାରିବ କେବଳ କମ୍ ପରିମାଣରେ ଭୋଗ ଦ୍ୱାରା । ତତ ଉଦ୍ବୃତ୍ତ ବଳକା ସମ୍ବଳକୁ ବିନିଯୋଗ କରାଯାଇ ଆହୁରି ଅଧିକ ସମ୍ବଳ ସୃଷ୍ଟି କରାଯାଇ ପାରିବ। ଏହି ଉପାୟରେ ଦେଶର ଉନ୍ନତି ସାଧନ ପ୍ରକ୍ରିୟା ତ୍ୱରାନ୍ୱିତ ହୋଇପାରିବ ।

ସଞ୍ଚୟ ଲାଗି ଆବଶ୍ୟକ ସଞ୍ଚୟ କରିବାର କ୍ଷମତା ଓ ସଞ୍ଚୟ କରିବାର ଇଚ୍ଛା । ସଞ୍ଚୟ କରିବାର କ୍ଷମତା ନିର୍ଭର କରେ ଆୟ ଉପରେ । କିନ୍ତୁ ଆୟ ଅଧିକ ହେଲେ ସଞ୍ଚୟ ଅଧିକ ହେବ । ଏହା ନିର୍ଦ୍ଦିଷ୍ଟ ରୂପେ କୁହାଯାଇ ପାରିବ ନାହିଁ । କାରଣ ସଞ୍ଚୟ କରିବାର ଉଦ୍ଦେଶ୍ୟ ମଧ୍ୟ ସଞ୍ଚୟର ପରିମାଣ ନିର୍ଦ୍ଧାରଣ କରେ । ସଞ୍ଚୟ ମନୋଭାବ ସାମାଜିକ ପ୍ରକାର ଭେଦରେ ଭିନ୍ନ ରୂପ ଧାରଣ କରିଥାଏ । ଭୋଗ କରିବାର ଇଚ୍ଛା ଦ୍ୱାରା ସଞ୍ଚୟର ମାତ୍ରା ପ୍ରଭାବିତ ହୋଇଥାଏ । କେତେକ ମୌଳିକ ଆବଶ୍ୟକତାକୁ ଛାଡ଼ି ଦେଲେ ଭୋଗର ପରିମାଣ ନିର୍ଭର କରେ ଆପଣଙ୍କ ଭୋଗ ସଚେତନତା ଉପରେ । ଗୋଟିଏ ରେଡ଼ିଓ ସେଟ୍ ରଖିବାର ଇଚ୍ଛା ନଥିଲେ ଆପଣ ବଳକା, ୫୦୦ ଟଙ୍କା ରଖି ପାରିବେ । କିନ୍ତୁ ରେଡ଼ିଓ କିଣିବାର ଇଚ୍ଛା ଦ୍ୱାରା ଆପଣଙ୍କର ସେହି ୫୦୦ ଟଙ୍କା ସଞ୍ଚୟ ହୋଇ ପାରିବ ନାହିଁ । ଭୋଗ ଲିପ୍ସା ସଂପୂର୍ଣ୍ଣ ରୂପେ ବ୍ୟକ୍ତିଗତ ନୁହେଁ । କିଛି ପରିମାଣରେ ସମାଜଗତ । ଆପଣଙ୍କର ପଡ଼ୋଶୀ ବା ସହକର୍ମୀଙ୍କର ଭୋଗ ଦ୍ୱାରା ଆପଣ ମଧ୍ୟ ପ୍ରଭାବିତ ହୋଇଥାନ୍ତି । ଏହାକୁ ପ୍ରଦର୍ଶନୀ ପ୍ରକ୍ରିୟା ବା Demonstration effect କୁହାଯାଏ ।

ଅନୁଧ୍ୟାନ କରି ଜଣାପାଇଛି ଯେ ଆତ୍ମନିର୍ଭରଶୀଳ ପ୍ରଗତି ଲାଗି (Self-sustained growth) ଗୋଟିଏ ଅର୍ଥନୀତି ତାହାର ଜାତୀୟ ଆୟର ପ୍ରାୟ ଏକ ଚତୁର୍ଥାଂଶ ବା ଶତକଡ଼ା ୨୫ ଭାଗ ସଞ୍ଚୟ କରିବା ଉଚିତ । ଆମ ଦେଶରେ ସଞ୍ଚୟର ପରିମାଣ ଯଥେଷ୍ଟ ବୃଦ୍ଧି ପାଇଥିଲେ ମଧ୍ୟ ଏହା ଏଯାଏ ଶତକଡ଼ା ୨୫ ଭାଗରେ ପହଞ୍ଚି ପାରିନାହିଁ ।

ସେମାନେ ସେମାନଙ୍କର ଆୟର ସମସ୍ତ ଅଂଶ ଦେଇଥାନ୍ତି । ପୁନଶ୍ଚ ଆମ ଦେଶରେ ବ୍ୟକ୍ତି ସ୍ୱ ରହିଥିବାରୁ ବ୍ୟକ୍ତିଗତ ଆୟରୁ ଭୋଗ ଓ ସଞ୍ଚୟର ସରକାର ନିର୍ଦ୍ଧାରଣ କରିପାରନ୍ତି ନାହିଁ ।

ମୁଦ୍ରାସ୍ଫୀତି ବ୍ୟକ୍ତିଗତ ସ୍ତରରେ ସଞ୍ଚୟର ପ୍ର ପ୍ରଧାନ ଶତ୍ରୁ । ପ୍ରଥମତଃ ଜିନିଷପତ୍ରର ଦର ହୋଇ ବଢୁଥିବାରୁ ସମାନ ପରିମାଣର ଜିନିଷ କ୍ରୟ ଲାଗି କ୍ରମଶଃ ଅଧିକରୁ ଅଧିକ ଅର୍ଥ ବ୍ୟୟ ହୋଇ ଦ୍ୱିତୀୟତଃ ମୁଦ୍ରାର ମୂଲ୍ୟ ହ୍ରାସ ପାଉଥିବାରୁ ସଞ୍ଚୟ ଲୋକମାନଙ୍କର ଆଗ୍ରହ କମିଯାଇଥାଏ । କିନ୍ତୁ ମୁଦ୍ର ସଫଳରୂପେ ଦମନ କରାଯାଇ ପାରେ ସଞ୍ଚୟର ବୃଦ୍ଧି ଏଥିଲାଗି ସମୟେ ସମୟେ ସରକାରଙ୍କୁ କେତେକ ଦୃଢ଼ ଅପ୍ରିୟ ପଦକ୍ଷେପ ଗ୍ରହଣ କରିବାକୁ ପଡ଼ିଥାଏ । ମଧ୍ୟରୁ ମଜୁରୀ ସମୀକରଣ (Wage f ବୋନସ୍ ଓ ଡ଼ିଭିଡ଼େଣ୍ଡ ବିତରଣ ଉପରେ ନି ଓ ବାଧ୍ୟତାମୂଳକ ସଞ୍ଚୟ ବ୍ୟବସ୍ଥା ଅନ୍ୟତମ । ନିୟନ୍ତ୍ରିତ ଅର୍ଥନୀତରେ ମୁଦ୍ରାସ୍ଫୀତୀକୁ ଜାତୀୟ ବୃଦ୍ଧିର ଆୟୁଧରୂପେ ମଧ୍ୟ ବ୍ୟବହାର କରାଯାଇ ପ କିନ୍ତୁ ଏହା ସର୍ବଦା ସଫଳ ହେବାର ସମ୍ଭାବନା ଖୁବ୍ ତେଣୁ ଗୋଟିଏ ସମୃଦ୍ଧିକାମୀ ଅର୍ଥନୀତିରେ ବ୍ୟକ୍ତିଗତ ସଞ୍ଚୟ ବୃଦ୍ଧିଲାଗି ଆଗ୍ରହ ସୃଷ୍ଟି କରାଇବାକୁ ସର୍ବଦା ଦେବା ଆବଶ୍ୟକ ।

ଏହା ନିଃସନ୍ଦେହରେ କୁହାଯାଇପାରେ ଯେ ବ୍ୟୟିତା ମନୁଷ୍ୟର ଗୋଟିଏ ସୁଗୁଣ । ତେଣୁ ଉପଯୋଗିତା ବୁଝିପାରି ଆମେମାନେ ସମସ୍ତେ ଏ ମନଯୋଗୀ ହେଲେ ଉଭୟ ବ୍ୟକ୍ତିଗତ ଓ ସାମାଜିକ ବହୁ ଉପକାର ସାଧିତ ହେବ ।

ଷ୍ଟେଟ୍ ବ୍ୟାଙ୍କ୍ ଅଫ୍ ଇଣ୍ଡିଆ,
ଭୁବନେଶ୍ୱର-୭୫୧୦୦୧



ଶ୍ରୀ ଅରବିନ୍ଦଙ୍କ ପବିତ୍ର ଦେହାବଶେଷ ଗ୍ରହଣ ...

## ପଶ୍ଚିମ ଓଡ଼ିଶାର ଏକ ପର୍ବ

# ଛେର୍ ଛେରା

ଶ୍ରୀ ଯୁଗଳ କିଶୋର ଷଡ଼ଙ୍ଗୀ

ଛେର୍ ଛେର୍ ଛେରା, ଛେର୍ ଛେର୍ ଛେରା
ଛେର୍ ଛେରା ଧାନ୍ ଦେ ଡାଲ, ତର କବାର କାମ୍ ଥାଉ ତାଲ୍
ଛେର୍ ଛେର୍ ଛେରା ।

ପୌଷ ପୂର୍ଣ୍ଣିମା ଦିନ ବଡ଼ି ସକାଳୁ ବାଡ଼ି ଖଣ୍ଡିଏ ଲେଖାଏଁ ଧରି ବାଳକମାନେ ଦଳଦଳ ହୋଇ ଘରମାନଙ୍କୁ ଛେର୍ ଛେରା ଭେଦା ମାଗି ଆସିଥାଆନ୍ତି । ସେମାନଙ୍କର ହୃଦୟରେ କେଉଁ ଏକ ଅଫୁରନ୍ତ ଆନନ୍ଦ ଲହରୀ ଖେଳାଇଥାଏ ଏହି ଛେର୍ ଛେରା । ପଶ୍ଚିମ ଓଡ଼ିଶାର ପ୍ରତ୍ୟେକ ପୁରପଲ୍ଲୀରେ ଏହି ବିଶିଷ୍ଟ ପର୍ବ ଛେର୍ ଛେରାର ଦୃଶ୍ୟ ଅତୀବ ମନୋରମ ।

### ଛେର୍ ଛେରା କିମ୍ବଦନ୍ତୀ

"ଛେର୍ ଛେରା" ଏକ ଆଞ୍ଚଳିକ ଶବ୍ଦ । ହେଲେ ଛେର ଛେରାର ଅର୍ଥ ଛେରିବା ବା ତରଳ ମଳତ୍ୟାଗ କରିବା । ଅନ୍ୟ ଅର୍ଥରେ ଭୟରେ ତରଳଝାଡ଼ା ହୋଇଯିବା । ପଶ୍ଚିମ ଓଡ଼ିଶାର ଚାଷୀ ଫସଲ ଆମଦାନୀ କଲା ପରେ କେଉଁ ଅଜଣା-କାଳରୁ ଯେ ଏହି ସଂସ୍କୃତିକୁ ସୃଷ୍ଟିକରି ପାଳନ କରି ଆସୁଅଛି, ତାର ହିସାବ କିଏ ରଖିନାହିଁ । ଘରେ ଘରେ, ପୁରେ ପୁରେ ନୂଆଧାନ, ପିଠାପଣାର ସ୍ରୋତ ଏଇ ଦିନ ବହି ଯାଏ । ହେଲେ ପିଠାମଣ୍ଡା ଲୋଭରେ କେଉଁ ବୁଢ଼ୀ ନୂଆ କୁଣ୍ଡାମିଶା ପିଠା ଖାଇ ଅଜୀର୍ଣ୍ଣ ଝାଡ଼ାରେ ଆକ୍ରାନ୍ତ ହୋଇଥିଲା ତାହାର ଏକ କିମ୍ବଦନ୍ତୀ ଯାହାକି କ୍ଷୁଦ୍ର ମଣ୍ଡିସ୍ୱଧାରୀ ବାଳକ ବାଳିକାଙ୍କ ତୁଣ୍ଡରୁ ଶୁଣିବାକୁ ମିଳେ—

"ଛେର୍ ଛେର୍ ଛେରା, ଲ ଘରବୁଢ଼ୀ କାହିଁଗଲୁ
କୁଁଡାପିଠା ଖାଇ ଛେରେଇ ହେଲୁ, ଛେର୍ ଛେର୍ ଛେରା ।"

### ଛେର୍ ଛେରା ପର୍ବର ଉଦ୍ଦେଶ୍ୟ

ଏହା କୃଷିଭିତ୍ତିକ ଏକ ସାମାଜିକ ପର୍ବ । ଚାଷୀ ତାର ମାଟି ମାଁ କୋଳରୁ ସୁନାର ଫସଲ ଆମଦାନୀ କରେ । ଏହି ଆମଦାନୀ ପୂର୍ବରୁ ସେ କେତେ ଯେ ଗ୍ରୀଷ୍ମ, ବର୍ଷା ଶୀତକୁ ସହ୍ୟ କରିଥାଏ ତାର କଳନା ନାହିଁ । ବିଲବାଡ଼ିରୁ ଲକ୍ଷ୍ମୀଠାକୁରାଣୀଙ୍କ ଆଗମନରେ ତାର ହୃଦୟ ଆନନ୍ଦରେ ନାଚି ଉଠେ । ତେଲଲୁଣ ସଂସାରର ଚଳଣିଚିନ୍ତା ବର୍ଷକ ପାଇଁ ହେଉ ବା ଛଅ ମାସ ପାଇଁ, ହେଉ ଅନେକ ଅନୁପାତରେ ସେ ସଂପୂର୍ଣ୍ଣରୂପେ ପାଶୋରି ଯାଏ । ତେଣୁ କୃଷିକାର୍ଯ୍ୟର ସଫଳତା ହିଁ ଏହି ପର୍ବ ପାଳନର ମୁଖ୍ୟ ଉଦ୍ଦେଶ୍ୟ ଓ ସ୍ମାରକୀ ।

### ପର୍ବପାଳନ କିପରି କରାଯାଏ

ପୌଷ ପୂର୍ଣ୍ଣମୀ ଦିନ ପଶ୍ଚିମ ଓଡିଶାର ପୁରପଲ୍ଲୀ-ବାସୀଗଣ ପ୍ରଥମେ ଛେର ଛେରା ମାଗୁଥିବା ଦଳକୁ ବିଦାୟ ଦିଅନ୍ତି । ଘରୁ ଧାନ ଆଣି ସମସ୍ତଙ୍କୁ ସନ୍ତୁଷ୍ଟ କରନ୍ତି । ଏହାଛଡ଼ା ଅନ୍ୟାଦଳଗୁଡ଼ିକ ରାସ୍ତାରେ ଖଣ୍ଡେ ଲେଖାଏଁ ଦଉଡ଼ି ଲଗାଇ ରାସ୍ତାକୁ ଅବରୋଧ କରନ୍ତି । ଏତିକିବେଳେ ଯାତାୟତ କରୁଥିବା ଲୋକମାନଙ୍କଠାରୁ ଧାନ, ଚାଉଳ, ପଇସା, ପନିପରିବା ଇତ୍ୟାଦି ପାଇଥାଆନ୍ତି । ବିଶେଷତଃ ବଜାର ଦିନମାନଙ୍କରେ ଏହି ଛେର୍ ଛେରା ଭେଦା ବହୁତ ପରିମାଣରେ ମିଳିଥାଏ । ଚାଷୀକୁଳ ଆମୋଦପ୍ରମୋଦରେ ସମୟ କଟାନ୍ତି । ଘରର ଭୁଆସୁଣୀମାନେ ସ୍ନାନକରି ମା ଲକ୍ଷ୍ମୀଙ୍କ ପୂଜା କରି ଥାଆନ୍ତି । ନୂଆଁ ପିଠା, କ୍ଷୀରି, ମଣ୍ଡା ତିଆରି କରି ସମସ୍ତେ ଖାଇଥାଆନ୍ତି ଓ ପଡ଼ୋଶୀ, ଗାଁ ଚୌକିଦାର, ଝାଙ୍କର, ଅତିଥିମାନଙ୍କୁ ବିତରଣ କରିଥାଆନ୍ତି । ଏହି ଦିନରେ ପ୍ରତ୍ୟେକ ସାହିରେ ଛେଳି, ମେଣ୍ଢା ଇତ୍ୟାଦି ମରାଯାଏ ଓ ଘରମାନଙ୍କରେ ମାଂସ ରନ୍ଧା ହୋଇଥାଏ ।

ଅଭ କୌଣସି କୌଣସିଗ୍ରାମରେ ବଡ଼ ଧରଣର ଭୋଜି ମଧ୍ୟ ହୋଇଥାଏ ଓ ଏଥିରେ ଆବାଳବୃଦ୍ଧବନିତା ଆନନ୍ଦରେ ଅଂଶ ଗ୍ରହଣ କରିଥାଆନ୍ତି । ତଦ୍ଵାରା ନିଜ ନିଜ ମଧ୍ୟରେ ଆତ୍ମୀୟତା ବଢେ ଓ ଏକତା ସୃଷ୍ଟି ହୋଇଥାଏ ।

ଦ୍ଵିତୀୟତଃ ଏହି ଛେର୍ ଛେରା ଉତ୍ସବଟିକୁ ଲୋକେ ନୃତ୍ୟ, ଗୀତାଦିରେ ମୁଖରିତ କରିଥାଆନ୍ତି । ଘୁମୁରାନାଚ ଦଳର ନାଚ ଇତ୍ୟାଦି ଲୋକେ ଉପଭୋଗ କରିଥାଆନ୍ତି ।

ଏହି ଦିନ ଗରିବଠୁ ଧନୀ ପର୍ଯ୍ୟନ୍ତ ସମସ୍ତେ ଏହି ପର୍ବ ପାଳନ କରନ୍ତି । ସାହୁକାରମାନେ ତାଙ୍କର ବାର୍ଷିକିଆ ହଳିଆ ଏହି ଦିନଠାରୁ ରଖିଥାଆନ୍ତି । ବର୍ଷଟିଏ ପୂରିଗଲେ ନୂଆରୂପେ ଲେଖାପଢ଼ା କରାଯାଏ । ଯେ କୋଣସି ଗୃହୀ ମୂଲିଆ ବି ହେଉ ସେ ସାହୁକାରଠାରୁ ବର୍ଷର ଯେ କୋଣସି ସମୟରେ କିଛି ଋଣ ନିଏ, ସେ ଏହି ପୋଷ ପୂର୍ଣ୍ଣମୀ ଦିନଟିକୁ କଣ୍ଠ ରଖିଥାଏ ।

ପ୍ରକୃତରେ ଏହି ଛେରଛେରା ପର୍ବପାଳନରେ
ରହିଛି । ଏହି ପର୍ବ ଲୋକମାନଙ୍କ ମଧ୍ୟରେ
ମନୋଭାବ, ଜାତି-ଧର୍ମ-ବର୍ଣ୍ଣ ନିର୍ବିଶେଷରେ
ଆନନ୍ଦ ଅନ୍ବେଷଣ ପ୍ରକୃତିଶିକ୍ଷା, ପରିବାର ଚଳଣୀର
କର୍ମପନ୍ଥା ଇତ୍ୟାଦିର ମହାନ୍ ଶିକ୍ଷାରେ ସମସ୍ତଙ୍କୁ ଉଦ୍ବୁ
ଭୋଜନ ଓ ନୃତ୍ୟ ଗୀତ ବାଦ୍ୟର ସମ୍ମିଶ୍ରଣରେ
ଖାଲି ଶୁଣିବାକୁ ମିଳେ

“ ଛେର ବୃଢ଼ୀ ଛେରଛେରା
ଛେରିଗଲି ବଡ଼ପରା
ବଡ଼ପରାଥୁଁ ଆଏଲିନ
କୁଁଢ଼ାପିଠା ଖାଏଲିନ
ଆଏଲ୍ ପିନି କାଏଲ୍ ପୁନି, ଫଟାଲୁଗା ତୁନ
ଛେର ଛେର ଛେରା ।”

ଶିକ୍ଷା ସଂପ୍ରସାରଣ ଅଧିକାରୀ, ମୁରିବାହାଲ ବ୍ଲକ,
ପୋ:ମୁରିବାହାଲ
ଜି:ବଲାଙ୍ଗୀର




ନୀଳୁ ଚଳଚ୍ଚିତ୍ର 'ବାବୁ'ର ପ୍ରଥମ ପ୍ରଦର୍ଶନ ଉତ୍ସବରେ

# ସଂସ୍କୃତ ଭାଷା ଓ ବର୍ତ୍ତମାନ ସମାଜ

ଶ୍ରୀ ସୁଶାନ୍ତ କୁମାର ପଣ୍ଡା

ସଭ୍ୟତାର ଜୟଯାତ୍ରାରେ ଭାଷା ଏକ ଅବିଚ୍ଛେଦ୍ୟ ଅଙ୍ଗ । ପୃଥିବୀରେ ପ୍ରଚଳିତ ପ୍ରାୟ ତିନିହଜାର ଭାଷା ମଧ୍ୟରୁ ସଂସ୍କୃତ ଏକ ପ୍ରାଚୀନତମ ଭାଷା । କେତେକ ବିଦ୍ୱାନ ଏହାର ପ୍ରାଚୀନତାକୁ ଗ୍ରୀକ୍ ଓ ଲାଟିନ୍‌ଠାରୁ ମଧ୍ୟ ଅଧିକ ବୋଲି ସ୍ୱୀକାର କରିଥାନ୍ତି ।

ସୁପ୍ରାଚୀନ କାଳରୁ ଆଜି ପର୍ଯ୍ୟନ୍ତ ପ୍ରବାହିତ ସଂସ୍କୃତ ଭାଷାର ଇତିହାସ ଅନୁଧ୍ୟାନ ସ୍ୱତନ୍ତ୍ର ଉଦ୍ୟମ ସାପେକ୍ଷ । ଏଠାରେ କେବଳ ବର୍ତ୍ତମାନ ପରିପ୍ରେକ୍ଷୀରେ ଏହାର ସ୍ଥିତି ସଂପର୍କରେ ସଂକ୍ଷିପ୍ତ ଆଲୋଚନା ମାତ୍ର କରାଯାଉଅଛି ।

ସଂସ୍କୃତ ଭାଷା କେବେ ଭାରତରେ କଥିତ ଭାଷା ଥିଲା କି'ନା ଏ ସଂପର୍କରେ ପାଶ୍ଚାତ୍ୟ ପଣ୍ଡିତମାନେ ସନ୍ଦେହ ପୋଷଣ କରୁଥିଲେ ମଧ୍ୟ ପାଣିନୀ ଓ ଯାସ୍କ ପ୍ରମୁଖ ଆଚାର୍ଯ୍ୟମାନଙ୍କର ଗ୍ରନ୍ଥ ଅଧ୍ୟୟନ କଲେ ଜଣାଯାଏ ଯେ ପାଣିନୀ 'ସଂସ୍କୃତ ଭାଷା' ସ୍ଥାନରେ କେବଳ ଭଷା ହିଁ ବ୍ୟବହାର କରିଅଛନ୍ତି । ଯାହାର ଅର୍ଥ କଥିତ ଭଷା ବୋଲି ବୁଝିବା ପାଇଁ ହେବ । ପ୍ରାକୃତ କଥିତ ଭାଷା ଥିଲା ବୋଲି ଏକ ଦୃଢ଼ ମତ ପ୍ରଚଳିତ ଥିଲେହେଁ ସମସ୍ତେ ସଂସ୍କୃତ ବୁଝିପାରୁଥିଲେ, ଯେପରି ବର୍ତ୍ତମାନ ସମାଜରେ ଶିକ୍ଷିତମାନଙ୍କର ଭାଷା ନିମ୍ନ ଶ୍ରେଣୀର ଜନତାଙ୍କର ଭଷାଠାରୁ ପୃଥକ, ମାତ୍ର ସମସ୍ତେ ବକ୍ତାଙ୍କର ଅଭିପ୍ରାୟକୁ ବୁଝିଥାନ୍ତି ।

ବୈଦିକ କାଳରେ ସଂସ୍କୃତର ବହୁଧା ବିଭକ୍ତ ରୂପକୁ ଏକ ସ୍ଥିର ନିର୍ଦ୍ଦିଷ୍ଟ ରୂପ ବିଗ୍ରହ ପ୍ରଦାନ କରିଥିଲେ ପାଣିନୀ । ତାଙ୍କ ପରବର୍ତ୍ତୀ କାଳରେ ସାହିତ୍ୟିକମାନେ ତତ୍‌କୃତ ବ୍ୟାକରଣ ନିୟମକୁ ଅନୁସରଣ କରିବାକୁ ଲାଗିଲେ । ମାତ୍ର ଜନଗଣଙ୍କର ମୁଖର ଭାଷା ପରିବର୍ତ୍ତିତ ହେବାକୁ ଲାଗିଲା ସ୍ୱାଭାବିକ ଭାବରେ । ତେଣୁ ବିଭିନ୍ନ ପ୍ରାକୃତ ଓ ପ୍ରାନ୍ତୀୟ ଭାଷାଗୁଡ଼ିକର ସୃଷ୍ଟି ହୋଇ ନବ୍ୟ ଭାରତୀୟ ଆର୍ଯ୍ୟ ଭାଷାରେ ପରିଣତ ହୋଇଛି, କିନ୍ତୁ ସଂସ୍କୃତ ଭଷାରେ ସେହି ପ୍ରାଚୀନ କାଳରୁ ଲେଖାପଢା ଚାଲିଛି । ଏହି ଭାଷାର ବିଶେଷ କିଛି ପରିବର୍ତ୍ତନ ହୋଇ ନାହିଁ । ଯାହା କିଛି ହୋଇଛି ସୁଦୀର୍ଘ କାଳ ବ୍ୟବଧାନ ତୁଳନାରେ ତାହା ନଗଣ୍ୟ ଓ ଅକିଞ୍ଚିତ୍‌କର ।

ଭାରତର ପ୍ରଦେଶ ଗଠନକୁ ଲକ୍ଷ୍ୟକଲେ ଜଣାଯାଏ ତାହା ପ୍ରଧାନତଃ ଭାଷାଭିତ୍ତିକ । ମୂଳତଃ ତାହାକୁ ଦୁଇ ଭାଗରେ ବିଭକ୍ତ କରାଯାଇ ପାରେ, ଯଥା—ଆର୍ଯ୍ୟଗୋଷ୍ଠୀ ଓ ଦ୍ରାବିଡ଼ ଗୋଷ୍ଠୀ । ଉଭୟ ଭାଷା ପରିବାରର ଶବ୍ଦାବଳୀକୁ ଅନୁଧ୍ୟାନ କଲେ ଜଣାଯାଏ ସଂପୃକ୍ତ ଭାଷାମାନଙ୍କରେ ତିଳତଣ୍ଡୁଳ ନ୍ୟାୟରେ ସଂସ୍କୃତ ଶବ୍ଦାବଳୀ ସ୍ଥାନ ଲଭିଛି ।

ପ୍ରତିଷ୍ଠିତ ଦୁଇ ବିଶିଷ୍ଟ ମହାକାବ୍ୟ ରାମାୟଣ ଏବଂ ମହାଭାରତ ଆଦର୍ଶବାଦୀ, ନୀତିବାଦୀ ଓ ଉନ୍ନତ ସାହିତ୍ୟ ହୋଇଥିବାରୁ ଓ ସରଳ ସଂସ୍କୃତରେ ରଚିତ ହୋଇଥିବାରୁ ହଜାର ହଜାର ବର୍ଷ ଧରି ସମଗ୍ର ଭାରତୀୟ ଜଣମାନସକୁ ବିପୁଳ ଭାବରେ ପ୍ରଭାବିତ କରିପାରିଛି । ପ୍ରତ୍ୟେକ ଭାରତୀୟ-ଭାଷାସାହିତ୍ୟରେ ଅଜସ୍ର ସାରସ୍ୱତ ସୃଷ୍ଟି ଉକ୍ତ ମହାକାବ୍ୟ ଦୁଇଟିକୁ ଆଧାର କରି ସୃଷ୍ଟି ହୋଇ ଯାଇଛି ଓ ହେଉଛି ମଧ୍ୟ ।

ଭାରତରେ ସ୍ୱୀକୃତି ପ୍ରାପ୍ତ ପ୍ରାନ୍ତୀୟ ଭାଷା ସହିତ ସଂସ୍କୃତ ଓ ଇଂରାଜୀକୁ ସମ୍ବିଧାନ ସ୍ୱୀକୃତି ଦେଇଅଛି । କେନ୍ଦ୍ର ସାହିତ୍ୟ ଏକାଡେମୀ ସଂସ୍କୃତ ଭାଷାରେ ରଚିତ ଉଚ୍ଚକୋଟୀର କାବ୍ୟ, ନାଟକ ଓ ଅନ୍ୟାନ୍ୟ ପୁସ୍ତକଗୁଡ଼ିକୁ ପୁରସ୍କୃତ କରିଥାନ୍ତି ଓ ସଂପୃକ୍ତ ସ୍ରଷ୍ଟାମାନେ ସମ୍ମାନିତ ହୋଇଥାନ୍ତି ।

ବର୍ତ୍ତମାନ ସମାଜର ସକଳ କ୍ଷେତ୍ରରେ ରାଜନୀତି ପ୍ରବେଶ କଲାପରି ଅତୀତର ସମାଜ ଥିଲା ଧର୍ମ କେନ୍ଦ୍ରୀକ । ତେଣୁ ପ୍ରାତହିକ ହୋମ ଯଜ୍ଞଠାରୁ ଆରମ୍ଭ କରି ଦେବାର୍ଚ୍ଚନା ପର୍ଯ୍ୟନ୍ତ ସକଳ ଧର୍ମୀୟ ଆଚରଣଗୁଡ଼ିକର ଭାଷା ଥିଲା ସଂସ୍କୃତ । ସାଂପ୍ରତିକ କାଳରେ ପ୍ୟାଣ୍ଟ, କୋଟ୍ ସହିତ ଚନ୍ଦନ, ସିନ୍ଦୁର

ବା ଉତ୍ତର ଟିକା କପାଳରେ ଧାରଣ କଲାପରି ସାମାଜିକ ସକଳ ମାଙ୍ଗଳିକ କ୍ରିୟା କର୍ମର ପୁରୋହିତ ମନ୍ତ୍ରପାଠ କରିଥାନ୍ତି, ତତ୍ ସହିତ ଅନେକ ସ୍ଥଳରେ କର୍ତ୍ତା ମଧ୍ୟ ମନ୍ତ୍ରପାଠ କରିଥାନ୍ତି । ତେଣୁ ସଂସ୍କୃତ ଭାଷାକୁ ଦୈନନ୍ଦିନ ଜୀବନ ଚର୍ଯ୍ୟାରେ ଭକ୍ତି ଓ ସମ୍ମାନ କରାଯାଇଥାଏ।

ସାଂପ୍ରତିକ କାଳରେ ସିନେମାର ପ୍ରଭାବ ଅଳ୍ପ ନୁହେଁ । ଅନ୍ୟାନ୍ୟ ବହୁ ଜନ କଥିତ (ବ୍ୟବହୃତ) ଭାଷା ଥିବା ସ୍ଥଳେ ସଂସ୍କୃତ ଭାଷାରେ ରଚିତ ଓ ଆଧ୍ୟାତ୍ମିକ ଦୃଷ୍ଟି ସଂବଳିତ 'ଆଦି-ଶଙ୍କରାଚାର୍ଯ୍ୟ' ରୋପ୍ୟକମଳ 'ପୁରସ୍କାର ଲାଭ କରିବା ଗୌରବର ବସ୍ତୁ ହୋଇଛି ।

ଭାଷାତାତ୍ତ୍ୱିକ ଦୃଷ୍ଟିରୁ ବିଚାର କଲେ ଜଣାଯାଏ–ଆର୍ଯ୍ୟ ଓ ଦ୍ରାବିଡ଼ ଭାଷାଗୋଷ୍ଠୀର ଶବ୍ଦାବଳୀରେ ପ୍ରାୟ ଅର୍ଦ୍ଧେକ ଶବ୍ଦ ସଂସ୍କୃତର ବୋଲି ପୂର୍ବରୁ କଥିତ ହୋଇଅଛି । ଯେଉଁ ଶବ୍ଦ-ଗୁଡ଼ିକ ନ. ଭା. ଆ. ରେ ଅବିକୃତ ଭାବରେ ସ୍ଥାନ ଲାଭ କରିଅଛି, ସେଗୁଡ଼ିକୁ ତତ୍ସମ ଶବ୍ଦ କୁହାଯାଏ । ଅର୍ଥାତ ସଂସ୍କୃତ ଭାଷାରେ ଯାହା, ବର୍ତ୍ତମାନ ଉପଲବ୍ଧ ଭାଷାରେ ତାହା, ଯଥା : ହସ୍ତ, ପଦ, ମୁଖ, ପାକ, କୂପ, ଶକଟ, କପାଟ, ଦଣ୍ଡ, ଘୋଟକ, ଶଯ୍ୟା, ମର୍କଟ, ଭେକ, ମହିଷ, ସୂଚୀ, ଓ ସ୍ନାନ ପ୍ରଭୃତି ।

ଏପର୍ଯ୍ୟାୟଭୁକ୍ତ ଶବ୍ଦ ମଧ୍ୟରୁ କେତେକର ଉଚ୍ଚାରଣ ନ. ଭା. ଆ. ରେ ଏକ ପ୍ରକାର ହୋଇ ନଥିଲେ ମଧ୍ୟ ଏଗୁଡ଼ିକର ଲିଖିତ ରୂପ ଏକ । ଭାରତୀୟ ଭାଷାଗୁଡ଼ିକ ଉକ୍ତ ଶବ୍ଦଗୁଡ଼ିକୁ ଉତ୍ତରାଧିକାରୀ ସୂତ୍ରରେ ପାଇଛନ୍ତି ବୋଲି କୁହାଯାଇ ପାରେ । ଆଉ କେତେକ ଶବ୍ଦକୁ ଅର୍ଦ୍ଧତତ୍ସମ କୁହାଯାଏ । ସେଗୁଡ଼ିକ ମୂଳ ସଂସ୍କୃତ ଶବ୍ଦଠାରୁ କିଞ୍ଚିତ୍ ପରିବର୍ତ୍ତିତ । ନ. ଭା. ଆ. ରେ ଏପ୍ରକାର ଶବ୍ଦ ବହୁଳ ପରିମାଣରେ ଦେଖିବାକୁ ମିଳିଥାଏ । ଯଥା–କର୍ମ, ଆସନ, କଣା, ଛାଇ, ଛାତ, ନଗର, ନଗ୍ନ, ନାବ, ପଦ୍ମ ଓ କେଶ ଇତ୍ୟାଦି ।

ଏ ସକଳ ସହିତ ସଂସ୍କୃତ ସାହିତ୍ୟର ସୁପ୍ରସିଦ୍ଧ ଓ ଲୋକପ୍ରିୟ ଗ୍ରନ୍ଥ ଯଥା–ଭଗବଦ୍ଗୀତା, ଚାଣକ୍ୟଶ୍ଳୋକ, ନୀତିଶ୍ଳୋକ, କାଳିଦାସଙ୍କ କୃତୀସମୂହ, ମହାନାଟକ ସାହିତ୍ୟ ଦର୍ପଣ ଓ ଅନେକ ପ୍ରସିଦ୍ଧ ଓ ବହୁ ଅଜ୍ଞାତନାମା କବିଙ୍କର ହଜାର ହଜାର ଶ୍ଳୋକ, ଖଣ୍ଡଶ୍ଳୋକ ଓ ପ୍ରବଚନ ଇତ୍ୟାଦି ଜୀବନ ଯାତ୍ରାକୁ ସଠିକ୍ ସରଳସୁଗମ ଓ ବିପଦ ମୁକ୍ତ କରିବା ପାଇଁ ବ୍ୟବହାର କରାଯାଇଥାଏ । ପ୍ରତ୍ୟେକ ଭାଷାରେ କଥିତ ଭାବରେ ଯେପରି ଅନେକ ପ୍ରବଚନ ପ୍ରଚଳିତ ଅଛି, ଠିକ୍ ସେହିପରି ଏଗୁଡ଼ିକର ସଂଖ୍ୟା କିଛି କମ୍ ନୁହେଁ । ଏଠାରେ ଆଉ ଏକ ବିଷୟ ଲକ୍ଷ କରିଦେବା ଉଚିତ ଯେ ନିର୍ଦ୍ଦିଷ୍ଟ ବୃତ୍ତିଧାରୀ ଯଥା–ବୈଦ୍ୟ, ଜ୍ୟୋତିଷୀ, କଣ୍ଠଶିଳ୍ପୀ ଓ ବାଦ୍ୟକାର ଗୋଷ୍ଠୀ ମଧ୍ୟରେ କେତେଗୁଡ଼ିଏ ସୁପ୍ରଚଳିତ ଶ୍ଳୋକ ବା ଶ୍ଳୋକାଂଶ ଓ ପ୍ରବଚନକୁ ଉକ୍ତ ନିର୍ଦ୍ଦିଷ୍ଟ ବା ଲୋକୋକ୍ତି ଭାବରେ ଗ୍ରହଣ କରାଯାଇ ପାରେ। ତାହ ଏଠାରେ କେବଳ କେତେକ ସାର୍ବଜନୀନ ସୁପ୍ରଚଳିତ ଲୋକପ୍ରିୟ ଲୋକ ନିମ୍ନରେ ଦୃଷ୍ଟାନ୍ତ ପ୍ରଦତ୍ତ ହେଲା । ଅହିଂସା ପରମ ଧର୍ମ, ଅଜ୍ଞାନ ତିମିରାନ୍ଧସ୍ୟ, ଅଳ୍ପବିଦ୍ୟାଭୟଙ୍କରୀ, ଅତୋନଷ୍ଟ ତତୋନ (ଭ୍ରଷ୍ଟ), ଅକର୍ମା ... ଆତ୍ମବତ୍ ମନ୍ୟତେ ଜଗତ୍, ଆତୁରେ ନିୟମ ନାସ୍ତି ... ଉପମା କାଳିଦାସସ୍ୟ, ଋଣଂକୃତ୍ୱା ଘୃତଂପିବେତ୍, କ... କଣ୍ଟକେ ନୈବ କଣ୍ଟକମ୍, କସ୍ମିନ୍କାଳେ, କର୍ମଣ୍ୟେ ବ... କ୍ଷଣକେନ ନିବାର୍ଯ୍ୟତେ, ଗତାନି ଗତପାଦାନି, ଗତସ୍ୟ ଶୋ... ଘୁଣାକ୍ଷରନ୍ୟାୟ, ଜନନୀ ଜନ୍ମଭୂମିଶ୍ଚ, ଟାଙ୍ଗରା ବାଇ... ତ୍ରିଶୂନ୍ୟାତ ଦରିଦ୍ରତା, ଦୁର୍ବଳସ୍ୟ ବଳଂରାଜା, ଧର୍ମସ୍ୟ... ନଷ୍ଟସ୍ୟ କାନ୍ୟାଗତି, ପିତାଧର୍ମ, ବୁଦ୍ଧିଯସ୍ୟ, ବିଦ୍ୟା... ପୂଜ୍ୟତେ, ଭାଗ୍ୟଂ ଫଳତି ସର୍ବଦା, ମକ୍ଷିକା ... ମହତାମେକରୂପତ, ଯାତସ୍ୟହିଧ୍ରୁବୋମୃତ୍ୟୁ, ରାଜା... ସୁତ୍ରେମଣି ଗଣାଇବ, ସର୍ବେ ଭବନ୍ତୁ ସୁଖୀନଃ, ହୀ... ନକର୍ତ୍ତବ୍ୟା ଇତ୍ୟାଦି ।

ସଂବାଦ ପତ୍ର ସଭ୍ୟଜଗତରେ ଏକ ଅତ୍ୟା... ଉପାଦାନ । ପତ୍ରିକାଗୁଡ଼ିକୁ ଠିକ୍ ସେହିପରି ଗ୍ରହଣ ନ... ମଧ୍ୟ ସାଧାରଣତଃ ଏହା ସଚେତନ ଗୋଷ୍ଠୀ ଦ୍ୱା... ହୋଇଥାଏ । ସଂପ୍ରତି କେତେଗୁଡ଼ିଏ ଦୈନିକ ସ... ସହିତ ବହୁ ସାମୟିକ ପତ୍ରିକା ପ୍ରକାଶିତ ... (କଟକରୁ ଡଃ ହରେକୃଷ୍ଣ ଶତପଥୀଙ୍କ ସଂପାଦନାରେ '... ପ୍ରକାଶିତ ହେଉଅଛି) ।

ଜାତୀୟ ସଂହତି ରକ୍ଷା ଦିଗରେ ସ୍ମରଣାତୀ... ସଂସ୍କୃତ ଭାଷାର ଅବଦାନ କିଛି କମ୍ ନୁହେଁ । ବର୍ତ୍ତମା... ସଂହତି ରକ୍ଷାଦିଗରେ ରାଜନୈତିକ ନେତୃବର୍ଗଙ୍କଠାରୁ ... ବିଦ୍ୱାନମାନଙ୍କ ପର୍ଯ୍ୟନ୍ତ କେତେ ଗୋଟି ସଂସ୍କୃତ ଶ୍ଳୋକ... ନିର୍ଦ୍ଦେଶ କରିଥାନ୍ତି, ସେଗୁଡ଼ିକ ହେଲା -ଗଙ୍ଗେଚ ଯମୁ... ଅଯୋଧ୍ୟା ମଥୁରାମାୟା............, କୁରୁକ୍ଷେତ୍ର ... .........ଇତ୍ୟାଦି ।

ଆଧୁନିକ ଭାରତୀୟ ଭାଷାର ସାହିତ୍ୟମାନଙ୍କ... ପୁରାଣ ଓ ମହାକାବ୍ୟର ଚରିତ୍ରମାନଙ୍କୁ ସାଂକେତିକ... ଗ୍ରହଣ କରାଯାଇଅଛି, ସେଗୁଡ଼ିକୁ (Myth) ବୋଲି କୁ... ତାହା ସଂସ୍କୃତ ଭାଷାର ଅବଦାନ ବୋଲି ... ହେବ ।

ଆଧୁନିକ କାଳରେ ନବ ଆବିଷ୍କୃତ ବୈଜ୍ଞାନିକ ... ପରିଭାଷା ପାଇଁ ସମସ୍ତ ଭାରତୀୟ ଭାଷା ସଂସ୍କୃ... ହେବା ବିଷୟକୁ ଅସ୍ୱୀକାର କରିହେବ ନାହିଁ ।

ସଂପ୍ରତି ଜଗନ୍ନାଥ ସଂସ୍କୃତ ବିଶ୍ୱବିଦ୍ୟାଳୟ ... ଦଶଦିନିଆ ସଂସ୍କୃତ ଶିକ୍ଷା ଶିବିର କାର୍ଯ୍ୟକ୍ରମ ଦ୍ୱାରା ସଂ... ଅଧିକ ଲୋକପ୍ରିୟ ହେବାର ଶୁଭ ସୂଚନା ଉତ୍କଳରୁ ... ହେବାରେ ଲାଗିଛି ।

ମଧୁପୁର କଲେଜ, କଲଣ, କଟକ ।

# ନାଗାସାକୀ

ଶ୍ରୀ ଅନ୍ତର୍ଯ୍ୟାମୀ ମହାପାତ୍ର

ଜୀବନର ଏକ ଅବିସ୍ମରଣୀୟ ମର୍ମସ୍ପର୍ଶୀ ଅନୁଭୂତି । ଯାହାକୁ ବାରମ୍ବାର ଚେଷ୍ଟାକରି ମଧ୍ୟ ଭୁଲି ହୁଏ ନାହିଁ । ଏବେ ମୁଁ ପ୍ରତ୍ୟେକ ରାତ୍ରିରେ ଶୋଇବା ପୂର୍ବରୁ ନତଜାନୁ ପୂର୍ବକ ଭଗବାନଙ୍କୁ ପ୍ରାର୍ଥନା କରି କହେ, " ହେ ଭଗବାନ ! ସେଇ ଭୟାନକ ସ୍ମୃତି ମୋ ମନରୁ ସବୁଦିନ ପାଇଁ ଦୂରୀଭୂତ ହେବାକୁ ମୋତେ ସହାୟ ହୁଅ ।"

ପୃଥିବୀରେ ଏବେ ଯେଉଁ ବୃହତ୍ ଶକ୍ତିମାନଙ୍କର ବିଭିନ୍ନ ମାରଣାସ୍ତ୍ରର ବହୁଳ ପ୍ରତିଯୋଗିତା ଆରମ୍ଭ ହୋଇ ସାରିଛି, ତାର ଶେଷ ପରିଣତି ଯେ କି ଭୟଙ୍କର ହେବ ତାହା ଭାବିଲେ ଏବେ ମୋତେ ରାତ୍ରିରେ ଭଲ ଭାବେ ନିଦ୍ରା ହୁଏ ନାହିଁ ।

ଆଜିକାର ଯୁଦ୍ଧ ଅତି ବିଚିତ୍ର । ବହୁଦିନ ତଳେ ଯୁଦ୍ଧରେ କୌଣସି ଗୋଟିଏ ବଡ଼ ଗୁରୁତର କାର୍ଯ୍ୟ କରିବାକୁ ଗଲେ, ନେପୋଲିୟନ ବା ୱାଶିଂଟନଙ୍କ ପରି ଦୂରଦର୍ଶୀମାନଙ୍କର ପ୍ରୟୋଜନ ଥିଲା । ଯେଉଁମାନେ କି ସମସ୍ତ ପାରିପାର୍ଶ୍ୱିକ ପରିସ୍ଥିତିକୁ ଉତ୍ତମ ରୂପେ ହୃଦୟଙ୍ଗମ କରି ଆଗକୁ ଅଗ୍ରସର ହେଉଥିଲେ । କିନ୍ତୁ ମୋ ଭଳି ଜଣେ ସାଧାରଣ ସୈନିକ ଏପରି ଏକ କାର୍ଯ୍ୟର ସଞ୍ଚାଳକ ହୋଇଥିଲା, ଯାହାରକି ପରିଣାମ ମଣିଷର ବଂଶ ପରମ୍ପରା ପର୍ଯ୍ୟନ୍ତ ଅକ୍ଷୁର୍ଣ୍ଣ ରହିପାରେ । ଯଦିଓ ଉକ୍ତ ବିଷୟରେ ମୋର ନିଜର କୌଣସି ବିଗ୍ରର ବା ନିର୍ଣ୍ଣୟର ବିଶେଷ ମହତ୍ତ୍ୱ ନ ଥିଲା । ଆଉ ମଧ୍ୟ ଏଇ କାର୍ଯ୍ୟଟି କରିବା ଦ୍ୱାରା ମୁଁ ଅନୁତପ୍ତ ବା ଅପରାଧୀ ବୋଲି ନିଜକୁ ମନେ କରୁନାହିଁ । କେବଳ ଏତିକି କୁହାଯାଇ ପାରେ ଯେ, ମୁଁ କେବଳ ମୋର କର୍ତ୍ତବ୍ୟ ସମ୍ପାଦନ କରିଥିଲି । ଅବଶ୍ୟ ଏହା ହୋଇପାରେ ଯେ, ବିଶ୍ୱଯୁଦ୍ଧକୁ ଏଡ଼ାଇବାର ଏହାହିଁ ଥିଲା ଏକ ସୁଦୂର ପ୍ରସାରୀ ଐତିହାସିକ ଉଦ୍ୟମ । ତଥାପି ମୁଁ ଚାହେଁ, କୌଣସି ପ୍ରକାର ପରିସ୍ଥିତିରେ ସେଭଳି ହୃଦୟସ୍ପର୍ଶୀ ଘଟଣାର ପୁନରାବୃତ୍ତି ନ ହେବାହିଁ ମାନବ ଜାତି ପକ୍ଷରେ ଶୁଭଙ୍କର ।

ନାଗାସାକୀ ଘଟଣାର ମୁଁ ଥିଲି ଏକ ମୂକ ସାକ୍ଷୀ । ନିଜେ ଥିଲି ବୋମା ବହନ କରିଥିବା "ବିହାହନ୍" ବିମାନର ପାଇଲଟ ମୁଁ ଠିକ୍ ୩୦ ହଜାର ଫୁଟ ଉଚ୍ଚରେ ଥାଇ ଶ୍ୟାମ ସବୁଜ ନାଗାସାକୀ ଉପରେ ବୋମା ନିକ୍ଷେପ କରିଥିଲି । ମୁଁ ଜାଣିଛି, ସେଇ ଅନୁଭୂତି କେତେ ଭୟାନକ, କେତେ ହୃଦୟ ବିଦାରକ ଓ କେତେ ନିର୍ମମ ଆଉ ନିଷ୍ଠୁର ।

ଦ୍ୱିତୀୟ ବିଶ୍ୱଯୁଦ୍ଧର ମଧ୍ୟାହ୍ନ । ଭୟାବହ ବୋମା ତିଆରି ହୋଇ ସାରିଥିବା ଖବର ମଝିରେ ମଝିରେ ଶୁଣାଯାଏ । ତଥାପି କେହି ବିଶ୍ୱାସ କରୁ ନ ଥିଲେ ଯେ, ସେଇ ବୋମା ଆମେରିକା ପାଖରେ ଅଛି ।

ଆମର ଛବିଶ ଜଣିଆ ଦଳଟି ପ୍ରାୟ ଏକବର୍ଷ ଧରି ବୋମା ନିକ୍ଷେପ ନିମନ୍ତେ ଶିକ୍ଷାଲାଭ କରିଥିଲୁ । କିନ୍ତୁ ଆମେ ଜାଣି ନ ଥିଲୁ ଯେ, ଏପରି ଏକ ଭୟାବହ ବୋମା ନିକ୍ଷେପ ବିଷୟରେ ଆମେ ଶିକ୍ଷା ପାଉଅଛୁ । କିନ୍ତୁ ଆମର ସମ୍ପୂର୍ଣ୍ଣ ରୂପେ ବିଶ୍ୱାସ ହୋଇଥିଲା ଠିକ୍ ବୋମା ନିକ୍ଷେପର କେଇ ଘଣ୍ଟା ପୂର୍ବରୁ ମାତ୍ର ।

ବୋମା ବହନ କରି କିପରି ବିମାନ ଚାଳନା କରାଯାଇ ପାରିବ, ଯେପରିକି ହଠାତ୍ ବିମାନର ଗତି ପରିବର୍ତ୍ତନ ହେଲେ ବିମାନରେ ଥିବା ବୋମାରେ ସାମାନ୍ୟ ଆଞ୍ଚ ଲାଗିବ ନାହିଁ । କିପରି ଭାବେ ନିର୍ଦ୍ଦିଷ୍ଟ ଉଚ୍ଚତାରେ ଥାଇ ବୋମାକୁ ନିକ୍ଷେପ କରାଯିବ, ନିକ୍ଷେପ ସମୟରେ ନିଜକୁ ତଥା ବିମାନକୁ କିପରି ରକ୍ଷା କରିବାକୁ ହେବ ଇତ୍ୟାଦି ଶିକ୍ଷାଦଳ ମଧ୍ୟରେ ଆମକୁ ଶିକ୍ଷା ଦିଆଯାଇଥିଲା । ତାହା ଚିନ୍ତା କଲେ ଏବେ ମଧ୍ୟ ଭୟରେ ଦେହ ଟାଙ୍କୁରି ଉଠୁଛି ।

ଆମ ସରକାର ଏବଂ ଶିକ୍ଷକମାନେ ସ୍ପଷ୍ଟ ଭାବେ ଘୋଷଣା କରି ଦେଇଥିଲେ ଯେ, " ଏହି ବୋମା ନିକ୍ଷେପର ଫଳାଫଳ ଯୁଗ ଯୁଗ ପାଇଁ ନରସଂହାରର ଏକ ନିଛକ ଜ୍ୱଳନ୍ତ ଛବି ମାନବ ଇତିହାସରେ ଅମ୍ଳାନ ଭାବେ ପ୍ରତିଭାତ ହୋଇରହିଥିବ" ।

ଅଗଷ୍ଟ ୬ ତାରିଖ ୧୯୪୫ ମସିହା । ହଠାତ୍ ଆମର ଛବିଶ ଜଣିଆ ଦଳଟି ଦୁଇଭାଗ ହେଲେ । ଗୋଟିଏ ଦଳ ଗଲେ ହୀରୋସୀମାକୁ, ଆଉ ଅନ୍ୟଟିରେ ରହିଗଲି ମୁଁ । କେନ୍ଦ୍ର କଣ୍ଟ୍ରୋଲ ରୁମରୁ ଅତି ଗୋପନୀୟ ଭାବେ ନିର୍ଦ୍ଦେଶ ଆସିଲା, " ଆଉ ୭୨ ଘଣ୍ଟା ପରେ କୋକୁରା ସହର ଉପରେ ବୋମା ନିକ୍ଷେପ କରିବାକୁ ହେବ । " ବୋଧହୁଏ ଆପଣମାନେ କେହି କୋକୁରା ସହରର ନାମ ଶୁଣି ନ ଥିବେ । ଛାଡ଼ନ୍ତୁ, କୋକୁରା ପରିବର୍ତ୍ତେ ଆମ୍ଭେମାନେ କିପରି ନାଗାସାକୀ ଅଭିମୁଖେ ଯାଇଥିଲୁ ; ତାହା ମଧ୍ୟ ଏକ ଆଶ୍ଚର୍ଯ୍ୟ କଥା ।

ଯେତେବେଳେ ଆମ୍ଭେମାନେ କୋକୁରା ସହର ଉପରେ ଆସି ପହଞ୍ଚିଗଲୁ ଓ ନିର୍ଦ୍ଦିଷ୍ଟ ଉଚ୍ଚତାରେ ଆମ ବିମାନକୁ ଘୁରାଇଲୁ, ସେତେବେଳେ ଦେଖିଲୁ ସେଇ ଭାଗ୍ୟବାନ ସହରଟିକୁ ଘନ କୁହୁଡ଼ିଟିକା ତାର ମାୟାଜାଲ ଦ୍ୱାରା ଢାଙ୍କି ରଖିଛି । ବୋଧ ହେଉଥିଲା, ବୋଧେ ସେ ତାର ପ୍ରିୟ କୋକୁରାକୁ ଆମ ପାଖରେ ସମର୍ପଣ କରିବାକୁ ଇଚ୍ଛୁକ ନ ଥିଲା । ତଥାପି ଆମେ ବହୁତ ସମୟ ବିମାନକୁ ସହର ଉପରେ ଘୁରାଇଲୁ । ବହୁ ସମୟ ପରେ ନିରାଶ ହୋଇ କଣ୍ଟ୍ରୋଲ ରୁମ ସହ ଯୋଗାଯୋଗ କଲୁ ଓ ପରବର୍ତ୍ତୀ ନିର୍ଦ୍ଦେଶ ଅନୁସାରେ ନାଗାସାକୀ ଅଭିମୁଖେ ଯାତ୍ରାକଲୁ ।

ଏବେ ମୁଁ ଭାବୁଛି; ଲକ୍ଷ ଲକ୍ଷ ମଣିଷର ଜୀବନ ଓ ମୃତ୍ୟୁ କେତେଟିକେ ମାତ୍ର ଛୋଟ ଓ ନିରର୍ଥକ କଥା ଉପରେ ପର୍ଯ୍ୟ-ବେସିତ । ଯଦି ସେ ଦିନ କୋକୁରାର ଜଳବାୟୁ ଅନୁକୂଳ ଥାଆନ୍ତା, ତେବେ ଲକ୍ଷ ଲକ୍ଷ ଲୋକଙ୍କର ଭାଗ୍ୟ ଯାହାକି ନଷ୍ଟ ଓ ଅନିଶ୍ଚିତ ହୋଇ ପଡ଼ିଲା ; ତାହା ଅକ୍ଷୁର୍ଣ୍ଣ ରହି ପାରିଥାଆନ୍ତା । ସତେ ! ମଣିଷର ଭାଗ୍ୟ କେଡ଼େ ବିଚିତ୍ର ।

ଏବେ ନାଗାସାକୀ ଉପରେ ଆମ ବିମାନଟା ଘଁ_ଘଁ_ ଶବ୍ଦକରି ଉଡ଼ିଲା । ସତ୍ତ୍ୱାରା ଆମେ ଦେଖିଲୁ, ସେତେବେଳେ ବୋମା ନିକ୍ଷେପ ପାଇଁ ପାଗଟା ସେତେ ଅନୁକୂଳ ନୁହେଁ । ଏଣେ କିନ୍ତୁ କଣ୍ଟ୍ରୋଲରୁମର ଶେଷ ନିର୍ଦ୍ଦେଶ । ଯେ କୌଣସି ଭାବେ ବୋମା ନିକ୍ଷେପ କରିବାକୁ ହେବ । " କାରଣ ବୋମାଟିକୁ ଫେରାଇ ନେବାକୁ ଆଉ ଉପାୟ ନ ଥିଲା । କାରଣ ବିମାନଟିର ଅବତରଣ କାଳରେ ଯଦି ଉନଡ୍ରେଟ ସାମାନ୍ୟ ଧକ୍କା ଲାଗିଥାଆନ୍ତା ତେବେ ସଂଘଟିତ ହୋଇଥାଆନ୍ତା ଏକ ମହାପ୍ରଳୟର ଲୀଳା ଏବଂ ଦୀର୍ଘ ୩୨ କିଲୋମିଟର ପରିସରର ସମସ୍ତ ଅଞ୍ଚଳ ଅଗ୍ନି ଶିଖାରେ ମୁଠାଏ ପାଉଁଶରେ ପରିଣତ ହୋଇଥାଆନ୍ତା । କାରଣ ସେହି ଦାନବ ନରସଂହାର ପାଇଁ ଥରେ ଯେତେବେଳେ ଅଭିଯାନ ଆରମ୍ଭ କରିଛି, ସେ ସହଜରେ ଆଉ କାହାକୁ କ୍ଷମା ଦେଇ ନ ଥାନ୍ତା ।

ମୋ ହାତ ଘଡ଼ିରେ ସମୟ ଥିଲା ଆଠଟା ବଣମିନିଟ । ଆଉ ମାତ୍ର ତିନିମିନିଟ । ଉତ୍କଣ୍ଠସ୍ୱରରେ କଣ୍ଟ୍ରୋଲ ରୁମରୁ ଶୁଭୁଥିଲା " Yes " । ପରେ ପରେ ବିହାହନର ବେଗ

କମାଇ ଦିଆଗଲା ଓ କେନ୍ଦ୍ର ନାଗାସାକୀ ଉପରେ
କ୍ଳାନ୍ତ ପକ୍ଷୀପରି ଘୁରୁଥିଲା ।

ଜୀବନର ଶେଷ ସକାଳରେ ନାଗାସାକୀର ନ...
ବନ, ଉପବନ, ପ୍ରାନ୍ତର କେଦାରରେ ବାଳସୂର୍ଯ୍ୟର ...
ରଶ୍ମୀ ଅବର୍ଣ୍ଣନୀୟ ପ୍ରଶ୍ମୀଳ ରଙ୍ଗର ଭ୍ରମ ସୃଷ୍ଟି କ...
ସହରର ଜୀବନ ଯାତ୍ରା କ୍ରମଶଃ ମୁଖରିତ ହୋଇ ଉ...
ରେଷ୍ଟୋରାଁ ଓ ଫୁଟ୍‌ପାଥରେ ଜନଗହଳି ବୃଦ୍ଧି ପା...
ଉଚ୍ଚ ପାଗୋଡ଼ାମାନଙ୍କରେ କାଳଚକ୍ର "ବିହାହନ"ର ...
କାଳୀନ ଛାୟା ଆମକୁ ସ୍ପଷ୍ଟ ଦିଶି ଯାଉଥିଲା । ମୋ...
ଠିକ ଆଠଟା ବାର ମିନିଟ ବାଉ ସେକେଣ୍ଡ ହେଲାବେଳ...
ରାକ୍ଷସଟାକୁ ତାର ଆବଦ୍ଧ ସ୍ଥାନରୁ ମୁକ୍ତ କରି ଦିଆଗ...

ବୋମା ବିସ୍ଫୋରଣ ହେବା ଦେଖିଲୁ କିନ୍ତୁ ତା...
ଶୁଣି ପାରି ନଥିଲୁ । ହଠାତ୍ ବିସ୍ଫୋରଣ ପରିଣାମ...
ପ୍ରଥମ ତରଙ୍ଗର ଧକ୍କା ଆସି ବିହାହନକୁ ଧାଘାତ ...
ଯାହାକି ଆମ ଜୀବନର ଅତି ଭୟାନକ ...ତକ...
ଅନୁଭୂତି ଥିଲା । ସେଇ ଧକ୍କାରେ ଆମେ ଓ ...
" ବିହାହନ " ଦୋହଲି ଉଠିଥିଲୁ ।

ପ୍ରକୃତରେ ମଣିଷର କୌତୁହଳ ମଧ୍ୟ ବଡ଼ ...
ମଣିଷ କରିଥିବା କର୍ମ ଭଲ ହେଉ ବା ମନ୍ଦ ହେଉ, ତା ପ୍ର...
ଥାଏ ଏକ ଅଲୋଡ଼ା ଗଭୀର ଆକର୍ଷଣ । ଅନ...
ମୁହଁକୁ ସେମାନଙ୍କ ମନୋଭାବକୁ ଅନୁମାନ କରି ମୁଁ ...
ଉପରକୁ ଯିବା ପରିବର୍ତ୍ତେ ୬୦ ଡିଗ୍ରୀ କୋଣ କାଟି "ବିହ...
ତଳକୁ ଖସାଇ ଆଣିଥିଲି । ଆଖିରେ ଦୂରବୀକ୍ଷଣ ଯ...
ଦେଖିଲି, ଲକ୍ଷ ଲକ୍ଷ ନରନାରୀ ଯନ୍ତ୍ରଣାରେ ...
ହେଉଥିଲେ । ମରିବା ପୂର୍ବରୁ ଆତୁରରେ ସେମାନେ...
ଟୋପାଏ ଖୋଜୁଥିଲେ । ବୋଧହୁଏ ବୋମାର ତୀ...
ତାଙ୍କୁ ଦଗ୍ଧୀଭୂତ କରୁଥିଲା ।

ସରିଆଡ଼େ ମୃତ୍ୟୁର ଉଦ୍ଦତ ଉଦ୍ଦାମ ନୃତ୍ୟ ଆରମ୍ଭ...
ଯାଇଥିଲା । ଦଗ୍ଧ, ଅର୍ଦ୍ଧଦଗ୍ଧ, ଭସ୍ମୀଭୂତ ...
ସର୍ବତ୍ର ଦୃଷ୍ଟିରେ ପଡୁଥିଲେ । ଯେପରି କଣ...
ନାଗାସାକୀ ଥିଲା ମୃତ୍ୟୁର ଏକ ଜୀବନ୍ତ ପୀଠ । ଏତିକି...
ହଠାତ୍ ମୁଁ ଦେଖିଲି ପ୍ରକାଣ୍ଡ ଛତ୍ରଭଳି ଏକ ଧୂମ ପଟଳ...
କିଲୋମିଟର ବେଗରେ ଉର୍ଦ୍ଧ୍ୱକୁ ଉଠିବାରେ ଲାଗିଛି । ...
ଶିକ୍ଷା ଦିଆଯାଇଥିଲା ମଧ୍ୟ ଧୂମପଟଳର ସମ୍ମୁଖୀନ ...
ମୃତ୍ୟୁ ନିଶ୍ଚିତ । ଯେତେ ଚେଷ୍ଟା କରି ମଧ୍ୟ ...
କିଂକର୍ତ୍ତବ୍ୟ ବିମୂଢ଼ ହୋଇ ପଡ଼ିଥିଲୁ । ପ୍ରତି ...
ବ୍ୟବଧାନରେ ଗୋଟିଗୋଟି କରି ...
ଧକ୍କାରେ "ବିହାହନ" ମଧ୍ୟ ଘରୋଟି ...
ଆମେ ଅନୁଭବ କଲୁ ଆମ୍ଭେମାନେ ମଧ୍ୟ ମାର୍ଗଚ୍ୟୁତ ହେ...
ସେଇ ଆସୁଥିବା ଧୂମପଟଳର କରାଳ ଗର୍ଭରେ କିଛି ସମୟ... ଲୀନ ହୋ...

ଭଗବାନଙ୍କର ଅପାର କରୁଣାରୁ ମୁଁ ଏବଂ ମୋର ...
ସାଥୀ ସ୍ୱେନୀ ବହୁତ ଚେଷ୍ଟାକରି ବିମାନର ଗତିପଥ ...
ଦେଲୁ । ଯାହାହେଉ ଆମେ ସମସ୍ତେ ବଞ୍ଚିଗଲୁ । ...
ମାତ୍ର ଆଉ ୨୫ ଗଜ ବ୍ୟବଧାନରେ ଯେଉଁ ବିରାଟକା...
ଦୃଢ଼ ଧୂମପଟଳ ଆମକୁ ଗ୍ରାସ କରିବାକୁ ଆସୁଥିଲା, ...
ଆମେ କୌଣସି ପ୍ରକାରେ ବଞ୍ଚିନଥାନ୍ତୁ । ସେଇ

ଦୂରତା ମାତ୍ର ଥିଲା. ଆମ ଜୀବନ ଓ ମୃତ୍ୟୁ ମଧ୍ୟରେ ନ୍ୟୁନତମ ବ୍ୟବଧାନ ।

ମୃତ୍ୟୁ ଗହ୍ୱରରୁ ଫେରି ଥିବାରୁ ଆମ ସମସ୍ତଙ୍କ ମୁହଁ ଶେତା ପଡି ଯାଇଥିଲା । କାହାରି ତୁଣ୍ଡରୁ ପଦିଏ କଥା ମଧ୍ୟ ବାହାରୁ ନ ଥିଲା । ଭଗବାନଙ୍କ ଉଦ୍ଦେଶ୍ୟରେ ପ୍ରଣାମ ଜଣାଇ ଆମ ଦେହକୁ ଫେରିଲୁ । ମୃତ ନାଗାସାକୀ ସବୁଦିନ ପାଇଁ ଆମ ପଛରେ ରହିଗଲା ।

ଦୀର୍ଘ ବର୍ଷକ ପରେ ଥରେ କୌଣସି ଏକ ସହରକୁ ମୁଁ ଘରରେ ଯାଇଥାଏ । ଫୁଟ୍‌ପାଥରେ ଠିଆ ହୋଇ ଖଣ୍ଡେ ସିଗାରେଟ ଟାଣୁଛି, ହଠାତ୍ ବନ୍ଧୁ ସ୍ପେନୀ ସହିତ ଦେଖା ହୋଇଗଲା । କରମର୍ଦ୍ଦନ ପରେ ଦୁଇବନ୍ଧୁ ରେସ୍ତୋରାଁରେ ଯାଇ ଭୋଜନ ଇତ୍ୟାଦି କଲୁ । ଦୀର୍ଘ ପାଞ୍ଚଘଣ୍ଟା ଧରି ସେଇ ପ୍ରଖ୍ୟାତ ସହରର ଘରିଆଡ଼େ ଭ୍ରମଣ କରି ସମୟ ବିତାଇଲୁ । ଖୁବ୍ ମଉଜରେ ଘଣ୍ଟା ଓ ମିନିଟ ଅତିବାହିତ କଲୁ । ବହୁ ଆଲୋଚନା କରିଥିଲେ ମଧ୍ୟ ମୁଁ କିମ୍ବା ସ୍ପେନୀ କେହିହେଲେ ସେଇ ନାଗାସାକୀ ଘଟଣା ବିଷୟରେ ଆଲୋଚନା କରିବାକୁ ରାଜି ମଧ୍ୟ ହୋଇ ନଥିଲୁ ।

ସମ୍ବାଦପତ୍ରରୁ ଜାଣିଲି, ଆମ ଦଳର ଜଣେ ବନ୍ଧୁ ବହୁଥର ଡ଼କାୟତି କରି ଜେଲ ବରଣ କରୁଥିଲେ । ଏକଦା ଜଣେ ମନୋବିଜ୍ଞାନୀ କହିଥିଲେ—"ସେ ଚାହୁଁଛି ତାର ଜୀବନକୁ କୌଣସି ପ୍ରକାରେ ଶେଷ କରିଦେବାକୁ ।" ଅଣୁବମ ନିକ୍ଷେପରେ ଅଂଶ ଗ୍ରହଣ କରି ଯେଉଁ ବିଭତ୍ସ ଦୃଶ୍ୟାବଳୀ ସେ ଦେଖିଛି, ତାର ଅଚେତନ ମନ ତାକୁ ନିଶ୍ଚିତ ଭାବେ ଅପରାଧୀ ବୋଲି ସ୍ଥିର କରିଛି । ତେଣୁ ସେ ତାର କର୍ମର ପ୍ରାୟଶ୍ଚିତ ଚାହୁଁଛି ।

ମୋ ମାଆ ମଧ୍ୟ ସେଇ ଘଟଣା ନେଇ ଦୁଃଖିତା । ଥରେ ମାଆ ମୋତେ ପଚାରିଥିଲା "ଫ୍ରେଡି ! ତୋ କର୍ମପାଇଁ ତୋ ଅନ୍ତରାତ୍ମା କ'ଣ ଦୁଃଖିତ ନୁହେଁ ।" "ମାଆର ସେହି ପ୍ରଶ୍ନର ଉତ୍ତର ମୁଁ ଦେଇ ପାରିନି " ।

ସେହିଦିନଠାରୁ ମାଆ ଆଉ କେବେହେଲେ ମୋ ସହିତ ଭଲରେ କଥାବାର୍ତ୍ତା କରୁନଥିଲେ । ଥରେ ରାତ୍ରୀରେ ମୁଁ ମାଆଙ୍କ ଶୋଇବା ଘର ଦେଇ ଯାଉଥାଉ ଦେଖିବାକୁ ପାଇଲି, ନତଜାନୁ ପୂର୍ବକ ମାଆ ହାତ ଯୋଡି କହୁଥିଲା, ଭଗବାନ ! ପୁତ୍ର ଫ୍ରେଡିକୁ ଥରେ କ୍ଷମାଦିଅ ।

୩୮ ବର୍ଷ ବୟସର ମୁଁ ଜଣେ ସିଭିଲ ଇଞ୍ଜିନିୟର । ରାଜନୀତିର କଦର୍ଥ ଗଣ୍ଡି ଭିତରେ ନିଜକୁ ଆବଦ୍ଧ ରଖିବାକୁ ଚାହେଁନା । ରାଜନୀତି ମଧ୍ୟ ମୋ ପାଠର ବିଷୟବସ୍ତୁ ନ ଥିଲା । ଦୈବ ଯୋଗକୁ ମୁଁ ସେଇ ଦଳରେ ଯୋଗ ଦେଇଥିଲି । କେବେ କିପରି ମୋର ଆଖି ବୁଜିଦେବି । ଆଖି ଆଗରେ ସେଇ ଘଟଣାବଳୀର ଦୃଶ୍ୟ ଏବେ ମଧ୍ୟ ସ୍ପଷ୍ଟଭାବେ ନାଚି ଉଠୁଛି । ସ୍ପଷ୍ଟ ମନେ ପଡି ଯାଉଛି, ସୂର୍ଯ୍ୟ ଠେକ ମୁହୂର୍ତ୍ତକ ମଧ୍ୟରେ ସେଇ ନୀଳବର୍ଣ୍ଣ ପ୍ରକାଶ ନିକଟରେ କିପରି ଅସହାୟ ହୋଇ ଦୀପ୍ତିହୀନ ଓ ନିସ୍ତେଜ ମଳିନ ଦେଖାଯାଉଥିଲା ।

( ଫ୍ରେଡି ଓଲିଭିଙ୍କ ବକ୍ତବ୍ୟରୁ )

ସଂଗ୍ରାହକ: ଅପରାଜିତା
ଦେବ



ମୁଖ୍ୟମନ୍ତ୍ରୀଙ୍କ ସହ ଆଲୋଚନାରେ ଆଣବିକ ଏନର୍ଜି କମିଶନର ଅଧ୍ୟକ୍ଷ ଡକ୍ଟର ରମନ୍ନା...

# ଉତ୍କଳ ପ୍ରସଙ୍ଗ ଓ ଓଡ଼ିଶା ରିଭ୍ୟୁ ପାଇଁ ଲେଖା ଆବଶ୍ୟକ

ଓଡ଼ଶା ରାଜ୍ୟ ସରକାରଙ୍କ ଆନୁକୂଲ୍ୟରେ ପ୍ରକାଶ ପାଉଥିବା ଦୁଇଟି ପତ୍ରିକା 'ଉତ୍କଳ ପ୍ରସଙ୍ଗ' ଓ' ଓଡ଼ଶା ରିଭ୍ୟୁ' ପାଇଁ ଲବ୍ଧ ପ୍ରତିଷ୍ଠିତ ଲେଖକ, ଗବେଷଣାକାରୀ ଓ ଗ୍ରନ୍ଥାକାରମାନଙ୍କଠାରୁ ଉଭୟ ଇଂରାଜୀ ଓ ଓଡ଼ିଆ ଭାଷାରେ ରାଜ୍ୟର ବିଭିନ୍ନ କ୍ଷେତ୍ର ଅର୍ଥାତ୍ ପ୍ରାଚ୍ୟବିଦ୍ୟା, ଐତିହାସିକ ଘଟଣାବଳୀ ସହିତ ଓଡ଼ିଶାର ପ୍ରସଙ୍ଗ, ଓଡ଼ିଶାର ଜଙ୍ଗଲ ତଥା ବନ୍ୟପ୍ରାଣୀ ସମ୍ପଦ, ନୃତତ୍ତ୍ୱ, ପରମ୍ପରା ଓ ଆଚାରବିଧି, ସଂସ୍କୃତି, ଶିକ୍ଷା, କୃଷି, ଶିଳ୍ପ ଉନ୍ନୟନ, ଗ୍ରାମାଞ୍ଚଳ ଉନ୍ନୟନ ଓ ପରିଚାଳନା, ବ୍ୟବସାୟ, ବାଣିଜ୍ୟ, ସାମାଜିକ ଓ ଅର୍ଥନୈତିକ ପ୍ରଗତି, ମନସ୍ତତ୍ତ୍ୱ, ଶାସନ ପଦ୍ଧତି ପର୍ଯ୍ୟଟନ ପୀଠସ୍ଥଳୀ, ପରିବେଶ ସମ୍ପର୍କୀୟ ତଥ୍ୟ, ପର୍ଯ୍ୟଟନ, ବନ୍ୟପ୍ରାଣୀ, ପ୍ରତ୍ନତତ୍ତ୍ୱ ଓ ବିଂଶସୂତ୍ରୀ କାର୍ଯ୍ୟକ୍ରମ ରୂପରେଖ ପ୍ରଭୃତି ସମ୍ପର୍କରେ ଲେଖାମାନ ସଂଗ୍ରହ କରାଯାଉଛି । ସମ୍ପାଦନା ଓ ମୁଦ୍ରଣ କାର୍ଯ୍ୟର ସୁବିଧା ନିମନ୍ତେ ଲେଖକମାନେ ଫୁଲସ୍କେପ୍ କାଗଜର ଗୋଟିଏ ପୃଷ୍ଠାରେ ଯଥେଷ୍ଟ ମାର୍ଜିନ୍ ରଖି ସେମାନଙ୍କ ଲେଖାରୁ ସୁନ୍ଦର ଅକ୍ଷର ବା ଟାଇପ୍ କରି ତହିଁର ଦୁଇକପି ନକଲ ପଠାଇବା ଆବଶ୍ୟକ । ପ୍ରକାଶନ ଯୋଗ୍ୟ ଲେଖାଗୁଡ଼ିକ ଲାଗି ଲେଖକମାନଙ୍କୁ ପାରିତୋଷିକ ଦିଆଯିବ ଓ ପ୍ରକାଶନ ଉପଯୋଗୀ ନ ହେବା ଲେଖାଗୁଡ଼ିକୁ ଲେଖକମାନଙ୍କୁ ଫେରସ୍ତ ଦିଆଯିବ । ଲେଖାଗୁଡ଼ିକ 'ଉତ୍କଳ ପ୍ରସଙ୍ଗ' ଓ 'ଓଡ଼ଶା ରିଭ୍ୟୁ'ର ସମ୍ପାଦକ, ସୂଚନା ଓ ଲୋକସମ୍ପର୍କ ବିଭାଗ .ଓଡ଼ିଶା, ଭୁବନେଶ୍ୱର 751001 ଙ୍କ ଠିକଣାରେ ପଠାଇବାକୁ ଅନୁରୋଧ ।

ନିର୍ଦ୍ଦେଶକ, ସୂଚନା ଓ ଲୋକ ସମ୍ପର୍କ
ଓଡ଼ିଶା, ଭୁବନେଶ୍ୱର

# ରାଷ୍ଟ୍ର ତମସା ତୀରେ

ଶ୍ରୀ ତାରାକାନ୍ତ ମହାନ୍ତି

ଏହି ପୁଣ୍ୟଭୂମି ଭାରତର ତମସା ତୀରରେ ଗୋଟିଏ କ୍ରୌଞ୍ଚ ପକ୍ଷିଣୀର ଆକୁଳ କ୍ରନ୍ଦନକୁ ଅବଲୋକନ କରି ଭାରତୀୟ ହୋମରଙ୍କ (ଆଦିକବି ବାଲ୍ମୀକୀ) ଶୋକପ୍ଲୁତ କଣ୍ଠରୁ ସମ୍ବେଦନଶୀଳ ଦରଦୀ ଶ୍ଳୋକ ଉଚ୍ଚାରିତ ହୋଇଥିଲା ସ୍ୱତଃସ୍ଫୂର୍ତ୍ତ ଭାବେ :—

"ମା ନିଷାଦ ପ୍ରତିଷ୍ଠା ତ୍ୱମଗମଃ ଶାଶ୍ୱତୀଃ ସମାଃ
ଯତ୍ କ୍ରୌଞ୍ଚମିଥୁନାଦେକ ମବଧୀଃ କାମମୋହିତମ୍ ।"

"ଆରେ ବ୍ୟାଧ ତୁ ଚିରକାଳ ପର୍ଯ୍ୟନ୍ତ ପ୍ରତିଷ୍ଠାକୁ ପାଅ ନାହିଁ ଯେଣୁ ତୁ କ୍ରୌଞ୍ଚ ମିଥୁନରୁ କାମ ମୋହିତ ଗୋଟିକୁ ବଧ କଲୁ ।"

ପୁରାଣ ବର୍ଣ୍ଣିତ ତମସା ତୀରରେ ଅତୀତରେ ବହୁ ବିରହ ଘଟିଛି ଅଜଙ୍କ ଇନ୍ଦୁମତୀ ବିରହଠାରୁ ଅନ୍ଧମୁନି ଓ ଦଶରଥଙ୍କ ପୁତ୍ର ବିରହ, ରାମଚନ୍ଦ୍ରଙ୍କ ରାଜ୍ୟ ବିରହ, କୌଶଲ୍ୟାଙ୍କ ପତି ବିରହ, ନିରୀହା ଉର୍ମିଳାଙ୍କ ସ୍ୱାମୀ ସୁଖ ବିରହ, ରାମଚନ୍ଦ୍ର ଓ ସୀତାଙ୍କ ପରସ୍ପର ବିରହ ତଥା ଶେଷରେ ସୀତା ପରିତ୍ୟାଗରୂପ ମହାବିରହ ପର୍ଯ୍ୟନ୍ତ । ଆଜି ରାଷ୍ଟ୍ର ତମସା ତୀରରେ ଯେଉଁ ବିୟୋଗ ଓ ବିଚ୍ଛେଦ ଘଟୁଛି ତା'ର ଇୟତ୍ତା ନାହିଁ । ବୁଦ୍ଧ, ଅଶୋକ, ଗାନ୍ଧୀ, ଶାସ୍ତ୍ରୀ, ନେହେରୁଙ୍କ ଭୂମିରେ ଆଜି ମଣିଷ ରକ୍ତର ଯେଉଁ ହୋରି ଖେଳ ଚାଲିଛି ଆଉ ସନ୍ତ୍ରାସବାଦର ନାରକୀୟ ଲୀଳା ଚାଲିଛି ତାହା ବର୍ଣ୍ଣନାର ବାହାରେ ଓ ଅତ୍ୟନ୍ତ କ୍ଷୋଭର ବିଷୟ । ଏହି ପବିତ୍ର ଭୂମିରେ ଦସ୍ୟୁ ରତ୍ନାକର ବାଲ୍ମୀକୀରେ ପରିଣତ ହୋଇଥିଲା, ଚଣ୍ଡାଶୋକ ଧର୍ମାଶୋକରେ ପରିଣତ ହୋଇଥିଲା ଦେବାନାଂ ପ୍ରିୟ ପ୍ରିୟଦର୍ଶୀ ଅଶୋକ ଭାବରେ । ପୁଣି ଆଜି ସେହି ବୁଦ୍ଧ ଅଶୋକ ଭୂମିରେ କେତେ ଅଙ୍ଗୁଳିମାଳ ଓ ଚୋରାଚୋଇ ଆବିର୍ଭାବ ହେଲାଣି ଓ ସର୍ବୋପରି ଦେଶର ସଂହତି, ଏକତା ଓ ସାର୍ବଭୌମତ୍ୱ ବିପନ୍ନ ହେବାକୁ ବସିଲାଣି । ସ୍ୱର୍ଣ୍ଣର ଲଙ୍କା ମୋହ ଏଡ଼ାଇ ଦେଇ ଜନ୍ମଭୂମି ଭାରତର ଗୌରବ ତା'ର ସୁପୁତ୍ର ରାମଚନ୍ଦ୍ରଙ୍କ କଣ୍ଠରେ ଯାହା ଆବୃତ୍ତି ହୋଇଥିଲା, ତାହା ଏବେ ବି ହୃଦୟରେ ନବ ଉନ୍ମାଦନା ପୁଲକ ଓ ଆହ୍ଲାଦ ଆଣେ ।

"ଅପି ସ୍ୱର୍ଣ୍ଣମୟୀ ଲଙ୍କା ନମେ ଲକ୍ଷ୍ମଣ ରୋଚତେ
ଜନନୀ ଜନ୍ମଭୂମିଶ୍ଚ ସ୍ୱର୍ଗାଦପି ଗରୀୟସୀ ।"

ଏବେ ବି ରାଷ୍ଟ୍ର ତମସା ତୀରରେ ତାର ସୁପୁତ୍ରମାନେ ଯେଉଁ ବାଣୀ ଉଚ୍ଚାରଣ କରୁଛନ୍ତି ଓ ତାହା କିପରି ହୃଦୟସ୍ପର୍ଶୀ ତାହା ଚିନ୍ତନୀୟ । ଜଣେ ସୁପୁତ୍ର ଏବେ ଦିଲ୍ଲୀରେ କୌଣସି ଏକ ପ୍ରସଙ୍ଗରେ କହିଛନ୍ତି, "I don't Know if we are all living in the same Country." ମୁଁ ଜାଣେନି ମୁଁ ସେହି ଏକା ଦେଶରେ ବାସ କରୁଛି କି ନାହିଁ ।" ଆଉ ହୃଦୟ ଖେଦ ବାଣୀ ଶୁଣିବେ । ଏବେ ଜଣେ ସୁପୁତ୍ର ସମ୍ବିଧାନର ଏକ ଧାରାକୁ ସର୍ବଜନ ସମକ୍ଷରେ ପୋଡ଼ି ସଗର୍ବରେ କହି ନଥାନ୍ତେ, WHAT IS THIS A PIECE OF PAPER. ଭାରତର ସ୍ୱାଧୀନତାର ନିଶାଣ ଭାରତୀୟ ସମ୍ବିଧାନ ତାର ନାଗରିକଙ୍କ ଭାଷାରେ "ଖଣ୍ଡେ ଟୁକୁଡ଼ା କାଗଜ" ପୁଣି ଆଉ ଜଣେ ସୁପୁତ୍ର କୌଣସି ଏକ ଅଞ୍ଚଳରେ ଏବେ କୌଣସି ଏକ ନିର୍ଦ୍ଦିଷ୍ଟ ସଂପ୍ରଦାୟର ବ୍ୟକ୍ତିଙ୍କୁ ଅନୁରୋଧ କରିଛନ୍ତି 1987 January 26 — ଗଣତନ୍ତ୍ର ଦିବସ ବର୍ଜନ କରିବାକୁ ।

ଏଇ ମାଟିର ସୁଯୋଗ୍ୟ ପୁଅ ଇକ୍‌ବାଲ୍ କହିଯାଇଥିଲା "ସାରା ଜହାଁ ସେ ଅଚ୍ଛା ୟେ ହିନ୍ଦୁସ୍ଥାନ ହମାରା" । ଆଉପୁଣି ଏଇ ମାଟିର ପୁଅମାନେ କେତେ ସ୍ଲୋଗାନ ଦେଇ ଏହାକୁ ଟୁକୁରା ଟୁକୁରା କରି ଭାଗ ଭାଗ କରିବାକୁ ବସିଛନ୍ତି । ରାଷ୍ଟ୍ର ତମସାତୀରେ କେତେ ବିୟୋଗାତ୍ମକ ଓ ଖେଦବାଣୀ ଶୁଣିବେ ।

ଜନସଂଖ୍ୟା ଦୃଷ୍ଟିରୁ ଭାରତ ଯେପରି ପୃଥିବୀରେ ଏକ ବୃହତ୍ ରାଷ୍ଟ୍ର ରୂପେ ପରିଗଣିତ ହେଉଛି ଏହାର ସମ୍ବିଧାନ ମଧ୍ୟ ବୃହତ୍ । ୭୫ କୋଟି ଲୋକଙ୍କର ଯେଉଁ ସମ୍ବିଧାନ ଅଛି ଏଥିରେ ୩୯୫ ଧାରା । ୯ଟି SCHEDULE ଅଛି । ଏହି ବୃହତ୍ ଅବୟବ ପାଇଁ ଏହା ଆଇନ ଜୀବୀଙ୍କର ସ୍ୱର୍ଗର ଅମରାବତୀ ହୋଇଛି । (LAWYERS PARADISE) ଆଇନଜୀବୀମାନେ ଏହାର କେତେ ବ୍ୟାଖ୍ୟା କରୁଛନ୍ତି, କିପରି ଭାବେ କରୁଛନ୍ତି ସେ ବିଷୟରେ କିଛି କୁହାଯାଉ ନାହିଁ । ମାତ୍ର ସମ୍ବିଧାନ ପ୍ରତି ଅସମ୍ମାନ ପ୍ରଦର୍ଶନ କରିବା କେତେ ଉଚିତ ଏବଂ ଏହାଦ୍ୱାରା ଆମର ଜାତୀୟତା ଭାବମୂର୍ତ୍ତି (NATIONAL IMAGE) କିପରି କ୍ଷୁଣ୍ଣ ହେଉଛି ତାହା ଏକ ଭାବିବା କଥା । ଯୁକ୍ତରାଷ୍ଟ୍ର ଆମେରିକାର ସମ୍ବିଧାନ ଯାହାକୁ ଦୁଇଶହ ବର୍ଷ ତଳେ ଲାଗୁ କରାଯାଇଥିଲା, ତାର ସମ୍ବିଧାନ କାର୍ଯ୍ୟକାରୀ ହେବାର ପ୍ରାୟ ୨୦୦ ବର୍ଷ ପୂର୍ବରୁ (1789) ପାଇଥିଲେ ତାହା ହେଉଛି ବିଶ୍ୱର ସବୁଠାରୁ ସଂକ୍ଷିପ୍ତ

# ରୋଗ, ରୋଗୀ, ଚିକିତ୍ସା ଓ ଚିକିତ୍ସକ

ଶ୍ରୀ ଲକ୍ଷ୍ମୀନାରାୟଣ ରାଉତରାୟ

ଆଜିର ସମାଜରେ ଜନସ୍ୱାସ୍ଥ୍ୟର ଦ୍ରୁତ ଅବନତି ଘଟୁଛି । ବହୁଳଭାବେ ରୋଗ ବୃଦ୍ଧି ଏହାର ପ୍ରଧାନ କାରଣ । ରୋଗର ଚିକିତ୍ସା ପରିବର୍ତ୍ତେ ରୋଗୀର ଚିକିତ୍ସା ଏକାନ୍ତ ବାଞ୍ଛନୀୟ । ଆମେ ରୋଗ ଉପରେ ବେଶୀ ଗୁରୁତ୍ୱ ଦେଇ ରୋଗୀ କଥା ଭୁଲି-ଗଲେଣି । ଏହି ଧାରଣାର ବଶବର୍ତ୍ତୀହୋଇ ଔଷଧ ରୋଗ ନାମରେ ନାମିତ ହୋଇ ବିକ୍ରି ହେଉଅଛି । ଆମେ ଡାକ୍ତରଙ୍କ ପାଖକୁ ଗଲେ ରୋଗ ବିଷୟରେ କହିଥାଉଁ । ରୋଗ ଯେପରି ରୋଗୀଠାରୁ ପୃଥକ ଏହି ଧାରଣାହିଁ ଆମକୁ ବିପଥଗାମୀ କରିଛି । ତେଣୁ ରୋଗ, ରୋଗୀ, ଚିକିତ୍ସା ଓ ଚିକିତ୍ସକ ଏହି ଚାରୋଟିର ପରସ୍ପର ନିବିଡ଼ ସଂପର୍କ ରହିଛି । ଆଜିର ସଭ୍ୟତା ବସ୍ତୁବାଦର ସଭ୍ୟତା ଉପରେ ପର୍ଯ୍ୟବେସିତ । ସଭ୍ୟତାର ପ୍ରଗତି ସହ ତାଳ ମିଳାଇ ରୋଗ ଓ ରୋଗୀ ଉଭୟ ସମଭାବେ ପ୍ରଗତି ଲାଭ କରିଛନ୍ତି । ନୂତନ ସଭ୍ୟତା ନୂତନ ରୋଗ ସୃଷ୍ଟି କରିବାରେ ସହାୟକ ହୋଇଛି । ଚିକିତ୍ସକମାନଙ୍କ ଆଗରେ ନୂତନ ରୋଗ ସମସ୍ୟା ସୃଷ୍ଟି କରିଛି । ସମାଜ ଉପରେ ନୂତନ ରୋଗ ନାନା ପ୍ରକାର ପ୍ରଭାବ ବିସ୍ତାର କଲଣି । ଲୋକେ ଆତଙ୍କିତ ଅବସ୍ଥାରେ ଅଛନ୍ତି । ଗବେଷଣା ପରେ ଗବେଷଣା ଚାଲିଛି । ଏହାର ଅନ୍ତ ନାହିଁ । ଅପରପକ୍ଷରେ ଲୋକେ ରୋଗମୁକ୍ତ ହୋଇପାରୁନାହାନ୍ତି । ଲୋକଙ୍କ ଅବସ୍ଥା ଦୟନୀୟ । ଧନୀମାନେ ବିଶେଷଜ୍ଞ ଡାକ୍ତରଙ୍କ ସହାୟତା ନେଇ ମନରେ ସାନ୍ତ୍ୱନା ଆଣୁଛନ୍ତି କିନ୍ତୁ ସମାଧାନ କାହିଁ ? ଗରିବମାନଙ୍କ ଅବସ୍ଥା ଅତି ଶୋଚନୀୟ । ବୁଝିବାକୁ କାହାର ବା ବେଳ କାହିଁ । ଏମାନେ ଯନ୍ତ୍ର ଭଳି କାମ କରୁଛନ୍ତି କିନ୍ତୁ ଅହରହ ଯନ୍ତ୍ରଣାରେ ଅଧୀର । ଅଭାବ ସାଙ୍ଗକୁ ରୋଗ ବୋଝ ଉପରେ ନଳିତା ବିଡାପରି ଦୁଃଖଦାୟକ ହୋଇଛି । ଏ ପ୍ରକାର ପରିସ୍ଥିତିର ମୁକାବିଲା କରିବା ଆମ ସମସ୍ତଙ୍କର କର୍ତ୍ତବ୍ୟ ଓ ଦାୟିତ୍ୱ ମଧ୍ୟ ।

କୌଣସି ପରିସ୍ଥିତିର ମୁକାବିଲା କରିବାକୁ ହେଲେ ଏହାକୁ ଗଭୀରଭାବେ ଅନୁଧ୍ୟାନ କରିବା ନିତାନ୍ତ ଆବଶ୍ୟକ । ରୋଗ ସୃଷ୍ଟିର ନାନା ପ୍ରକାର କାରଣ ରହିଛି । କେତୋଟି ପ୍ରଧାନ ପ୍ରଧାନ କାରଣ ନିମ୍ନରେ ପ୍ରଦତ୍ତ କରାଗଲା ।

(୧) ଉତ୍ତମ ଜଳବାୟୁ ଓ ସୁସ୍ଥ ପରିବେଶ ଉତ୍ତମ ସ୍ୱାସ୍ଥ୍ୟ ପାଇଁ ଏକାନ୍ତ ଅପରିହାର୍ଯ୍ୟ । ଏହାର ଅଭାବରେ ରୋଗ ସୃଷ୍ଟି ହେବା ସ୍ୱାଭାବିକ ।

(୨) ନାସ୍ତିକ ଓ ବସ୍ତୁବାଦୀମାନଙ୍କପାଇଁ ମନରେ ସଂଯମତା ଆଣିବା ଏକପ୍ରକାର ଦୁରୂହ ବ୍ୟାପାର । ଅଳ୍ପ ବହୁତେ ଆମେ ସମସ୍ତେ ବସ୍ତୁବାଦୀ । ବସ୍ତୁବାଦର ଅଳିକ ସୁଖହିଁ ଆମ ପୌରୁଷକୁ ଦୁର୍ବଳ କରିଦେଇଛି । ପୌରୁଷର ଅଭାବରେ ପ୍ରାଣ ଶକ୍ତି ଦୁର୍ବଳ ହୋଇପଡେ । ଦୁର୍ବଳ ପ୍ରାଣଶକ୍ତି (vital force) ରୋଗ ସୃଷ୍ଟିର ସହାୟକ ।

(୩) ସାଧାରଣ ଲୋକଙ୍କ ପାଇଁ ଉତ୍ତମ ଚିକିତ୍ସା ପ୍ରଣାଳୀର ଅଭାବ । ତେଣୁ ଉତ୍ତମ ଚିକିତ୍ସା ପ୍ରଣାଳୀ ସହଜ ଓ ସୁଲଭ ହେବା ଉଚିତ ।

(୪) ଉତ୍ତମ ଓ ପୁଷ୍ଟିକର ଖାଦ୍ୟ ରୋଗ ପ୍ରତିରୋଧକ ଶକ୍ତି ସୃଷ୍ଟି କରିଥାଏ । ଏହାର ଅଭାବରେ ମନୁଷ୍ୟ ରୋଗାକ୍ରାନ୍ତ ହୋଇପଡ଼େ ।

ବର୍ତ୍ତମାନ ରୋଗୀ ବିଷୟରେ ଆଲୋଚନା କରାଯାଉ । ରୋଗୀର ସଂଜ୍ଞା:—ଶରୀର ଓ ମନ ଉଭୟର ନିବିଡ଼ ସଂପର୍କ ଥିବାରୁ ଶରୀରର ପୁଷ୍ଟି ସହ ମନର ଶାନ୍ତି ଅପରିହାର୍ଯ୍ୟ । ଗୋଟିକର ବିପର୍ଯ୍ୟୟ ଘଟିଲେ ଅନ୍ୟଟିର ବିପର୍ଯ୍ୟୟ ହେବା ସ୍ୱାଭାବିକ । ତେଣୁ ଏଠାରେ ରୋଗୀର ସଂଜ୍ଞା ନିରୂପଣ କରିବାକୁ ହେଲେ ଉତ୍ତମ ସ୍ୱାସ୍ଥ୍ୟର ଅବଧାରଣା କରିବା ଉଚିତ୍ ହେବ ।

ଯେହେତୁ ମାନବ ଜନ୍ମ ଦୁର୍ଲଭ । ସେଥିପାଇଁ ଉତ୍ତମ ସ୍ୱାସ୍ଥ୍ୟ ଆମ ପକ୍ଷରେ ଏକାନ୍ତ ଆବଶ୍ୟକ । କାରଣ, ମାନବହିଁ ସ୍ୱଦେହରେ ଈଶ୍ୱର ସତ୍ତା ଅନୁଭବ କରିପାରିବ । ସ୍ୱଦେହରେ ଈଶ୍ୱର ସତ୍ତା ଅନୁଭବ କରିପାରିଲେ ମନୁଷ୍ୟ ପରମାନନ୍ଦ ଲାଭ କରିଥାଏ । ଏଣୁ ଏହି ନୀତିକୁ ଅବଲମ୍ବନ କରି ରୋଗୀର ସଂଜ୍ଞା ନିରୂପଣ କରିବା ସହଜ ଓ ସୁଗମ ହୋଇପାରିବ ।

ଶରୀରରେ କୌଣସି ପ୍ରକାର ଯନ୍ତ୍ରଣା ବିଦ୍ୟମାନ ଥିଲେ ସେହି ଲୋକକୁ ଆମେ ସାଧାରଣତଃ ରୋଗୀ ବୋଲି ଧରିନେଉ । ଏହା ରୋଗୀର ସଂପୂର୍ଣ୍ଣ ସଂଜ୍ଞା ନୁହେଁ । କାରଣ, ଶରୀରର କୌଣସି ଅବୟବ ବା ଅଂଶରେ ଯନ୍ତ୍ରଣା ନଥିଲେ ବି ଯଦି ସେହି ଲୋକ ଅସୁସ୍ଥତା ଅନୁଭବ କରୁଛି, ଅର୍ଥାତ୍ ଦୁର୍ବଳ ଅନୁଭବ କରୁଛି, ଶକ୍ତି ହୀନ ହୋଇ ପଡୁଛି, ତେବେ ତାକୁ ରୋଗୀ ଆଖ୍ୟା ଦିଆଯାଇ-ପାରେ । ସଂକ୍ଷେପରେ କହିବାକୁ ଗଲେ, ଶରୀର ଓ ମନ ଉଭୟର ଏକ ସଙ୍ଗେ ଅସୁସ୍ଥତା କିମ୍ବା କୌଣସି ଗୋଟିକର ଅସୁସ୍ଥତା ହେଲେ ରୋଗରେ ପୀଡ଼ିତ ବୋଲି ଧରିବାକୁ ପଡ଼ିବ । ଏହି ହେତୁରୁ, ରୋଗୀର ସଂଜ୍ଞାକୁ ଭିତ୍ତିକରି ରୋଗୀର ନିର୍ଦ୍ଦିଷ୍ଟ ଚିକିତ୍ସା ପ୍ରଣାଳୀ ଅବଲମ୍ବନ କରିବା ବିଧେୟ । ଅତଏବ, ରୋଗର ଚିକିତ୍ସା ନକରି ରୋଗୀର ଚିକିତ୍ସା କରିବା ଏକାନ୍ତ ଆବଶ୍ୟକ ।

**ଚିକିତ୍ସା**—ରୋଗ ଓ ରୋଗୀ ବିଷୟରେ ସମ୍ୟକ୍ ଆଲୋକପାତ କରାଯିବା ପରେ ଚିକିତ୍ସା ପଦ୍ଧତି ବିଷୟରେ ଆଲୋଚନା କରାଯାଉ । ଚିକିତ୍ସାର ସଂଜ୍ଞା କଣ ? କେଉଁ ରୋଗୀ ପାଇଁ କେଉଁ ଚିକିତ୍ସା ପଦ୍ଧତି ସର୍ବୋତ୍କୃଷ୍ଟ, ଏହାହିଁ ଆମ ସମସ୍ତଙ୍କର ଅନୁଧ୍ୟାନର ବିଷୟ । ଚିକିତ୍ସାର ମାନବୃଦ୍ଧି କରି-ପାରିଲେ ଆମ ସମାଜ ଏକ ସୁସ୍ଥ ସବଳ ସମାଜରେ ପରିଗଣିତ ହୋଇପାରିବ । ହୋମିଓପାଥିର ଉଦ୍ଭାବକ ମହାତ୍ମା ହାନିମ୍ୟାନ ଚିକିତ୍ସା ସମ୍ବନ୍ଧୀୟ ସମସ୍ତ ନୀତିନିୟମ ତାଙ୍କ Text o' Organonରେ ଅବତାରଣା କରିଛନ୍ତି । ଚିକିତ୍ସା ପ୍ରଣାଳୀ ଏକ ମନସ୍ତାତ୍ତ୍ୱିକ ନୀତିନିୟମରେ ପର୍ଯ୍ୟବେସିତ । ମହାତ୍ମା ହାନିମ୍ୟାନ୍ ଚିକିତ୍ସାର ପ୍ରଥମ ଓ ଦ୍ୱିତୀୟ ନିୟମରେ ଲେଖିଲେ—

"The physician's high and only mission is to restore the sick to health, to cure as it is termed".

"The highest ideal of cure is rapid, gentle and permanent restoration of the health, or removal and annihilation of the disease in its whole extent. With shortest, most reliable and most harmless way, on easily comprehensible principle".

ଚିକିତ୍ସକର ଲକ୍ଷ୍ୟ ରୋଗୀକୁ ଚିକିତ୍ସା କରି ସୁସ୍ଥାବସ୍ଥାକୁ ଫେରାଇ ଆଣିବା । ଚିକିତ୍ସା ପଦ୍ଧତି ଏପରି ହେବା ଉଚିତ୍, ଯାହାଦ୍ୱାରାକି ରୋଗ ଉପଶମ ସମୟରେ ରୋଗୀ କୌଣସି ପ୍ରକାର କଷ୍ଟ ଅନୁଭବ କରିପାରିବ ନାହିଁ । ଚିକିତ୍ସା ସମୟରେ ରୋଗୀ ଉତ୍ଫୁଲ୍ଲ ରହିବା ସଙ୍ଗେ ସଙ୍ଗେ ତାର କାର୍ଯ୍ୟକାରୀତା ଶକ୍ତି ଧୀରେ ଧୀରେ ଫେରିପାଇବ । ରୋଗୀ ମଧ୍ୟ ସଂପୂର୍ଣ୍ଣ ସୁସ୍ଥ ଲାଭ କରିପାରିବ ।

ରୋଗ ନିରାକରଣ ପାଇଁ ଅନେକ ଚିକିତ୍ସା ପ୍ରଣାଳୀ ଭିନ୍ନ ଭିନ୍ନ ଚିକିତ୍ସା ପ୍ରଣାଳୀରେ ଭିନ୍ନ ଭିନ୍ନ ସୁବିଧା ରହିଛି । ତେବେ, ମୂଳତଃ ସମସ୍ତ ପ୍ରକାର ଚିକିତ୍ସା ଉପରୋକ୍ତ ନୀତିନିୟମ ପ୍ରଯୁଜ୍ୟ । ଏହା ନ କରି ଚିକିତ୍ସକମାନେ ତାଙ୍କ କର୍ତ୍ତବ୍ୟ ଠିକ୍ ଭାବେ ସଂପାଦ ନାହିଁ ବୋଲି ବୁଝିବାକୁ ପଡ଼ିବ । ବିଭିନ୍ନ ଚିକିତ୍ସା ପଦ୍ଧତି ଦୃଷ୍ଟିଗୋଚର ହୋଇଥାଏ । ତନ୍ମଧ୍ୟରୁ ପ୍ରଧାନ ଚିକିତ୍ସା ପ୍ରଣାଳୀ ହେଲା—(୧) ଆୟୁର୍ବେଦିକ, (୨) ଆଲୋ (୩) ହୋମିଓପାଥିକ, (୪) ବାୟୋକେମିକ, (୫) ଚିକିତ୍ସା, (୬) ଚୁମ୍ବକ ଚିକିତ୍ସା, (୭) ଆକ୍ୟୁପଙ୍କଚର ଓ (୮) ତନ୍ତ୍ର, ମନ୍ତ୍ର ଚିକିତ୍ସା ।

ଉପରୋକ୍ତ ପ୍ରତ୍ୟେକ ଚିକିତ୍ସା ପଦ୍ଧତି ବିଷୟରେ ଆଲୋକପାତ କରିବା ଉଚିତ୍ ହେବ ।

**ଆୟୁର୍ବେଦିକ୍ ଚିକିତ୍ସା**—ଉତ୍ତମ ସ୍ୱାସ୍ଥ୍ୟର ଅଧିକାରୀ ଯଦି ମନୁଷ୍ୟର ଆୟୁଷ ନ ଥାଏ, ତେବେ ସବୁ ବୃଥା ତେଣୁ ଯେଉଁ ଚିକିତ୍ସା ପ୍ରଣାଳୀରେ ଉତ୍ତମ ସ୍ୱାସ୍ଥ୍ୟ ସଙ୍ଗେ ଆୟୁ ବୃଦ୍ଧି ଘଟିବ, ସେହିପରି ଚିକିତ୍ସା ପ୍ରକୃତରେ ବାଞ୍ଛ ଗ୍ରହଣୀୟ ମଧ୍ୟ । ଆୟୁର୍ବେଦିକ୍ ଚିକିତ୍ସା ମୂଳତଃ ଏହି ଅବଲମ୍ବନ କରି ପ୍ରସାର ଲାଭ କରିଛି । ତେଣୁ ଆୟୁ ଚିକିତ୍ସକମାନେ ତାଙ୍କ ଉପରଲିଖିତ କଠୋର ସତ୍ୟକୁ କରି କର୍ତ୍ତବ୍ୟ ଓ ଦାୟିତ୍ୱ ସମ୍ବନ୍ଧରେ ସଚେତନ ରହି ଚିକିତ୍ସା କରିବା ଉଚିତ୍ । କେତୋଟି ନିର୍ଦ୍ଦିଷ୍ଟ ନୀତିନି ଆୟୁର୍ବେଦିକ ଔଷଧ ପ୍ରସ୍ତୁତି କରଣ ଓ ଚିକିତ୍ସା ପଦ୍ଧତି ଅ କରାଯାଏ । ସାଧାରଣତଃ, ଆୟୁର୍ବେଦିକ୍ ଔଷଧ ପତ୍ରାଗରୁ ସଂଗ୍ରହ କରାଯାଇଥାଏ । ଏହି ପ୍ରକାର ଔଷଧ ଗ୍ରହଣ, ପୂର୍ଣ୍ଣିମା, ଅମାବାସ୍ୟା, ପରାଗ, ସଂକ୍ରାନ୍ତି ଓ ନାନା ତିଥି ନକ୍ଷତ୍ରକୁ ନେଇ କରାଯାଇଥାଏ । ଜ୍ୟୋତିଷ ସାହାଯ୍ୟ ନେଇ ଔଷଧ ସଂଗ୍ରହ ପଛରେ ବୈଜ୍ଞାନିକ ନିହିତ ଅଛି । ଏ ସମସ୍ତ ଅନୁସନ୍ଧାନ ଓ ଅନୁଧ୍ୟାନ ଉଚିତ୍ । କାଳରୂପୀ ଜନାର୍ଦ୍ଦନ ଗ୍ରହରୂପରେ ରହି ମ ଜୀବନ ଧାରାକୁ ନିୟନ୍ତ୍ରିତ କରିଥାନ୍ତି ।

ପ୍ରକୃତି ବକ୍ଷରେ ନାନାପ୍ରକାର ବୃକ୍ଷଲତା ସବୁ ସୃ ନବଗ୍ରହମାନଙ୍କ ପ୍ରବାହରେ ସଂପାଦିତ ହୋଇଥାଏ । ଅବଶ୍ୟ ଈଶ୍ୱରଙ୍କ ମହିମା । ସେହିପରି ନବଗ୍ରହମାନେହିଁ ସୃଷ୍ଟି ହେବାରେ ପ୍ରଧାନ ସହାୟକ ହୋଇଥାନ୍ତି । ତେଣୁ ଜ୍ୟୋ ଶାସ୍ତ୍ରକୁ ବାଦ୍ ଦେଇ ଆୟୁର୍ବେଦିକ୍ ଚିକିତ୍ସା କେବେହେଲେ ଲାଭ କରିପାରିବ ନାହିଁ । ଉପରୋକ୍ତ କାରଣରୁ ଆୟୁର୍ବେ ସମ୍ବନ୍ଧରେ ଗଭୀର ଗବେଷଣା କରିବା ବିଧେୟ । ଏହି ଚିକିତ୍ସା ଆମ ଭାରତବର୍ଷରେ ବହୁ ପୁରାତନ ଯୁଗରୁ ଚଳିଆ ଏହାର ପୁନରୁଦ୍ଧାର ଦରକାର । ତେବେ, ଏହି ଆୟୁର୍ବେ ଚିକିତ୍ସାରେ କେତୋଟି ଅସୁବିଧା ରହିଛି । ଫଳରେ ଲୋକପ୍ରିୟତା ଲାଭ କରିପାରୁନାହିଁ । ଏହି ସବୁ ଅସୁ ଦୂରୀଭୂତ ହୋଇପାରିଲେ ଆୟୁର୍ବେଦିକ୍ ଚିକିତ୍ସା ଉପରେ ସର୍ବୋତ୍କୃଷ୍ଟ ବୋଲି ପରିଗଣିତ ହୋଇପାରି ଆୟୁର୍ବେଦିକ୍ ଚିକିତ୍ସା ପଦ୍ଧତିରେ ସୁବିଧା ଓ ଅସୁବିଧା ଆଲୋ ଅତ୍ୟନ୍ତ ବ୍ୟାପକ । ଏଣୁ ଏଠାରେ ଏ ବିଷୟରେ ଆଲୋ ନକରିବା ହିଁ ବିଧେୟ ।

(୨) ଆଲୋପାଥିକ୍ ଚିକିତ୍ସା–ଆଲୋପାଥିକ୍ ଚିକିତ୍ସାର ପ୍ରଚଳନ ଆମ ଭାରତବର୍ଷରେ ମାତ୍ର ୨୦୦ ବର୍ଷରୁ ଅଧିକ ହେବନାହିଁ । ବ୍ରିଟିଶ୍‌ମାନଙ୍କର ଶାସନ କାଳରୁ ଏହାର ପ୍ରଚଳନ ଧୀରେ ଧୀରେ ବୃଦ୍ଧି ପାଉଛି । ବର୍ତ୍ତମାନ ଆଲୋପାଥିକ୍ ଚିକିତ୍ସାବହୁଳ ପ୍ରସାର ଲାଭ କରିଛି । ପ୍ରକୃତରେ ଦେଖିବାକୁ ଗଲେ ଏହି ପ୍ରକାରର ଚିକିତ୍ସାରେ ସୁବିଧା ଯେତିକି, ଅସୁବିଧା ମଧ୍ୟ ସେତିକି ରହିଛି । ଏହି ଚିକିତ୍ସା ପଦ୍ଧତିରେ ନାନାପ୍ରକାର ସୁବିଧା ମଧ୍ୟରୁ ଅପରେଶନ ଦ୍ୱାରା ରୋଗ ଉପଶମ ଏକ ବିଶିଷ୍ଟ ସୁବିଧା ରୂପେ ପରିଗଣିତ । ଅନ୍ୟାନ୍ୟ ସୁବିଧା ମଧ୍ୟରେ ଇଞ୍ଜେକ୍ସନ ଦ୍ୱାରା ଯନ୍ତ୍ରଣାର ଆଶୁ ଉପଶମ, ମୁମୂର୍ଷୁ ରୋଗୀକୁ ଅକ୍ସିଜେନ୍ ପ୍ରୟୋଗ, ରକ୍ତହୀନ ରୋଗୀ ବା ସହସା ରକ୍ତକ୍ଷରଣରେ ରକ୍ତଦାନ (Blood transfusion) ଇତ୍ୟାଦି ଅନେକ ସୁବିଧା ରହିଛି । ମନୁଷ୍ୟ ଶରୀରରେ ଆଲୋପାଥିକ୍ ଔଷଧ ପ୍ରୟୋଗ ବିଜ୍ଞାନସମ୍ମତ ବୋଲି ପରିଗଣିତ ହେଲେ ମଧ୍ୟ ପ୍ରକୃତ ପକ୍ଷରେ ବିଜ୍ଞାନ ସମ୍ମତ ନୁହେଁ । ଏହା ଲେଖକଙ୍କର ଅଭିମତ । ଏହା ସଂପୂର୍ଣ୍ଣ ବିଜ୍ଞାନସମ୍ମତ ନୁହେଁ ବୋଲି ନିମ୍ନଲିଖିତ କେତୋଟି କାରଣ ପ୍ରଦର୍ଶନ ହେଉ ।

(କ) ଶରୀର ଓ ମନ ଉଭୟର ଲକ୍ଷଣ ସମୂହକୁ ନେଇ ଔଷଧ ନିର୍ବାଚନ ନିତାନ୍ତ ଆବଶ୍ୟକ । ଅଧିକାଂଶ କ୍ଷେତ୍ରରେ କେବଳ ରୋଗର ଲକ୍ଷଣ ସମୂହକୁ ନେଇ ଆଲୋପାଥିକ ଡାକ୍ତରମାନେ ଔଷଧ ଦେଇଥାନ୍ତି । ଏହାଦ୍ୱାରା ରୋଗୀର ମାନସିକ ଲକ୍ଷଣ ସମୂହକୁ ହେୟ ମନେ କରାଯାଇଥାଏ । ଫଳରେ ରୋଗ ଉପଶମ ହେବା ପରିବର୍ତ୍ତେ ସମୟେ ସମୟେ ଜଟିଳ ଆକାର ଧାରଣ କରେ । ଧରନ୍ତୁ Typhoid ଗୋଟିଏ ରୋଗ । ତିନିଜଣଙ୍କୁ ଟାଇଫଏଡ୍ ରୋଗ ଏକ ସମୟରେ ଆକ୍ରମଣ କରିଛି । ତିନିଜଣଙ୍କର ଶାରୀରିକ ଓ ମାନସିକ ଲକ୍ଷଣ ସମୂହ ନିମ୍ନରେ ପ୍ରଦତ୍ତ ହୋଇଅଛି ।

ପ୍ରଥମ ରୋଗୀର ଲକ୍ଷଣ–କୋଷ୍ଠ କାଠିନ୍ୟ, ଅସହ୍ୟ ଶିରବେଦନା ବା ଶିରଘୂର୍ଣ୍ଣନ, ବମନ, ତିକ୍ତ, ଆସ୍ୱାଦ, ଯକୃତ ପ୍ରଦେଶରେ ବେଦନା, ଜିହ୍ୱା ଅପରିଷ୍କାର, ବକ୍ଷ ବେଦନା, ଦୁର୍ବଳତା ଅନୁଭବ, ବିଷାଦଗ୍ରସ୍ତ ଇତ୍ୟାଦି ।

ଦ୍ୱିତୀୟ ରୋଗୀର ଲକ୍ଷଣ–ସଂଧ୍ୟା ଭାଗରେ ଶୀତ ଅନୁଭବ ବା ଶୀତ ବେଦନା, ମୁଖମଣ୍ଡଳର ମଳିନତା, ମସ୍ତିଷ୍କ ଭାରୀ, ଫୁସଫୁସରେ ଉଷ୍ଣତାବୋଧ, ଉଦରାମୟ, ଯୋଡ଼ହାତ ଗିଳିବା, ଅସ୍ଥିରତା ଅନୁଭବ ଇତ୍ୟାଦି ।

ତୃତୀୟ ରୋଗୀର ଲକ୍ଷଣ–ଶରୀରର ଉତ୍ତାପମାତ୍ରା ଦିନକୁ ଦିନ ଧୀରେ ଧୀରେ ବୃଦ୍ଧି, ଉଦରାମୟ, ଖାମ୍ଭା ଚାପାବଫାଟି ବୋଧ ଓ ବେଦନା, ମୁଖମଣ୍ଡଳ ପାଉଁଶିଆ ଦେଖାଯିବା, ସ୍ୱେଦ ପରି ବର୍ଣ୍ଣର ମଳ, ଗଳା ମଧ୍ୟରେ କ୍ଷତ, ଶ୍ୱାସ ପ୍ରଶ୍ୱାସ ଦୁର୍ଗନ୍ଧ, ବମନଇଚ୍ଛା, ଦ୍ରୁତ ନାଡ଼ୀ ଓ ପ୍ରଳାପ, ଅନାସକ୍ତଭାବ ଇତ୍ୟାଦି ।

ଉପରୋକ୍ତ ତିନୋଟି ରୋଗୀଙ୍କର ଲକ୍ଷଣ ସମୂହକୁ ଅନୁଧ୍ୟାନ କଲେ ଦେଖାଯିବ ଯେ ପ୍ରତ୍ୟେକ ରୋଗୀର ଲକ୍ଷଣ ଅନ୍ୟ ରୋଗୀର ଲକ୍ଷଣଠାରୁ ଭିନ୍ନ ଅଟେ । ଆଲୋପାଥିକ୍ ଚିକିତ୍ସକଙ୍କ ମତରେ ସମସ୍ତଙ୍କୁ ଟାଇଫଏଡ୍ ରୋଗ ହୋଇଛି । ତେଣୁ ସମସ୍ତଙ୍କ ଔଷଧ ସମାନ ହେବ । କିନ୍ତୁ ସମସ୍ତଙ୍କୁ ସମାନ ଔଷଧ ଦେବା ଉଚିତ୍ ହେବନାହିଁ । ପୁନଶ୍ଚ ତିନିଜଣ ରୋଗୀଙ୍କର ଶରୀରର ମୌଳିକ ଉପାଦାନ ସମୂହ ପୃଥକ୍ ପୃଥକ୍ ଅନୁପାତରେ ଥିବାରୁ ଓ ସମସ୍ତେ ଭିନ୍ନଭିନ୍ନ ପ୍ରକୃତିର ହୋଇଥିବାରୁ ଏକପ୍ରକାର ଔଷଧ ପ୍ରୟୋଗ ବିଜ୍ଞାନ ସମ୍ମତ ନୁହେଁ । ପ୍ରତ୍ୟେକ ଔଷଧର ଦ୍ୱିବିଧ କ୍ରିୟାଶକ୍ତି ମନୁଷ୍ୟ ଶରୀରରେ ପରିଲକ୍ଷିତ ହୁଏ । ମାନସିକ ସ୍ତରରେ ନିର୍ବାଚିତ ଔଷଧର ପ୍ରଭାବ ପ୍ରଥମେ ଅନୁଭୂତ ହୋଇଥାଏ । ଦ୍ୱିତୀୟରେ ମାନସିକ ସ୍ତରରୁ ପ୍ରଭାବ ଧୀରେ ଧୀରେ ଭୌତିକ ଶରୀରକୁ ଖେଳିଆସେ । ଏହି ପ୍ରକ୍ରିୟା ସଂପୂର୍ଣ୍ଣ ନହେଲା ପର୍ଯ୍ୟନ୍ତ ରୋଗର ଲକ୍ଷଣସମୂହ ଆମର ଦୃଷ୍ଟିଗୋଚର ହୋଇଥାଏ ।

ନିର୍ବାଚିତ ଔଷଧ ଯଦି ସଠିକ୍ ହୁଏ ଓ ଜୀବନୀଶକ୍ତିର ସହାୟକ ହୋଇଥାଏ, ତେବେ ରୋଗୀ ସୁସ୍ଥାବସ୍ଥାକୁ ଫେରିଆସୁଛି ବୋଲି ଅନୁଭବ କରିଥାଏ । ଭୌତିକ ଶରୀରର ଲକ୍ଷଣ ସମୂହ ଦୂରୀଭୂତ ହେଲେ ବି ରୋଗ ଉପଶମ ହେଲା ବା ରୋଗୀ ସଂପୂର୍ଣ୍ଣ ସୁସ୍ଥତା ଲାଭ କଲା ବୋଲି ଭାବିବା ଅନୁଚିତ୍ । କାରଣ ମାନସିକ ସ୍ତରରେ ପ୍ରଫୁଲ୍ଲତା ଅନୁଭୂତ ହେଉନଥିଲେ ପର୍ଯ୍ୟନ୍ତ ରୋଗୀ ରୋଗମୁକ୍ତ ହୋଇଥିଲେହେଁ ହୋଇପାରେ ନାହିଁ ।

In the mental plane patient should feel energetic and cheerful after taking few doses of the indicated medicines. On the other hand if the reverse symptom appear in the mental body even though the physical symptoms are totally absent, the patient is not said to be cured. From the moment the medicine is administered the cure starts from the mental body and extends subsequently to physical body. Thus when the patient is cured the system works properly as regards to assimitation. elimination, circulation and relaxation.

ଏହାହିଁ ଚିକିତ୍ସା ପଦ୍ଧତିର ସର୍ବଶ୍ରେଷ୍ଠ ନିୟମ । ଏହି ନିୟମର ବ୍ୟତିକ୍ରମରେ ଚିକିତ୍ସା ପ୍ରଣାଳୀ କେବେହେଲେ ସ୍ଥିର ହୋଇ ପାରେନା । ଆଜିକାଲି କିନ୍ତୁ ଅନେକ କ୍ଷେତ୍ରରେ ଦେଖାଯାଉଛି ଯେ କୌଣସି Infectious disease antibiotic ଔଷଧରେ ଆପାତତଃ ଭଲ ହେଲେ ବି ରୋଗୀର ଶରୀର ଓ ମନରେ ନାନାପ୍ରକାର ଉପସର୍ଗ ଦୃଷ୍ଟିଗୋଚର ହୁଏ । ଯଥା– ଦୁର୍ବଳତା ଅନୁଭବ, କାର୍ଯ୍ୟକାରିତା ଶକ୍ତିର ହ୍ରାସ, ମନ ବିଷାଦଗ୍ରସ୍ତ, ନାଡ଼ୀଶକ୍ତିର ହ୍ରାସ, ମସ୍ତିଷ୍କ ଦୁର୍ବଳ ଇତ୍ୟାଦି ଇତ୍ୟାଦି ।

(ଖ) ରୋଗୀର ଜୀବନୀ ଶକ୍ତିର Vital energy ପୁନରୁଦ୍ଧାର ନକରି ଭିଟାମିନ୍ ଔଷଧ ଓ ଭିଟାମିନ୍ ଖାଦ୍ୟ ସେବନ ପାଇଁ ପରାମର୍ଶ ଦେବା ବିଜ୍ଞତାର ପରିଚାୟକ ନୁହେଁ । ଯେଉଁ ରୋଗୀ ମୁମୂର୍ଷୁ ଅବସ୍ଥାରେ ଅଛି ସେ ରୋଗୀର ଜୀବନୀ ଶକ୍ତି ପ୍ରତି ମୁହୂର୍ତ୍ତରେ କ୍ଷୀଣରୁ କ୍ଷୀଣତର ହେବାକୁ ଲାଗିଛି । ଅର୍ଥାତ୍ ମୃତ୍ୟୁ ସହ ସେ ନୀରବଚ୍ଛିନ୍ନ ସଂଗ୍ରାମ କରି ଚାଲିଛି । ଏହି ରୋଗୀର ଜୀବନୀ ଶକ୍ତିର ପ୍ରଥମେ ପୁନରୁଦ୍ଧାର ଆବଶ୍ୟକ । When the vital force is deranged the system does not work efficiently. Hence the body lacks in co-ordination of assimilation, elimination, circulation and relaxation.

ଯେହେତୁ ଜୀବନୀଶକ୍ତି ଭୌତିକଶକ୍ତିର ଅନ୍ତର୍ଗତ ନୁହେଁ, ସେହେତୁ ଜୀବନୀଶକ୍ତିର ପୁନରୁଦ୍ଧାର ସାଧାରଣ ଔଷଧ ବା ଇଂଜେକସନ୍ ଦ୍ୱାରା ସମ୍ଭବ ହେବ କିପରି ? ଏଥିପାଇଁ potentized medicineର ଆବଶ୍ୟକତା ରହିଛି । These medicines are spirit like things and acts speedily on the mental plane to revive and bring the vital force of the human body to the state of equilibrium (magnetically electrically balanced state is called the equilibrium condition of the body). Such a stable state is termed as permanent restoration of health.

ଜୀବନୀଶକ୍ତିର ପୁନରୁଦ୍ଧାର ବିଷୟ ଅତ୍ୟନ୍ତ ଜଟିଳ ଓ ଦୁର୍ବୋଧ୍ୟ ।

(ଗ) ଆଲୋପାଥିକ୍ ଔଷଧର ମୂଲ୍ୟ ଆଜିକାଲି ଯଥେଷ୍ଟ ବୃଦ୍ଧି ପାଇଛି । ତେଣୁ ଆଲୋପାଥିକ୍ ଚିକିତ୍ସା ପଦ୍ଧତିରେ ବ୍ୟୟ ଅତ୍ୟଧିକ । ଯାହା ଫଳରେ କି ଅନେକ ସମୟରେ ଗରିବ ଲୋକମାନେ ଖର୍ଚ୍ଚ କରିପାରି ବିପଦରେ ପଡ଼ିଥାନ୍ତି ।

ହୋମିଓପାଥି ଚିକିତ୍ସା–ଏହିପ୍ରକାର ଚିକିତ୍ସା ପ୍ରକୃତରେ ବିଜ୍ଞାନ ସମ୍ମତ । ମନୁଷ୍ୟ ଶରୀରରେ ଜୀବନୀଶକ୍ତି ପ୍ରକୃତିର ନିୟମ ଅନୁସାରେ କାର୍ଯ୍ୟ କରୁଛି । ଅସୁସ୍ଥ ଶରୀରକୁ ସୁସ୍ଥାବସ୍ଥାକୁ ଆଣିବା ପ୍ରକୃତିର ନିୟମ । ପ୍ରକୃତିର ଏ କ୍ରିୟାକୁ ହୋମିଓପାଥି ଔଷଧ ପୂର୍ଣ୍ଣ ମାତ୍ରାରେ ସହାୟତା କରିଥାଏ । ହୋମିଓପାଥି ଔଷଧର Dilution ଲଘୁକରଣ ନିର୍ଦ୍ଦିଷ୍ଟ ନିୟମାନୁସାରେ କରାଯାଇଥାଏ । ହୋମିଓପାଥି ଚିକିତ୍ସା ପଦ୍ଧତିରେ ରୋଗୀର ଚିକିତ୍ସା ସୁନିଶ୍ଚିତ ମାର୍ଗରେ ନିର୍ଦ୍ଦିଷ୍ଟ ନୀତି ନିୟମରେ କରାଯାଇଥାଏ । ଶରୀର ଓ ମନ ଉଭୟର ଅସୁସ୍ଥତାକୁ ନେଇ ଔଷଧ ନିର୍ବାଚନ ଓ ପ୍ରୟୋଗ କରିବାଦ୍ୱାରା ରୋଗୀ ତାର ଜୀବନୀଶକ୍ତିର ପୁନରୁଦ୍ଧାର କରିବାପାଇଁ ସକ୍ଷମ ହୋଇଥାଏ । ଯଦିଓ ହୋମିଓପାଥିକ୍ ପଦ୍ଧତିରେ ଚିକିତ୍ସା ବିଶେଷ ଭାବରେ ବିଜ୍ଞାନ ସମ୍ମତ, ତଥାପି ଏହି ଚିକିତ୍ସା ପ୍ରଣାଳୀରେ ମଧ୍ୟ ନାନାପ୍ରକାର ଅସୁବିଧା ଓ ଦୋଷତ୍ରୁଟି ରହିଛି । ତାହା ନିମ୍ନରେ ପ୍ରଦତ୍ତ କରାଗଲା :–

(କ) ହୋମିଓପାଥି ଔଷଧ ପ୍ରୟୋଗ ଯଦି ସୁନିଶ୍ଚିତ ଓ ନିର୍ଦ୍ଦିଷ୍ଟ ନୀତିନିୟମରେ ହୋଇଥାଏ ତାହା ହେଲେ ରୋଗୀ ପ୍ରତି ଏହା ଅମୃତ ତୁଲ୍ୟ କାମ କରେ । ଜୀବନୀଶକ୍ତି ଠିକ୍ ଭାବେ ଶରୀରରେ କାର୍ଯ୍ୟ କରିଥାଏ । ଶରୀର ଓ ମନ ମଧ୍ୟରେ ସୁସମ୍ପର୍କ ବୃଦ୍ଧି କରେ । ସର୍ବୋପରି ରୋଗୀ ତାର ପୂର୍ଣ୍ଣ ସ୍ୱାସ୍ଥ୍ୟଲାଭ କରିଥାଏ । ଅପର ପକ୍ଷରେ ଭୁଲ ଔଷଧ ପ୍ରୟୋଗ ଦ୍ୱାରା ଉପରଲିଖିତ ସମସ୍ତ ବିପରୀତ ଲକ୍ଷଣମାନ ପ୍ରକାଶ ପାଇଥାଏ । କିନ୍ତୁ ଏପ୍ରକାର ଅବସ୍ଥା ବେଶୀ ସମୟ ଶରୀରରେ ରହିପାରେ ନାହିଁ । ତେଣୁ ଶରୀରର ବିଶେଷ କିଛି କ୍ଷତି କରିପାରେନି । ପରନ୍ତୁ ପୁନଃପୁନ ବିପରୀତ ଧର୍ମୀ ଔଷଧ ପ୍ରୟୋଗଦ୍ୱାରା ରୋଗୀର କଷ୍ଟ ବୃଦ୍ଧି ହୋଇଥାଏ ।

When the medicine is not selected exactly according to symptom—Similarly it produces inimical forces partly physical, partly physical in the body which acts against the life principle manifested in sensation and motion. But these inimical actions or the state of instability do not present for longer period and subsides slowly

without deranging the health of the patien[t signi]ficantly.

ମହାତ୍ମା ହାନିମେନଙ୍କ 16th ଓ 17th ଚିକିତ୍ସା ... ବ୍ୟାଖ୍ୟା କରି ଡାକ୍ତର James Krauss କହିଲେ:–

It is only by the spiritual influences of ... fic noxe that our spirit like vital force can ... ill, and inlike manner only by the sp... (dynamic) operation of medicines that it ... again restored to health. —(16th prin...

The practitioner therefore only needs ... away the totality of the disease signs and ... removed the entire disease.

(ଖ) ପ୍ରତ୍ୟେକ ରୋଗୀପାଇଁ ନିର୍ଦ୍ଦିଷ୍ଟ ଶକ୍ତି ବିଶିଷ୍ଟ ... ପାଥି ଔଷଧର ଆବଶ୍ୟକତା ହୋଇଥାଏ । ହୋ... ଔଷଧର ଶକ୍ତି ନିର୍ଣ୍ଣୟ କରିବା ଏକ ସମସ୍ୟା । ଏହି ସ... ସମାଧାନ ଚିକିତ୍ସକମାନେ ନିଜର ଅନୁଭୂତିରୁହିଁ ବିଶେଷ... ଜ୍ଞାନଲାଭ କରିଥାନ୍ତି । ଔଷଧର ଶକ୍ତି ନିର୍ଣ୍ଣୟ ପାଇଁ ... ନିର୍ଦ୍ଦିଷ୍ଟ ଫର୍ମୁଲା ବା ନିୟମ ନାହିଁ । ପୁନଶ୍ଚ ଭିନ୍ନ ଭିନ୍ନ ... ଔଷଧ ଶରୀରରେ ଭିନ୍ନଭିନ୍ନ ପ୍ରକ୍ରିୟା ସୃଷ୍ଟି କରି... ଅତ୍ୟନ୍ତ ଶକ୍ତିଶାଳୀ ଔଷଧର ପ୍ରକ୍ରିୟା ମାନସିକ ସ୍ତର... ଅନୁଭୂତ ହୋଇଥାଏ । ଏହା ଚିକିତ୍ସକମାନଙ୍କୁ ଔଷଧ... ନିରୂପଣରେ ଅନେକ ସମୟରେ ଦ୍ୱନ୍ଦ୍ୱରେ ପକାଇଥା...

(ଗ) ହୋମିଓପାଥି ଚିକିତ୍ସା ପଦ୍ଧତିରେ ଔଷଧ ଖ... କମ୍ । ତେଣୁ ଅଳ୍ପ ଖର୍ଚ୍ଚରେ ଶହ ଶହ ରୋଗୀଙ୍କୁ ... କରାଯାଇପାରିବ । ଏହା ହୋମିଓପାଥି ଚିକିତ୍ସାର ... ଅନ୍ୟତମ ବିଶିଷ୍ଟ ସୁବିଧା । ଏଣୁ ହୋମିଓପାଥି ... ନିର୍ବାଚନ ଅତି ଗୁରୁତ୍ୱପୂର୍ଣ୍ଣ ଓ ଜଟିଳ ସମସ୍ୟା ... ତରତରରେ ଔଷଧ ନିର୍ବାଚନ କଲେ ଭୁଲ ହେବାର ... ସମ୍ଭାବନା । ପୁନଶ୍ଚ ବହୁ ପୁରାତନ ରୋଗ ସ୍ୱଳ୍ପ ... ହୋମିଓପାଥି ଔଷଧ ଦ୍ୱାରା ଭଲ ହୋଇଥାଏ ।

(ଘ) ହୋମିଓପାଥି ଚିକିତ୍ସକମାନେ ମହାତ୍ମା ହାନି... ୨୯୧ଟି ନିୟମ ବିଷୟରେ ସଂପୂର୍ଣ୍ଣ ଜ୍ଞାନଲାଭ କରିବା ଅ... ରୋଗୀପାଇଁ ଔଷଧ ନିର୍ବାଚନ ସମୟରେ ସେ ସମସ୍ତ... ସ୍ମୃତିପଟରେ ରଖି ରୋଗୀର ସମସ୍ତ ଲକ୍ଷଣକୁ ବିଚା... ଔଷଧ ଦେବା ବାଞ୍ଛନୀୟ । ତେଣୁ ଚିକିତ୍ସକମା... ଶରୀରକୁ ସଂପୂର୍ଣ୍ଣଭାବେ ସୁସ୍ଥ ରଖିବା ବିଧେୟ । ... ହୋମିଓପାଥି ଚିକିତ୍ସକର ଯଦି କିଛି ମାନସିକ ରୋ... ବିକୃତି ବା ବିକାରଭାବ ଥାଏ, ତେବେ ସେ ... ପ୍ରଥମେ ନିଜକୁ ସୁସ୍ଥାବସ୍ଥାକୁ ଆଣିବା କର୍ତ୍ତବ୍ୟ । ... ସେପରି ଚିକିତ୍ସକ କେବେହେଲେ ଠିକ୍ ଔଷଧ ନିର୍ବା... ପାରିବ ନାହିଁ । ସୁନିଶ୍ଚିତ ହୋମିଓପାଥି ଚିକିତ୍ସକର ... ଓ ଅନ୍ୟାନ୍ୟ ସମସ୍ତ ମାନବିକ ଗୁଣ ଉତ୍ତମ ହେବା ... କାରଣ ଅଧିକାଂଶ ରୋଗର ସୃଷ୍ଟି ବିକାର ମନର ... ହୋଇଥିବାରୁ ରୋଗୀ ସେବାରେ ଚିକିତ୍ସକର ... ଗୁଣ ନିତାନ୍ତ ଅପରିହାର୍ଯ୍ୟ ।

ସର୍ବୋପରି ଚିକିତ୍ସକମାନଙ୍କର ରୋଗୀ ପ୍ରତି ଦୟାଭାବ ରଖିପାରିଲେ ଅର୍ଥଲୋଭ ତାଙ୍କୁ ଗ୍ରାସ କରି ପାରିବ ନାହିଁ । ତେଣୁ ସେମାନେ ନିଷ୍କାମ ଭାବରେ ରୋଗୀ ସେବା କରିପାରିବେ । ଏହା କରିବା ଦ୍ୱାରା ଈଶ୍ୱରଙ୍କର କୃପାଦୃଷ୍ଟି ଚିକିତ୍ସକ ଓ ରୋଗୀ ଉପରେ ପଡ଼ି ଉଭୟ ଉପକୃତ ହୋଇଥାନ୍ତି ।

(ଙ) ସମସ୍ତ ହୋମିଓପାଥି ଔଷଧର ରଙ୍ଗ ଧଳା ହୋଇଥିବାରୁ ଔଷଧ ରଙ୍ଗ ଦେଖି ଚିହ୍ନିବା ସମ୍ଭବ ନୁହେଁ । ଔଷଧ ଶିଶି ଉପରେ ଔଷଧର ନାମ ଲେଖିବାରେ ଭୁଲ ହୋଇଥିଲେ ରୋଗ ହୁଏତ ଜଟିଳ ଆକାର ଧାରଣ କରିପାରେ । ଏହା ହୋମିଓପାଥି ଔଷଧର ଅନ୍ୟତମ ବିଶିଷ୍ଟ ଅସୁବିଧା ।

(ଚ) ଉଭୟ ରୋଗୀ ଓ ଚିକିତ୍ସକ ଈଶ୍ୱରଙ୍କର ଶରଣାପନ୍ନ ହେବା ବିଧେୟ । ଔଷଧ ନିର୍ବାଚନ ଓ ସେବନ ସମୟରେ ବିଷ୍ଣୁଙ୍କୁ ସ୍ମରଣ କରିବା ଉଚିତ୍ । ଏହା କରିପାରିଲେ ରୋଗୀ ଓ ଚିକିତ୍ସକ ଉଭୟ ନିଶ୍ଚୟଭାବେ ଉପକୃତ ହୋଇପାରିବେ ।

## ବାୟୋକେମିକ୍ ଚିକିତ୍ସା

ବାୟୋକେମିକ୍ ଚିକିତ୍ସା ଆଂଶିକ ବିଜ୍ଞାନ ସମ୍ମତ । ଏହାର ଏକମାତ୍ର କାରଣ ହେଉଛି, ଭୌତିକ ଶରୀରକୁ ହିଁ କେବଳ ଦୃଷ୍ଟିରେ ରଖି ସୂକ୍ଷ୍ମ ଶରୀରକୁ ହେୟ ମନେକରାଯାଇଛି । ପଞ୍ଚମହାଭୂତରେ ଗଠିତ ମନୁଷ୍ୟ ଶରୀରରେ ବାରଗୋଟି (୧୨ଟି) ଲବଣ ଦେଖିବାକୁ ମିଳିଥାଏ । ପ୍ରତ୍ୟେକ ଲବଣ ସୁସ୍ଥ ମନୁଷ୍ୟ ଶରୀରର ରକ୍ତରେ ନିର୍ଦ୍ଦିଷ୍ଟ ଅନୁପାତରେ ରହିଛି । ଲବଣ ସମୂହର ତାରତମ୍ୟରେ ଶରୀରରେ ରୋଗ ଜାତ ହୋଇଥାଏ । ତେଣୁ ପ୍ରତ୍ୟେକ ଲବଣର ନିର୍ଦ୍ଦିଷ୍ଟ ପରିମାଣର ଅଭାବ ମେଣ୍ଟାଇ ପାରିଲେ ଶରୀର ରୋଗମୁକ୍ତ ହୁଏ । ଏହା ବାୟୋକେମିକ୍ ଚିକିତ୍ସା ପଦ୍ଧତିର ନିୟମ । ବାୟୋକେମିକ୍ ଔଷଧ ମଧ୍ୟ ନିର୍ଦ୍ଦିଷ୍ଟ ପଦ୍ଧତିରେ ଲଘୁକରଣ କରାଯାଇଥାଏ । (It involves decimal dilution theory) ଏହି ଚିକିତ୍ସା ପଦ୍ଧତିରେ ଦୁଇ ବା ତତୋଧିକ ଔଷଧ ସେବନ ମଧ୍ୟ କରାଯାଇଥାଏ ।

ଏହିପ୍ରକାର ଚିକିତ୍ସାରେ ପୁରାତନ ରୋଗ ଓ ମାନସିକ ରୋଗ ଭଲ ହେବାର ସମ୍ଭାବନା କମ୍ । ତେଣୁ ଏପ୍ରକାର ଚିକିତ୍ସାର ବିଶେଷ ପ୍ରସାର ଲାଭ ହୋଇପାରି ନାହିଁ ।

## ପ୍ରାକୃତିକ ଚିକିତ୍ସା

ପ୍ରାକୃତିକ ଚିକିତ୍ସା ପ୍ରକୃତିର ନୀତିନିୟମରେ ପର୍ଯ୍ୟବେସିତ । ଅବହମାନକାଳରୁ ଏହା ପ୍ରଚଳିତ । ସମୟାନୁକ୍ରମେ ଏହାର ପରିବର୍ତ୍ତନ ହୋଇଛି । ମନୁଷ୍ୟ ଓ ଅନ୍ୟାନ୍ୟ ଜୀବମାନଙ୍କର ଜୀବନଧାରାକୁ ପର୍ଯ୍ୟାଲୋଚନା କଲେ ଆମେ ଲକ୍ଷ୍ୟ କରିପାରିବା, କୌଣସି ଏକ ବିଶିଷ୍ଟଶକ୍ତି ଆମର ଅଲକ୍ଷ୍ୟରେ କାର୍ଯ୍ୟ କରିଚାଲିଛି । ଏହି ବିଶିଷ୍ଟ ଶକ୍ତିର ସହଯୋଗୀତାରେ ପ୍ରାକୃତିକ ଚିକିତ୍ସା କରାଯାଇଥାଏ । ତେଣୁ ଏ ପ୍ରକାର ଚିକିତ୍ସାର ବୈଜ୍ଞାନିକ ଭିତ୍ତି ରହିଛି । ପୁରୁଣା ଚିକିତ୍ସା ପଦ୍ଧତିର ସରଳୀକରଣ ଓ ନବୀକରଣ ବୈଜ୍ଞାନିକ ଭିତ୍ତିରେ କରାଯାଉଛି । ତେଣୁ ଏହାର ଲୋକପ୍ରିୟତା ଦିନକୁ ଦିନ ବୃଦ୍ଧି ପାଇବ ବୋଲି ଆଶା କରାଯାଏ । ମନୁଷ୍ୟର ଅନ୍ତର୍ନିହିତ ଶକ୍ତି ପ୍ରକୃତି ଦତ୍ତ । ତେଣୁ ପ୍ରତ୍ୟେକ ମନୁଷ୍ୟର ରୋଗ ପ୍ରତିରୋଧକ ଓ ରୋଗ ନିରାକରଣ ଶକ୍ତି ପ୍ରକୃତିଦତ୍ତ । ପ୍ରକୃତିର ନୀତି ନିୟମ ବିରୁଦ୍ଧରେ ଜୀବନଯାପନ କରିବା ଦ୍ୱାରା ଏହି ଅନ୍ତର୍ନିହିତ ଶକ୍ତିର କ୍ଷୟଘଟି ମନୁଷ୍ୟକୁ ରୋଗାକ୍ରାନ୍ତ କରିଦିଏ । Prevention is better then cure. The art of healing body & mind with the help of mental & spiritual laws is the key to nature cure. Study of natural immunology & measures for its development will go a long way in redrusing the human sesffering. ଅର୍ଥାତ୍ ରୋଗସୃଷ୍ଟି ହେଲାପରେ ଚିକିତ୍ସା ପରିବର୍ତ୍ତେ ରୋଗ ସୃଷ୍ଟି ନହେବାପାଇଁ ସମସ୍ତ ପଦକ୍ଷେପ ଗ୍ରହଣ ବରଂ ଶ୍ରେୟସ୍କର । ଆଧ୍ୟାତ୍ମିକ ଉପାୟ ଅବଲମ୍ବନ କରି ପ୍ରାକୃତିକ ନିୟମର ସହାୟତାରେ ଶରୀର ଓ ମନକୁ ସୁସ୍ଥାବସ୍ଥାକୁ ଫେରାଇଆଣିବା ପ୍ରାକୃତିକ ଚିକିତ୍ସାର ମୂଳମନ୍ତ୍ର । ରୋଗ ପ୍ରତିରୋଧକ ଶକ୍ତି ବିଷୟରେ ଚିକିତ୍ସିକ ଗବେଷଣା ଓ ଏହାର ଉତ୍ତରୋତ୍ତର ବୃଦ୍ଧି ଦିଗରେ ପଦକ୍ଷେପ ଆଜିର ପତନୋନ୍ମୁଖ ସମାଜକୁ ନିଶ୍ଚିତ ଭାବେ ଉଦ୍ଧାର କରି ଶାନ୍ତିର ଆଲୋକ ଦେଇପାରିବ । କୌଣସି ଅପ୍ରାକୃତିକ ଔଷଧର ସହାୟତା ନ ନେଇ ପ୍ରାକୃତିକ ଚିକିତ୍ସା ବିଭିନ୍ନ ଉପାୟରେ ପ୍ରାକୃତିକ ନିୟମରେ ହିଁ କରାଯାଇଥାଏ । ବିଭିନ୍ନ ପର୍ଯ୍ୟାୟରେ ମନୁଷ୍ୟ ଶରୀରରେ ରୋଗ ବିଭିନ୍ନ ସ୍ତରରେ ଅବସ୍ଥାନ କରିଥାଏ । ରୋଗ ଯଦି ମାନବ ଶରୀରରୁ ଜାତ ହୋଇଥାଏ, ତେବେ ଏହାର ଅବସ୍ଥିତି ମୂଳତଃ ସୂକ୍ଷ୍ମ ଶରୀରରେ ଅବସ୍ଥାନ କରି ପ୍ରାଣ ଶକ୍ତିକୁ ଦୁର୍ବଳ କରିଥାଏ । ଏହି ପ୍ରକାର ଅସୁସ୍ଥତାରୁ ଦୂରେଇ ରହିବାକୁ ହେଲେ ମାନସିକ ଚିକିତ୍ସା ଏକାନ୍ତ ଅପରିହାର୍ଯ୍ୟ । ଏ ବିଷୟ ବ୍ୟାପକ । ତେଣୁ ଏ କ୍ଷୁଦ୍ର ଲେଖାରେ ପର୍ଯ୍ୟାଲୋଚନା ସମ୍ଭବ ନୁହେଁ । ରୋଗ ଯଦି କୌଣସି ଅଖାଦ୍ୟ, ବିଶାକ୍ତ ଖାଦ୍ୟ ବା ପାନୀୟ କିମ୍ବା ଅସୁସ୍ଥ ପରିବେଶରୁ ସୃଷ୍ଟି ହୋଇଥାଏ, ତେବେ ଏହାର ଅବସ୍ଥିତି ମୂଳତଃ ଭୌତିକ ଶରୀରରେ ବିଦ୍ୟମାନଥାଏ । ତେଣୁ ଏ ପ୍ରକାର ସମସ୍ତ ରୋଗରେ ଶରୀରର ମୂଳ ଉପାଦାନମାନଙ୍କର ବସ୍ତୁତ ରାସାୟନିକ ପରିବର୍ତ୍ତନ ଆସିଥାଏ । ତେଣୁ, ଏ ସମସ୍ତ ରୋଗର ଚିକିତ୍ସା ଶାରିରୀକ ଭିତ୍ତିରେ ହେବା ବାଞ୍ଛନୀୟ । (Physio Therapeutic treatment of diseases)। ପୁନଶ୍ଚ ଶରୀରର ମୂଳ ଉପାଦାନମାନଙ୍କର ବସ୍ତୁତ୍ୱର ଯେତେବେଳେ ପରିବର୍ତ୍ତନ ଆସେ ଏହାର କୁପ୍ରଭାବ ସୂକ୍ଷ୍ମଶରୀର ଉପରେ ପଡ଼ିଥାଏ ଓ ସୂକ୍ଷ୍ମ ଶରୀର ତତ୍‌କ୍ଷଣାତ ମାନସ ଶରୀରକୁ ପ୍ରଭାବିତ କରିଥାଏ । ଏ ପ୍ରକାର ପ୍ରକ୍ରିୟା ଭୌତିକ ଶରୀରରୁ ମାନସିକ ଶରୀର ଓ ମାନସିକ ଶରୀରରୁ ଭୌତିକ ଶରୀର ଏହିପରି ବୃତ୍ତାକାର ଗତିରେ ପର୍ଯ୍ୟାୟ କ୍ରମେ ଚାଲେ । ଏପ୍ରକାର ଚିକିତ୍ସା ପାଇଁ ରାସାୟନିକ ପଦାର୍ଥ, ଉତ୍ତମ ପୁଷ୍ଟିକର ଖାଦ୍ୟ, ଧାତବଲବଣ, ବୃକ୍ଷଲତା ଗୁଳ୍ମ ସମୂହରୁ ଉତ୍ପାଦିତ ଔଷଧ ଇତ୍ୟାଦି ଦରକାର ହୋଇଥାଏ । ପ୍ରାକୃତିକ ନିୟମାନୁସାରେ ବିଭିନ୍ନ ଚିକିତ୍ସା ପ୍ରଣାଳୀ ରହିଛି । ଯଥା :—ଚୁମ୍ବକ ଚିକିତ୍ସା, ଆଲୋକ ଚିକିତ୍ସା, ଆକ୍ୟୁପଙ୍କଚର ଚିକିତ୍ସା, ଉପବାସ ଚିକିତ୍ସା, ବ୍ୟାୟାମଦ୍ୱାରା ରୋଗ ଉପଶମ, ମାଲିସ୍‌ଦ୍ୱାରା ରୋଗ ଉପଶମ, ଯୋଗାସନ ଦ୍ୱାରା ରୋଗ ଉପଶମ, ଆଧ୍ୟାତ୍ମିକମାର୍ଗ ଅବଲମ୍ବନରେ ରୋଗ ଉପଶମ ଇତ୍ୟାଦି ଇତ୍ୟାଦି । ଜଳରେ ଆଶ୍ଚର୍ଯ୍ୟ ଜନକ ରୋଗ ନିରାକରଣ ଶକ୍ତି ରହିଛି । ବିଭିନ୍ନପ୍ରକାର

ଜଳରେ ନାନା ପ୍ରକାର ରୋଗ ମଧ୍ୟ ଉପଶମ ହୋଇଥାଏ । ସେହିପରି ବିଭିନ୍ନ ପ୍ରକାର ମୃତ୍ତିକାରେ ମଧ୍ୟ ରୋଗ ନିରାକରଣ ଶକ୍ତି ରହିଛି । ମୋଟ ଉପରେ ପ୍ରତ୍ୟେକ ଚିକିତ୍ସା ପ୍ରଣାଳୀରେ ଭିନ୍ନଭିନ୍ନ ସୁବିଧା ରହିଛି ।

**ଚିକିତ୍ସକଙ୍କର ଦାୟିତ୍ୱ ଓ କର୍ତ୍ତବ୍ୟ:-**

ମନ ଯେପରି ଦୁର୍ବୋଧ୍ୟ, ମନୁଷ୍ୟ ଶରୀର ମଧ୍ୟ ସେହିପରି ଜଟିଳ ଓ ଦୁର୍ବୋଧ । ମନ ଓ ଶରୀରର ପରିଚାଳକ ଆତ୍ମା, ସେ ମଧ୍ୟ ସର୍ବୋପରି ଦୁର୍ବୋଧ । ତେଣୁ ମନୁଷ୍ୟ ବିଷୟରେ ଗବେଷଣା କରି କେହିହେଲେ ନିର୍ଦ୍ଦିଷ୍ଟ ସିଦ୍ଧାନ୍ତରେ ଉପନୀତ ହୋଇପାରି ନାହାନ୍ତି । ଏହି କାରଣରୁ ଚିକିତ୍ସାଶାସ୍ତ୍ର ଅତ୍ୟନ୍ତ ବ୍ୟାପକ ଆକାର ଧାରଣ କଲାଣି । ମନୁଷ୍ୟ ଶରୀରର ଭିନ୍ନଭିନ୍ନ ଅଙ୍ଗପ୍ରତ୍ୟଙ୍ଗକୁ ନେଇ ଡାକ୍ତର ସୃଷ୍ଟି ହେଲେଣି । ତଥାପି ରୋଗ ମନୁଷ୍ୟକୁ ଛାଡ଼ଉନି ଲାଗି ରହିଛି । ଏହି ପରିପ୍ରେକ୍ଷୀରେ ଚିକିତ୍ସକଙ୍କର ଦାୟିତ୍ୱ ବ୍ୟାପକ ଓ କର୍ତ୍ତବ୍ୟ ମଧ୍ୟ ଅନେକ । ଚିକିତ୍ସକମାନଙ୍କର ନିମ୍ନଲିଖିତ ନିର୍ଦ୍ଦିଷ୍ଟ ଦାୟିତ୍ୱ ଓ କର୍ତ୍ତବ୍ୟ ରହିଛି ।

ରୋଗ ଭିତ୍ତିରେ ଔଷଧ ନିର୍ବାଚନ କରିବା ଦ୍ୱାରା ରୋଗୀ ବିଷୟରେ ଚିକିତ୍ସକମାନେ ଭୁଲିଯାନ୍ତି । ତେଣୁ ରୋଗୀ ବିଷୟରେ ସମସ୍ତ ପର୍ଯ୍ୟାଲୋଚନା କରି ଔଷଧ ନିର୍ଣ୍ଣୟ ଆବଶ୍ୟକ ।

ରୋଗ ସୃଷ୍ଟିର ମୂଳ କାରଣ ସମସ୍ତ ପ୍ରକାର ଚେଷ୍ଟା କରି ଜାଣିବା ଉଚିତ୍ । କାରଣ ଏହା ଜାଣିପାରିଲେ ଚିକିତ୍ସା ପଦ୍ଧତିକୁ ସରଳୀକରଣ କରାଯାଇପାରେ ।

ପ୍ରତ୍ୟେକ ରୋଗୀର ଆର୍ଥିକ ସ୍ୱଚ୍ଛଳତା ସମାନ ନ ଥାଏ । ହୁଏତ କୌଣସି ରୋଗୀ ରୋଗର ପ୍ରକୋପ ସମ୍ଭାଳି ନ ପାରି ବିଶେଷଜ୍ଞ ଡାକ୍ତରଙ୍କର ଦ୍ୱାରସ୍ଥ ହୋଇଛି । ତେଣୁ ଏହିପ୍ରକାର ରୋଗୀଙ୍କଠାରୁ ଅପେକ୍ଷାକୃତ କମ୍ ଅର୍ଥ ଗ୍ରହଣ କରିବା ଉଚିତ ହେବ ।

ଅନେକ ରୋଗୀ ରୋଗରେ ପୀଡ଼ିତ ହୋଇ ଭାଙ୍ଗି ପଡ଼ିଥାନ୍ତି । ସେମାନଙ୍କର ମନୋବଳ ନ ଥାଏ । ତେଣୁ ଚିକିତ୍ସକମାନେ ରୋଗୀକୁ ଆଶ୍ୱାସନା ଓ ସାନ୍ତ୍ୱନା ଦେଇ ତା'ର ଆତ୍ମବିଶ୍ୱାସକୁ ଫେରାଇ ଆଣିବାକୁ ପଡ଼ିବ । ଆତ୍ମବିଶ୍ୱାସହିଁ ରୋଗୀକୁ ରୋଗମୁକ୍ତ କରିବା ପାଇଁ ଯଥେଷ୍ଟ ସହାୟକ ହୋଇଥାଏ ।

କୌଣସି ରୋଗୀ ଅସମୟରେ ଚିକିତ୍ସକଙ୍କ ଦ୍ୱାରସ୍ଥ ହେଲେ ତାକୁ ରିକ୍ତ ହସ୍ତରେ ଫେରାଇଦେବା ଉଚିତ ନୁହେଁ । ତେଣୁ ଚିକିତ୍ସକ ତାଙ୍କର ଧୈର୍ଯ୍ୟଶକ୍ତିକୁ ବୃଦ୍ଧି କରିବା ଉଚିତ ହେବ । ଏଥିପାଇଁ ଈଶ୍ୱରଙ୍କର ଶରଣାପନ୍ନ ହେବା ବିଧେୟ । ଈଶ୍ବର ପ୍ରେମ ଓ ବିଶ୍ୱାସ ହିଁ ମନୁଷ୍ୟକୁ ଧୈର୍ଯ୍ୟଶକ୍ତି ଯୋଗାଇ ଥାଏ ।

ଦୟା ମନୁଷ୍ୟର ସର୍ବଶ୍ରେଷ୍ଠ ଐଶ୍ୱରିକ ... ଚିକିତ୍ସକମାନେ ନିଷ୍ଠୁରହେଲେ ରୋଗୀର ଅବସ୍ଥା ... ହୋଇଥାଏ । ତେଣୁ ଚିକିତ୍ସକମାନେ ରୋଗୀ ପ୍ରତି... ଭାବେ ଦୟାଳୁ ହେବା ଉଚିତ ।

ପ୍ରତ୍ୟେକ ରୋଗୀକୁ ଚିକିତ୍ସକମାନେ ଉତ୍ତମ... ନେବା ଉଚିତ୍ । ଧରନ୍ତୁ, କୌଣସି ରୋଗ ଜଟିଳ... ଧାରଣ କରିଛି । ଏ କ୍ଷେତ୍ରରେ ଚିକିତ୍ସକମାନେ ... ଡାକ୍ତରଙ୍କର ପରାମର୍ଶ ନେବା ଉଚିତ୍ କିମ୍ବା ... ମଧ୍ୟ ସେହି ଅନୁସାରେ ପରାମର୍ଶଦେବା ଉଚିତ୍ । ... ଆର୍ଥିକ ସ୍ୱଚ୍ଛଳତା ଦେଖି ଅଳ୍ପ ଖର୍ଚ୍ଚରେ ଚିକିତ୍ସା ... ବ୍ୟବସ୍ଥା କରିବା ଉଚିତ ।

ରୋଗ ନିରାକରଣ ସମୟରେ ରୋଗୀର... ଖାଦ୍ୟପେୟ ନିର୍ଦ୍ଦିଷ୍ଟ ନିତି ନିୟମରେ ହେବା ଉଚିତ୍... ଚିକିତ୍ସକମାନେ ରୋଗୀକୁ ଖାଦ୍ୟପେୟ ବିଷୟରେ... ଉପଦେଶ ଦେବା ଉଚିତ୍ ।

ଅନେକ ରୋଗୀ ଅସୁସ୍ଥ ପରିବେଶ ମଧ୍ୟରେ... ତେଣୁ ସେହି ପ୍ରକାର ଅସୁସ୍ଥ ପରିବେଶ ମଧ୍ୟରେ... ନିରାକରଣ ସମ୍ଭବ ହୋଇ ନ ପାରେ । ତେଣୁ ... ଚିକିତ୍ସକମାନେ ଉଚିତ୍ ପରାମର୍ଶ ଦେବା ଉଚିତ୍ ।

କୌଣସି ନିର୍ବାଚିତ ଔଷଧ ଯଦି ୪... ମଧ୍ୟରେ କାର୍ଯ୍ୟ ନ କରେ କିମ୍ବା ରୋଗୀ ଯଦି... ଅଧିକ ଦୁର୍ବଳ ଅନୁଭବ କରେ, ତେବେ ସେ ପ୍ରକାର... ରୋଗୀପ୍ରତି ଅନୁକୂଳ ନୁହେଁ । ପ୍ରତିକୂଳ ଔଷଧ ... ଜୀବନୀଶକ୍ତିକୁ ଦୁର୍ବଳରୁ ଦୁର୍ବଳତର କରିଥାଏ... ସେ ଔଷଧ ପ୍ରୟୋଗ ତୃତୀୟ ଦିନଠାରୁ ବନ୍ଦକ... ଔଷଧ ସେବନପାଇଁ ଉପଦେଶ ଦେବା ଦରକାର ।

ସର୍ବୋପରି ରୋଗୀ ବିଷୟ ଚିକିତ୍ସକମାନେ... ଉପଯୁକ୍ତ ଭାବରେ ଖବର ନେବା ଉଚିତ୍ । ଏହା କରିବା... ନିର୍ବାଚିତ ଔଷଧ ଶରୀର ଉପରେ କିପରି ପ୍ରଭାବ ... ତାହା ଜଣାପଡ଼ିଥାଏ ।

ଈଶ୍ୱରଙ୍କର ସଦିଚ୍ଛା ବିନା ଚିକିତ୍ସକ ଠିକ୍... ନିର୍ବାଚନ କରିପାରେ ନାହିଁ । ତେଣୁ ଚିକିତ୍ସକମାନେ ... ସ୍ମରଣକରି ଔଷଧ ନିର୍ବାଚନ କରିବା ଉଚିତ୍ । ... ରୋଗୀକୁ ମଧ୍ୟ ଚିକିତ୍ସକମାନେ ଔଷଧସେବନ ... ଈଶ୍ୱରଙ୍କୁ ସ୍ମରଣ କରିବାପାଇଁ ଉପଦେଶ ଦେବା ଉଚିତ୍ ।

ନିର୍ବାହୀପତ୍ରୀ
ବିଦ୍ୟୁତ୍, ଭୁବନେଶ୍ୱର

ସେହି ସଂସ୍କୃତ ଉଦାର, ଯେ ତା'ର ଦେଶକୁ ବିଭିନ୍ନ ଧର୍ମ ସଂପ୍ରଦାୟର ଏକ ଉଦାର ସମନ୍ୱୟ ଭୂମି ବୋଲି ଗର୍ବ କରେ । ଧର୍ମ ସମ୍ପର୍କରେ ଯାହା ସତ୍ୟ, ଭାଷା ଓ ବିଭିନ୍ନ ଭାଷାଭାଷୀ ଗୋଷ୍ଠୀମାନଙ୍କ କ୍ଷେତ୍ରରେ ତାହା ମଧ୍ୟ ସତ୍ୟ ।

— ଜାନକୀ ବଲ୍ଲଭ ପଟ୍ଟନାୟକ

# ଯୌତୁକ ମୂଳୋତ୍ପାଟନ : ଏକ ସାମାଜିକ ଆବଶ୍ୟକତା

କୁମାରୀ ଶୁଭଲକ୍ଷ୍ମୀ ମହାନ୍ତି

ଆମ ସମାଜରେ ବିବାହ ଏକ ପବିତ୍ର ବନ୍ଧନ—ମହାନ୍ ପରମ୍ପରା—ମଧୁମୟ ଉତ୍ସବ ଏବଂ ସର୍ବୋପରି ମହତ୍ତ୍ୱପୂର୍ଣ୍ଣ ସଂସ୍କାର । ପରିବାରକୁ ବୈକୁଣ୍ଠପୁରୀ କରିବାର ସୋପାନ । ଜନଜୀବନ ପ୍ରସାରରେ ଏହା ଭୂମିକା ଗ୍ରହଣ କରେ । ଧନଜନ ଗୋପଲକ୍ଷ୍ମୀର ସାଧନ ହେଉଛି ବିବାହ ।

କିନ୍ତୁ ଚଳିତ ଶତକରେ 'ବିବାହ ଉତ୍ସବ' ଯୌତୁକର କଳଙ୍କିତ ଗଣ୍ଡି ମଧ୍ୟରେ ପ୍ରବହମାନ । ଅବଶ୍ୟ ଭାରତୀୟ ଜନଜୀବନ ପାଇଁ 'ଯୌତୁକ' କିଛି ନୂଆ ନୁହେଁ । ଏହା ବହୁ ପୁରାତନ । ଯୁଗ ଯୁଗ ଧରି ଏହି ଲୌକିକ ପ୍ରଥା ଆମ ସମାଜରେ ପ୍ରଚଳିତ । ପୂର୍ବ କାଳରେ ଝିଅଟିକୁ ବିବାହ ଦେବା ସମୟରେ ପିତା ମାତା ନିଜର ସାମର୍ଥ୍ୟ ଅନୁସାରେ ଝିଅ ଜ୍ୱାଇଁଙ୍କୁ ଉପହାର ସ୍ୱରୂପ ନିତ୍ୟ ବ୍ୟବହାର୍ଯ୍ୟ ଘରକରଣା ଜିନିଷ, ସୁନା, ରୂପା, ଗହଣା, ପାଟପଟନୀ ବସ୍ତ୍ରାଦି ପ୍ରଦାନ କରୁଥିଲେ ଏବଂ ବରପକ୍ଷ ସଂକୋଚର ସହିତ ଏହାକୁ ଗ୍ରହଣ କରୁଥିଲେ । ଏଥିରେ ବାଧ୍ୟ ବାଧକତା ନଥିଲା । ବରଂ ଥିଲା ଆନ୍ତରିକତା । ଝିଅ ଜ୍ୱାଇଁଙ୍କର ନୂଆ ଜୀବନ ପାଇଁ ଏଗୁଡ଼ିକ ସହାୟକ ହେଉଥିଲା । ଆଜି ସେଇ 'ଯୌତୁକ'ର ଅର୍ଥ ଉପହାର ବଦଳରେ 'ଦାବୀ'ରେ ପରିଣତ ହୋଇଗଲାଣି । ହିନ୍ଦୁ ପରମ୍ପରାନୁସାରେ ହାତଗଣ୍ଠି ପଡ଼ିଲାବେଳେ ପୁରୋହିତ କନ୍ୟା ପିତାଙ୍କୁ ପ୍ରଶ୍ନ କରିଥାଆନ୍ତି, କନ୍ୟା ଦାନ ସହ କି କି ଯୌତୁକ ଦକ୍ଷିଣା ସ୍ୱରୂପ ଦେବେ । ସେତେବେଳେ ସତ୍ୟବଦ୍ଧ ହୋଇ ନିଜେ ଉଚ୍ଚାରଣ କରି ତାଙ୍କୁ ଶଙ୍ଖରେ ପାଣି ଟେକିବାକୁ କୁହାଯାଏ—ସ୍ୱର୍ଣ୍ଣଦାନ, ଗୋଦାନ, ଭୂମିଦାନ ଇତ୍ୟାଦି ଇତ୍ୟାଦି । ଏଥିରେ କନ୍ୟାପିତା ନିଜର ଶକ୍ତି ମୁତାବକ ଦାନ କରିଥାନ୍ତି । ଶକ୍ତି ନଥିଲେ ତୁଳସୀପତ୍ରଟିଏ ଦକ୍ଷିଣା ଦେଲି ବୋଲି କହି ଶଙ୍ଖରେ ପାଣି ଟେକି ଦେଲେ ମଧ୍ୟ ବହୁ ଆଦରରେ ବୋହୂକୁ ଗ୍ରହଣ କରୁଥିଲେ । ମାତ୍ର ଆଜି କାଲି ଯୌତୁକ ଦାବୀରେ ସାମାନ୍ୟ ବ୍ୟତିକ୍ରମ ଘଟିଲେ କନ୍ୟା ଶିକ୍ଷିତା ହେଉ ବା ଅଶିକ୍ଷିତା ହେଉ ଅତି ଦୟନୀୟ ଭାବରେ ଶ୍ୱଶୁର ଘର ଲୋକେ ତାକୁ ହତ୍ୟା କରୁଥିବାର ଦେଖାଯାଉଛି । ପ୍ରତିଦିନର ଖବର କାଗଜରେ ଯୌତୁକ ଜନିତ ହତ୍ୟା ସମ୍ବାଦ ବଢ଼ି ବଢ଼ି ଚାଲିଛି । ଏଇ ଯୌତୁକ ପାଇଁ ଆଜି ସରକାରଙ୍କଠାରୁ ସାଧାରଣ ଜନତା ପର୍ଯ୍ୟନ୍ତ ଧନୀଦରିଦ୍ର ସମସ୍ତେ ଚିନ୍ତିତ । ଏବଂ ସବୁ ସ୍ଥାନରେ ଏହା ଚର୍ଚ୍ଚାର ବିଷୟ । ଏହି ମୃତ୍ୟୁ ପୁଣି ଅତି ଅସ୍ୱାଭାବିକ, ବିଭତ୍ସ ତଥା ନାରକୀୟ ଭାବରେ ଘଟୁଛି । ବିଷଦେଇ, ଟଣ୍ଟିଚିପି, କିରୋସିନି ଢାଳି, ନିଆଁ ଲଗାଇ ଏହି ନରରୂପି ରାକ୍ଷସମାନେ ସାମାନ୍ୟ ଅର୍ଥ ଲୋଭରେ ନିର୍ଦ୍ଦୋଷ, ନିରୀହ, ନିଷ୍କପଟ ପ୍ରାଣୀଟିକୁ ଅନ୍ଧ ଭାବରେ ହତ୍ୟାକରି ନିଜକୁ ଶାନ୍ତ କରୁଛନ୍ତି । ନାରୀ ନିର୍ଯ୍ୟାତନା, ବଧୂ ହତ୍ୟା, ଛାଡ଼ପତ୍ରର ସଂଖ୍ୟା ବଢ଼ି ବଢ଼ି ଚାଲିଛି । ଅନ୍ୟାନ୍ୟ ସମସ୍ତ କ୍ଷେତ୍ରରେ ଆମ ଦେଶ ପ୍ରଗତି ପଥରେ ଅଗ୍ରସର ହେଉଥିଲାବେଳେ ଯୌତୁକଜନିତ ମୃତ୍ୟୁ ସଂଖ୍ୟା ବଢ଼ି ବଢ଼ି ଚାଲିଛି । ଏହି ଯୌତୁକ ବ୍ୟାଧି କ୍ରମଶଃ ସଂକ୍ରମିତ ହେବାରେ ଲାଗିଛି ଓ କର୍କଟ ରୋଗ ପରି ଦୁର୍ବିସହ ଓ ମାରାତ୍ମକ ହୋଇଅଛି । ଆଜି ପ୍ରତ୍ୟେକ ପରିବାରରେ ଏହା ଆତଙ୍କ ଖେଳାଇ ଦେଇଛି ।

କୋମଳମତୀ ଝିଅଟିଏ ବୈବାହିକ ଜୀବନର ସ୍ୱପ୍ନ ଦେଖିବା ପୂର୍ବରୁ ପ୍ରଥମେ ଚିନ୍ତା କରୁଛି ଅନ୍ୟ ଝିଅମାନଙ୍କ ପରି ସେ ଏଇ ଯୌତୁକର ଶିକାର ହେବନିତ ? ବାପା ତା'ର ବର ପକ୍ଷର ସବୁ ସର୍ତ୍ତ ପୂରଣ କରି ପାରିବେତ ? ବେଦୀ ଉପରେ ସେମାନେ ଆଉ କିଛି ଦାବୀ କରିବସିବେନିତ ? ଏହି ପରି ଭାରାକ୍ରାନ୍ତ ମନନେଇ ଜୀବନକୁ ପାଣି ଛଡ଼ାଇ ଆଜିର ଝିଅମାନେ ବିବାହ ବେଦୀରେ ପାଦ ଦେଉଛନ୍ତି ।

ଭାରତୀୟ ବଧୂ ସାଧାରଣ ନାରୀ ନୁହେଁ । ବିଭିନ୍ନ ଶାସ୍ତ୍ରରେ ଏହି ନାରୀକୁ ସର୍ବୋଚ୍ଚ ସମ୍ମାନ ପ୍ରଦର୍ଶନ କରାଯାଇଛି ।

"ଯତ୍ର ନାର୍ଯ୍ୟସ୍ତୁ ପୂଜ୍ୟନ୍ତେ ରମନ୍ତେ ତତ୍ର ଦେବତାଃ" (ମନୁ ୩/୬୨) ଅର୍ଥାତ୍ ଯେଉଁଠି ନାରୀକୁ ସମ୍ମାନ ଦିଆଯାଏ ସେଠାରେ ସାକ୍ଷାତ୍ ଲକ୍ଷ୍ମୀ ନାରାୟଣ ପ୍ରଭୁଙ୍କର ନିବାସ ହୁଏ । ଆଦିକବି ବାଲ୍ମୀକୀ ତାଙ୍କ ରାମାୟଣରେ ଶ୍ରୀ ରାମଚନ୍ଦ୍ରଙ୍କ ମୁଖରେ ଆଦର୍ଶ ନାରୀ ସୀତାଙ୍କ ସମ୍ବନ୍ଧରେ କହିଛନ୍ତି—

"କାର୍ଯ୍ୟେଷୁ ମନ୍ତ୍ରୀ, କରଣେଷୁ ଦାସୀ
ଧର୍ମେଷୁ ପତ୍ନୀ, କ୍ଷମୟା ଧରିତ୍ରୀ
ସ୍ନେହେଷୁ ମାତା, ଶୟନେଷୁ ରମ୍ଭା,
ଷଡ଼ଗୁଣ ଯୁକ୍ତା ଲକ୍ଷ୍ମଣ ! ସାମାୟା ଭାର୍ଯ୍ୟା !"

ଅର୍ଥାତ୍ ହେ ଲକ୍ଷ୍ମଣ ମୋର ପ୍ରିୟ ସୀତା ସେମାନଙ୍କ କର୍ତ୍ତବ୍ୟ ପାଳନରେ ମୋର ମନ୍ତ୍ରୀ । ବ୍ୟକ୍ତିଗତ ସେବାରେ ମୋର ଦାସୀ । ଧର୍ମ କାର୍ଯ୍ୟରେ ମୋର ସହଧର୍ମିଣୀ । କ୍ଷମାରେ ପୃଥିବୀ । ସ୍ନେହରେ ମାତା, ଶଯ୍ୟାରେ

ମସିହାରେ ଯୌତୁକ ନିରୋଧ ଆଇନ ପ୍ରଣୟନ କରାଗଲା । କିନ୍ତୁ ଏହା ଫଳପ୍ରଦ ହୋଇ ନଥିଲା । ତେଣୁ ଉକ୍ତ ଆଇନର କାର୍ଯ୍ୟକାରିତା ସଂପର୍କରେ ପରୀକ୍ଷା କରିବା ନିମନ୍ତେ ଲୋକସଭାର ଏକ "ଯୁଗ୍ମ କମିଟି" ଗଠନ କରାଗଲା । ଆର୍ନ୍ତଜାତିକ ମହିଳା ସମ୍ବତ୍ସର ୧୯୭୫ ରେ ମଧ୍ୟ ଏ ଦିଗରେ ଉନ୍ନତି ସାଧିତ ହୋଇ ନଥିଲା । ତେବେ ୧୯୬୧ ରେ ହୋଇଥିବା ଆଇନକୁ ସୁଦୃଢ଼ କରିବା ଲାଗି ୧୯୮୩ ମସିହାରେ କାର୍ଯ୍ୟବିଧି ଆଇନର ଦ୍ୱିତୀୟ ସଂଶୋଧନ ଅଣାଗଲା । ଭାରତୀୟ ଦଣ୍ଡବିଧି ଆଇନ, କାର୍ଯ୍ୟବିଧି ଆଇନ ଓ ସାକ୍ଷ୍ୟ ଆଇନର ସଂଶୋଧନ କରାଯାଇଥିଲା ଏବଂ ତା ସହିତ କେତେକ ନୂତନ ଦଫାର ସଂଯୋଗ କରାଯାଇଥିଲା । ୧୯୬୧ ମସିହାର ଯୌତୁକ ନିରୋଧ ଆଇନରଧାରା ୩ ଅନୁସାରେ ବିବାହର ସର୍ତ୍ତ ସ୍ୱରୂପ ବିବାହ ପୂର୍ବରୁ, ବିବାହ ପରେ ବା ବିବାହ ବେଳେ କୌଣସି ଯୌତୁକ ଦେବା ନେବା ବା ଏପରି ଦେବା ନେବାରେ ପ୍ରତ୍ୟକ୍ଷ ସାହାଯ୍ୟ କରିବା ଏକ ଦଣ୍ଡନୀୟ ଅପରାଧ । ସେହି ଆଇନର ଧାରା ୪ ଅନୁସାରେ ଯୌତୁକ ଦାବୀ କରିବା ମଧ୍ୟ ଦଣ୍ଡନୀୟ ଅପରାଧ ।

୧୯୮୩ ମସିହା ସଂଶୋଧିତ ଭାରତୀୟ ପିଙ୍ଗଳ ଆଇନ ଅନୁଯାୟୀ ଯୌତୁକ ଆଦାୟ କରିବା ନିମିତ୍ତ କୌଣସି ବିବାହିତା ମହିଳାଙ୍କୁ ତାଙ୍କ ସ୍ୱାମୀ କିମ୍ବା ସ୍ୱାମୀଙ୍କର କୌଣସି ସମ୍ପର୍କୀୟ ବ୍ୟକ୍ତି ନିର୍ଯ୍ୟାତନା ଦେଲେ ତାହା ଏକ ଧର୍ତ୍ତବ୍ୟ ଅପରାଧ ଅଟେ । ଏଥିପାଇଁ ସର୍ବୋଚ୍ଚ କାରାଦଣ୍ଡ ୩ ବର୍ଷ । ସ୍ୱାମୀ କିମ୍ବା ସ୍ୱାମୀଙ୍କର ସମ୍ପର୍କୀୟଙ୍କର ସ୍ୱେଚ୍ଛାକୃତ ଆଚରଣ ଦ୍ୱାରା ଯଦି ସ୍ତ୍ରୀର ଆତ୍ମହତ୍ୟାର ସମ୍ଭାବନା ଆସେ କିମ୍ବା ତାହାର ଜୀବନ ଓ ସ୍ୱାସ୍ଥ୍ୟ ପ୍ରତି ସାଂଘାତିକ ବିପଦ ବା ଗୁରୁତର ଆଘାତର ଆଶଙ୍କା ଜାତହୁଏ, ତାହାକୁ ଆଇନତଃ ନିର୍ଯ୍ୟାତନା କୁହାଯାଏ । ବେଆଇନ ଯୌତୁକ ହାସଲ କରିବା ଉଦ୍ଦେଶ୍ୟରେ ସ୍ୱାମୀ କିମ୍ବା ସ୍ୱାମୀଙ୍କର ସମ୍ପର୍କୀୟ ବ୍ୟକ୍ତି ହଇରାଣ କଲେ ; ତାହାକୁ ମଧ୍ୟ ଆଇନତଃ ନିର୍ଯ୍ୟାତନା ବୋଲାଯାଇଥାଏ ।

ସେହିପରି ଫୌଜଦାରୀ ଦଣ୍ଡବିଧି ଆଇନର ସଂଶୋଧିତ ପରବର୍ତ୍ତୀ ଧାରା ୧୭୪ ଓ ୧୭୬ ଅନୁସାରେ ବିବାହର ୭ ବର୍ଷ ଭିତରେ ସନ୍ଦେହଜନକ ପରିସ୍ଥିତିରେ ମୃତ୍ୟୁବରଣ କରିଥିବା କିମ୍ବା ଆତ୍ମହତ୍ୟା କରିଥିବା ସମସ୍ତ ଘଟଣାରେ ନବବଧୂର ଶବ ବ୍ୟବଚ୍ଛେଦ କରାଯିବା ବାଧ୍ୟତାମୂଳକ ଏବଂ ଏପରି ପ୍ରତ୍ୟେକ ଘଟଣାରେ ଜଣେ ଶାସନ ବିଭାଗୀୟ ମାଜିଷ୍ଟ୍ରେଟ ଶବ ତନଖି କରି ବିବରଣୀ ପ୍ରସ୍ତୁତ କରିବାର ଆଇନଗତ ବ୍ୟବସ୍ଥା ରହିଛି । ସେହିପରି ଭାରତୀୟ ସାକ୍ଷ୍ୟ ଆଇନରେ ୧୧୩ ଦଫା ସହିତ 'କ' ଉପଧାରା ସଂଯୋଗ କରାଯାଇଛି ଯେ ବିବାହର ୭ ବର୍ଷ ମଧ୍ୟରେ ସ୍ୱାମୀ କିମ୍ବା ତା'ର ସଂପର୍କୀୟଙ୍କ ଅତ୍ୟାଚାର କିମ୍ବା ନିର୍ଯ୍ୟାତନା ଦ୍ୱାରା ମୃତସ୍ତ୍ରୀର ଅପମୃତ୍ୟୁ ଘଟିଛି ବୋଲି ବିଶ୍ୱାସ କରାଇବା ପାଇଁ ଏ ଆଇନ ନ୍ୟାୟଧୀଶଙ୍କୁ ସାହାଯ୍ୟ କରେ । ସେଥିପାଇଁ ମୃତସ୍ତ୍ରୀର ବିବାହିତା ବୋଲି ପ୍ରମାଣ କରାଇବା ସହିତ ନିର୍ଯ୍ୟାତନା ଓ ଅତ୍ୟାଚାର ସଂପର୍କରେ ସେ ତା'ର ସମ୍ପର୍କୀୟମାନଙ୍କ ପାଖରୁ ସମସ୍ତ ଚିଠିପତ୍ରକୁ ବରାମତ କରିବାକୁ ପଡ଼ିବ । ଏସବୁ ବ୍ୟତୀତ ଯୌତୁକଜନିତ ମୃତ୍ୟୁ ଘଟଣାର ଯଥାଯଥ ବିଚାର ପାଇଁ ପ୍ରକୃତ ଦୋଷୀକୁ ଉପଯୁକ୍ତ ଶାସ୍ତି ବିଧାନ ନିମନ୍ତେ ସରକାର କେତେକ ନୀତି ନିୟମ ପ୍ରଣୟନ କରିଛନ୍ତି ।

(୧) ବିବାହର ୧୦ ବର୍ଷ ସମୟ ମଧ୍ୟରେ ହୋଇଥିବା ଯୌତୁକ ଜନିତ ମୃତ୍ୟୁ ଘଟଣାର ତଦନ୍ତ କେବଳ ଜଣେ ଡି.ଏସ.ପି. କିମ୍ବା ତଦୂର୍ଦ୍ଧ୍ୱ ପାହ୍ୟାର କରିପାରିବେ ।

(୨) ସାଧାରଣ ମୋକଦ୍ଦମାରେ କରାଯାଉଥିବା ପରି, ମୃତସ୍ତ୍ରୀର ଜଣେ ଡାକ୍ତରଙ୍କ ଦ୍ୱାରା ଶବ ବ୍ୟବଚ୍ଛେଦ କରାଯାଉଥିଲେ ମଧ୍ୟ ଯୌତୁକଜନିତ ହତ୍ୟା ବା ଆତ୍ମହତ୍ୟା ମୋକଦ୍ଦମାରେ ଦୁଇଜଣ ଡାକ୍ତରଙ୍କୁ ନିଯୁକ୍ତ କରାଯାଏ ।

(୩) ଶବ ବ୍ୟବଚ୍ଛେଦ ପରେ, ପୋଲିସଠାରୁ ତାଙ୍କର କୌଣସି ଆପତ୍ତି ନାହିଁ ପ୍ରମାଣ ପତ୍ର ପାଇବା ପରେ ଶବ ସତ୍କାର କରିବାର ନିୟମ ରହିଛି । କିନ୍ତୁ ବିନା ବ୍ୟବଚ୍ଛେଦରେ ପୋଲିସର ବିନା ଅନୁମତିରେ ଶବକୁ କେହି ସତ୍କାର କରିବାର ଅଧିକାର ନାହିଁ ।

(୪) ମୃତସ୍ତ୍ରୀର ପିତାମାତା, ନିକଟ ସଂପର୍କୀୟ ପରିବାରର ଲୋକେ ଶବକୁ ନ ଦେଖିବା ପର୍ଯ୍ୟନ୍ତ ପୋଲିସ "ଆପତ୍ତି ନାହିଁ" ପ୍ରମାଣ ଦେବା ନିୟମ ବହିର୍ଭୂତ ।

ତେବେ ସରକାରଙ୍କ ପ୍ରଣୀତ ଆଇନକୁ ଅଧିକ ବଳବତ୍ତର, କାର୍ଯ୍ୟକ୍ଷମ କରିବା ପାଇଁ ପ୍ରତ୍ୟେକ ଯୁବଗୋଷ୍ଠୀ ଯୌତୁକ ନିରୋଧ ଆନ୍ଦୋଳନରେ ମୁଖ୍ୟ ଭୂମିକା ଗ୍ରହଣ କରିବା ଆବଶ୍ୟକ । ସେଥିପାଇଁ ସେମାନଙ୍କ ଚରିତ୍ର ସଂସ୍କାର ଆବଶ୍ୟକ । ଯେ ପର୍ଯ୍ୟନ୍ତ ସମସ୍ତ ଯୁବକ ଯୁବତୀ ତଥା ଦେଶବାସୀଙ୍କର ଚାରିତ୍ରିକ ସଂସ୍କାର ନ ହୋଇଛି, ସେ ପର୍ଯ୍ୟନ୍ତ ସରକାର ଯେତେ କଠୋର ଆଇନ୍ ପ୍ରଣୟନ କଲେ ମଧ୍ୟ ତାହା ଫଳପ୍ରଦ ହୋଇ ପାରିବ ନାହିଁ । ଏଣୁ ଯୌତୁକ ବିରୋଧ ଆନ୍ଦୋଳନକୁ ଅଧିକ ସକ୍ରିୟ କରିବାକୁ ହେଲେ ଜନସମାଜର ଦୃଢ଼ ମନୋବଳ, ଏକନିଷ୍ଠତା ଓ ଉତ୍ସର୍ଗୀକୃତ ମନୋଭାବ ଦରକାର । ଯୌତୁକ ପାଇଁ ଜଣେ ଅର୍ଥଲୋଭୀ, ଅବିବେକୀ, ଅମଣିଷ ନିକଟରେ ନାରୀ ନିଜକୁ ବିକ୍ରି କରିବା ଅପେକ୍ଷା ଅନୂଢ଼ା ହୋଇ ରହିବା ଶ୍ରେୟସ୍କର । ଏଥିପାଇଁ ପ୍ରତ୍ୟେକ ଝିଅ ବିବାହ ପୂର୍ବରୁ ଥରେ ଭାବିବା ଉଚିତ, ଯୌତୁକ ଦାବୀ କରୁଥିବା ଉଚ୍ଚ ଅଫିସରଙ୍କୁ ବାହାହେବା ଅପେକ୍ଷା ଚିରଦିନ ଅବିବାହିତ ରହିବା କୌଣସି ଗୁଣରେ ମନ୍ଦ ନୁହେଁ ।

ଘର ନଂ–୪୨/୪
ୟୁନିଟ୍–୨, ଭୁବନେଶ୍ୱର



ଲୁଇସ୍ ବ୍ରାଇଲଙ୍କ ଜନ୍ମ ଉତ୍ସବ ପାଳନରେ ରାଜ୍ୟପାଳ ...

# ଓଡ଼ିଆଣୀର ଭାଷା

ଶ୍ରୀ ସୀମାଞ୍ଚଳ ପ୍ରଧାନ

ମନୁଷ୍ୟର ଭାବ ବିନିମୟ ପାଇଁ 'ଭାଷା' ହେଉଛି ଏକ ମାଧ୍ୟମ । ଭାଷା ଦ୍ୱାରା ବହୁ କାର୍ଯ୍ୟ ଅନାୟସରେ ସଂପାଦନ ହୋଇଥାଏ । ମନୁଷ୍ୟ ମୁଖ ନିଃସୃତ ଭାଷାର ପ୍ରଚଳନ ପୂର୍ବରୁ ସେ ବିଭିନ୍ନ 'ଠାର' ମାଧ୍ୟମରେ ତା'ର ଆବଶ୍ୟକୀୟ କାର୍ଯ୍ୟ ପୂରଣ କରୁଥିବା ଜଣାଯାଏ । ମନୁଷ୍ୟ ମୁଖରୁ ଏହି ଭାଷା କିପରି ସୃଷ୍ଟିହେଲା ତାହା ସଂପର୍କରେ ସଠିକ ମତ ପ୍ରଦାନ କରିବା ସଂଭବପର ନୁହେଁ । ତଥାପି ଅନୁମାନ କରାଯାଏ, ଶରୀରର ବିଭିନ୍ନ ଅଙ୍ଗସ୍ପନ୍ଦନ କରି ମନୁଷ୍ୟ ଯେତେବେଳେ ତାର ଅଭିବ୍ୟକ୍ତି ସଂପୂର୍ଣ୍ଣ ରୂପେ ପ୍ରକାଶ କରିବା ଅସଂଭବ ମନେ କରିଥିବ, ସେତେବେଳେ ହୁଏତ ସେ ମୁଖରୁ ଧ୍ୱନି ସୃଷ୍ଟି କରି ତା' ମାଧ୍ୟମରେ ଭାବ ବିନିମୟ କରିଥିବ । ଏହି ଭାଷାର ପ୍ରଚଳନ ପୁରୁଷ ଅପେକ୍ଷା ନାରୀମାନେ ବିଶେଷ ପରିମାଣରେ କରିଥାନ୍ତି । କାରଣ ସନ୍ତାନର ଲାଳନ ପାଳନଠାରୁ ଆରମ୍ଭ କରି ଗୃହାଦିର ସମସ୍ତ କାର୍ଯ୍ୟ ନାରୀମାନଙ୍କୁ ହିଁ କରିବାକୁ ପଡ଼ିଥାଏ । ଉପରୋକ୍ତ କାର୍ଯ୍ୟ ପାଇଁ ସେ ତା'ର ଅନ୍ତର୍ନିହିତ କଥାକୁ ବହୁ ପରିମାଣରେ ବ୍ୟକ୍ତ କରିବାକୁ ବାଧ୍ୟ ହୋଇଥାଏ । ତେଣୁ ଭାଷା ସହ ନାରୀମାନେ ଯେ ବିଶେଷ ପରିମାଣରେ ସଂପୃକ୍ତ, ଏହାକୁ ଅସ୍ୱୀକାର କରିହେବ ନାହିଁ । ପୁଣି ଏହି ଭାଷା ପୃଥିବୀର ବିଭିନ୍ନ ଅଞ୍ଚଳରେ ବିଭିନ୍ନ ପ୍ରକାରେ ପ୍ରଚଳିତ । ଯେ କୌଣସି ଭାଷାର ପ୍ରକୃତ ସ୍ୱରୂପକୁ ଉନ୍ମୋଚନ କରିବାକୁ ହେଲେ ଆମକୁ ସେହି ନିର୍ଦ୍ଦିଷ୍ଟ ଅଞ୍ଚଳର ନାରୀମାନଙ୍କ ନିକଟକୁ ଯିବାକୁ ପଡ଼ିବ । ପୁଣି ସେ ସହରୀ ନାରୀ ହୋଇ ନଥିବ, ହୋଇଥିବ ନିପଟ ପଲ୍ଲୀର ଅଶିକ୍ଷିତା ନାରୀ । ଏହି ନାରୀ ମୁଖ୍ୟତଃ ରକ୍ଷଣଶୀଳା । ତା'ର ଏହି ରକ୍ଷଣଶୀଳ ମନୋବୃତ୍ତିରୁ ଭାଷାର ଆଦିମ ରୂପ ଦେଖିବାକୁ ମିଳିଥାଏ । ଆଲୋଚନାର ସୌକର୍ଯ୍ୟ ଦୃଷ୍ଟିରୁ ନିମ୍ନରେ ଓଡ଼ିଆଣୀର ଭାଷା ସଂପର୍କରେ ସମ୍ୟକ୍ ଦୃଷ୍ଟିପାତ କରାଯିବା ଆବଶ୍ୟକ ମନେହୁଏ ।

ଓଡ଼ିଆଣୀର ଭାଷା ଓଡ଼ିଆ । ଏହା ପୁରୁଷଙ୍କ ପରିମାର୍ଜିତ କିମ୍ବା ସାହିତ୍ୟିକ ଭାଷା ନୁହେଁ । ନିଛକ ଗାଉଁଲି ଲୋକ ଭାଷା ହେଉଛି ଓଡ଼ିଆଣୀର କଥିତ ଭାଷା । ଏଥିରେ କୃତ୍ରିମତାର ଆବରଣ ନଥାଏ କିମ୍ବା ଅଳଙ୍କାରର ଛଟା ନଥାଏ । ଥାଏ କେବଳ ଅଗଣିତ ଜନସାଧାରଣଙ୍କ ହୃଦୟକୁ ସ୍ପର୍ଶ କଲାଭଳି ସରଳ ଭାବର ବିନ୍ୟାସ । ନିପଟ ପଲ୍ଲୀ ଅଞ୍ଚଳରେ ବାସ କରୁଥିବା ନାରୀ ମୁଖରୁ ପ୍ରକୃତ ଓଡ଼ିଆ ଭାଷା ଶୁଣିବାକୁ ମିଳିଥାଏ । "ସ୍ତ୍ରୀର ବେଷ୍ଟନୀ ସୀମାବଦ୍ଧ । ମେଳଣ ପାତ୍ରା ଛଡ଼ା ସେ ପ୍ରାୟ ବାହାର ଦୁନିଆର ସଂପର୍କରେ ଆସେ ନାହିଁ । ନିଜର କ୍ଷୁଦ୍ର ସଂସାର ଚକ୍ରରେ ସେ ଅହରହ ଘୂରୁଥାଏ । ଘର କନ୍ତାଳ, ପିଲାଝିଲା ଛଟାରେ ତା'ର ଜୀବନ ଗଢ଼ିଯାଏ । ବିଶାଳ ଜଗତର ଅଗଣିତ ପଦାର୍ଥର ନାମ ଜାଣିବାର ସୁଯୋଗ ତା'ର କାହିଁ ? ବାଣିଜ୍ୟ, ବ୍ୟବସାୟ, ରାଜନୀତି ଓ ଅର୍ଥନୀତିର ତଥ୍ୟମୂଳକ ଶବ୍ଦ ଜାଣିବ କିପରି ? ଦର୍ଶନ, ଜ୍ୟୋତିଷ, ବିଜ୍ଞାନ, ଇତିହାସ, ଭୂଗୋଳ, ତା' କଳ୍ପନାର ପରିସର ମଧ୍ୟରେ ଆସିବ କାହୁଁ ? ଅଳ୍ପ ସଂଖ୍ୟକ ଶବ୍ଦ କୃପଣର ଅମୂଲ୍ୟ ସଂପତ୍ତି ପରି ସେ ତା'ର ମାନସିକ ଅଭିଧାନରେ ସାଇତି ରଖିଛି ।" (ଓ : ଲୋ : କା— ଡକ୍ଟର କୁଞ୍ଜ ବିହାରୀ ଦାଶ—ପୃ ୫୧୭) ସେଇଥିରୁ ହିଁ ସେ ଶବ୍ଦ ଯୋଡ଼ି ସେ ତା'ର ଭାବର ଆଦାନ ପ୍ରଦାନ କରୁଅଛି । ମାଆର କଥା ଅଜ୍ଞାନ ଶିଶୁ ସହଜରେ ବୁଝେ । ଗୋପବନ୍ଧୁ ଦାଶଙ୍କ ମତାନୁଯାୟୀ ପଲ୍ଲୀର ଓଡ଼ିଆ ଯେଉଁ ଭାଷାକୁ ବୁଝେ ତାହାହିଁ ଯଥାର୍ଥ ଓଡ଼ିଆ ଭାଷା । ଏହି ଉକ୍ତିକୁ ଅସ୍ୱୀକାର କରାଯାଇ ନପାରେ ।

'ମାଆ' ସନ୍ତାନ ସନ୍ତତିର ଜେତେ ଆପଣାର । ସନ୍ତାନର ଅନ୍ତଃମନକୁ ପରିବର୍ତ୍ତନ କରିବାକୁ ଚେଷ୍ଟାକରି ମାଆ ଶିଶୁକୁ କୋଳରେ ଧରି ବୋହୂଲଇ ବୋହୂଲର ଗୀତ ଗାଏ–"ଝୁଲରେ ହାତୀ ଝୁଲୁ/ବାଆପାଣି ଖାଇ ବୁଲୁ । ମାଆର ବାରମ୍ବାର ଏହିଗୀତ ଆବୃତ୍ତିରେ ଶିଶୁର ମନ ପରିବର୍ତ୍ତନ ହୁଏ । ଆଖିପତା ଆସ୍ତେଆସ୍ତେ ବନ୍ଦ ହୋଇଆସେ । ତା'ପକ୍ଷେ ମାଆ ସନ୍ତାନର କାଂକାନରୁ ମୁକ୍ତିପାଇ ଗୃହକାର୍ଯ୍ୟରେ ନିଜକୁ ସାମିଲ କରେ । ମାଆ ତା'ସନ୍ତାନର ଆଖିରେ ଲୁହ, ମନର କୋହକୁ ସହ୍ୟ କରିପାରେ ନାହିଁ । ସନ୍ତାନର ବିରସ ମନକୁ ଲକ୍ଷ୍ୟକରି ସେ ଆଶ୍ୱାସନାବାଣୀ ଶୁଣାଏ, ହୋଇଥାଇ ପଛେ ସେ ଗରିବ ଘରର ମାଆ । ସନ୍ତାନର ମଳିନ ମୁଖକୁ ଦେଖି ସେ ପଚାରେ "କାହିଁକି ରଡୁଛୁ ମାଆ, ଆ ଗାଧୋଇବୁ । ତୋର କୋଉ କଥାରେ ଜଣାହେଲା ? କିଏ ମାରିଲା ? କିଏ ଗାଳି ଦେଲା ଜାଣିଥିଲେ ଖୋଳିଦେବି, ଭାଙ୍ଗିଥିଲେ ଗଢ଼ାଇଦେବି ଇତ୍ୟାଦି (ଉଅପୋଇ–ଲେ: ଗ: ସଂ–ପୃ-୪୫୮) । ଏତଦ୍‌ବ୍ୟତୀତ ଅକ୍ଷର-ଜଡ଼ି, ରଙ୍ଗୁଣୀଧନ, ଦୁଃଖ ପାଶୋରା ପୁଅର ଦୀର୍ଘଜୀବନ କାମନା କରିବା ସମୟରେ ମାଆ ମୁଖରୁ ସ୍ୱତଃ ବାହାରିପଡ଼େ– "ବାପରେ, ତୁ ଚିରଜିବୀ ହୋଇଥା । ତୋ ଦଶାତଳ ମତେ ଆଡ଼ିଥିବ୍ରିବେ । ତୋତେ ଆଖିପୁରାଇ ଦେଖୁଦେଖୁ ମୋ ଜୀବଯାଉ । ଏହିପରି ଓଡ଼ିଆ ମାଆ ମୁଖରୁ ଅନେକ କଥାର ସୃଷ୍ଟି ହୁଏ । କେବଳ ଏତିକି ନୁହେଁ ଓଡ଼ିଆ ନାରୀମାନଙ୍କର କଥୋପକଥନ ସମୟରେ ବିଭିନ୍ନ ପ୍ରକାର ଶବ୍ଦର ବ୍ୟବହାର ଶୁଣିବାକୁ ମିଳେ । ସ୍ୱାମୀସହ ସ୍ତ୍ରୀ କଥା ହେବାବେଳେ ଅଭିମାନ ଜନିତ କଥା ତା'ମୁଖରୁ ନିର୍ଗତ ହୋଇଥାଏ । ବିରକ୍ତ ପରିସ୍ଥିତିରେ ସେ ରୁକ୍ଷ, ଅମାର୍ଜିତ ଭାଷାର ଆଶ୍ରୟ ନେଇଥାଏ । ସେହିପରି ଓଡ଼ିଆ ସମାଜର ସାଧାରଣ ନାରୀ, ବୃଦ୍ଧା, ରାଜଜେମା, ରାଣୀ, ସଖୀ, ଦାସୀ, ପୋଇଲି, ମାଳୁଣୀଙ୍କ ମୁଖରୁ ବିଭିନ୍ନ ଢଙ୍ଗର କଥାଭାଷାର ରୂପରେଖ ଲକ୍ଷ୍ୟ କରାଯାଇପାରେ । ଓଡ଼ିଆଣୀ ତା'ର ଦୈନନ୍ଦିନ କଥୋପକଥନ ସମୟରେ ମଧ୍ୟ ବ୍ୟଙ୍ଗାତ୍ମକ ଭାବରେ ତା'ର ଅନ୍ତର୍ନିହିତ କଥାକୁ ବ୍ୟକ୍ତ କରିଥାଏ । ଏସବୁ ସତ୍ତ୍ୱେ ଓଡ଼ିଆଣୀ ସଂଖ୍ୟାଧିକ ପ୍ରବଚନ ଓ ଢଗର ଆଶ୍ରୟ ନେଇଥିବା ଓଡ଼ିଆ ଲୋକଗଳ୍ପଗୁଡ଼ିକରୁ ଜଣାଯାଏ । ବର୍ତ୍ତମାନ ନିମ୍ନରେ ଓଡ଼ିଆଣୀର ମୁଖନିସୃତ ଭାଷାକୁ ସଂକ୍ଷେପରେ ଆଲୋଚନା କରାଯାଉଛି ।

ଓଡ଼ିଆଣୀ ଲଜ୍ଜାଶୀଳା । ମନକଥା ମନରେମାରି, ଆଖିରପାଣି ଆଖିରେ ଶୁଖିଯାଏ ସିନା, ତା ମନକଥା ଖୋଲି-ଖୋଲି ପ୍ରକାଶ କରିବାକୁ ସେ ସାହସ କରିପାରେ ନାହିଁ । ତା'ର ବିବାହ ବୟସ ଉପସ୍ଥିତ ହେଲେ ତା'ମନ ଖୋଜିବୁଲେ ମନର ମଣିଷଟିକୁ । ମନଲାଖି ପୁରୁଷସହ ପାଣିଗ୍ରହଣ କରିବାକୁ ସେ ଆଶାୟୀ ହୋଇଉଠେ । ମନକଥା ପିତା ଆଗରେ ବ୍ୟକ୍ତ କରିନପାରି ମନମାରି ବସେ । ମୁଖ ତା'ର ବିଷର୍ଣ୍ଣ ଦେଖାଯାଏ । ମାଆ ଜାଣେ ଝିଅ ମନର ଯନ୍ତ୍ରଣା । ସେ ସମୟ ଦେଖି ଏକାନ୍ତରେ ସ୍ୱାମୀଙ୍କୁ କହେ, ଝିଅଲଗି ବରପାତ୍ରଟିଏ ଯୋଗାଡ଼ କରିବାକୁ । ବିଚରା ସ୍ୱାମୀ ଗାଁ ବୁଲି ଝିଅ ପାଇଁ ବର ଯୋଗାଡ଼କରେ । ପିତା ମନୋନୀତ ବର ଝିଅ ଆଖିକୁ ପସନ୍ଦ ନହିଁଲେ ଝିଅ ମନମାରି ରହେ । ସ୍ତ୍ରୀ ବିରକ୍ତ ହୋଇ ସ୍ୱାମୀଙ୍କୁ କହେ–ସେତେବେଳେ ତମେ ଜାଣ ପିଠେ । ତମ ମନ କାହିଁକି ଶାନ୍ତି ହେବ ? ନହେଲେ କି ବାସ୍‌ କାସ୍ ମୋର ସୁନା ପ୍ରତିମା ଝିଅକୁ ଖୁଣ୍ଟରେ ବୁଢ଼ୀ କରୁଥାଅନ୍ତ ? ଆପେ ନିହାଲ ହୋଇ ବସିଛ; ଛ'ମାସକେ ଅରଣା ମଇଁଷିପରି କାହିଁ ଗୋଟେ ଭୁଷଣ୍ଡା ଟୋକା ଧରି ଆଣୁଛ । କହୁଛ କ'ଣନା ଝିଅ ଝିଅ କେମିତି ମଙ୍ଗିବ ଭଲ ? ତା'ସମ ସରିଶା ହେ (ଯୋହା ଲାଖି ଯିଏ–ଲେ; ଗ; ସଂ–ପୃ ୩୨୪୦) ସ୍ତ୍ରୀର ଯେଉଁ ଝିଙ୍ଗାସ ବଚନ ପ୍ରକାଶ ପାଇଛି, ସେଥିରେ ଥି ଶବ୍ଦ ଶାନ୍ତି ହେବ, ଖୁଣ୍ଟରେ ବୁଢ଼ୀ କରୁଥାଆନ୍ତ, ଅରଣା ଭୁଷଣ୍ଡା ଟୋକା, ମଙ୍ଗୁନି, ସମସରିଶା, ଝିଙ୍ଗାସ ଏସ ଗ୍ରାମ୍ୟ ନାରୀର ଭାଷା ବ୍ୟତୀତ ଆଉ କ'ଣ ହୋ ଏହାଛଡ଼ା ଓଡ଼ିଆଘରର ମାଆ ତା' ସନ୍ତାନକୁ ନାଁରେ ଡାକେ–ଲବଣୀ ପିତୁଳା (ଲେ; ଗ. ସଂ–ପୃ ସୁନା ପ୍ରତିମା (ପୃଷ୍ଠା ୧୧୪, ରଙ୍ଗୁଣୀଧନ, ଅନ୍ଧର ଏକଇର ବଳା (ପୃଷ୍ଠା ୧୫୦), ବିଶିକେଶନ (ପୃ ଇତ୍ୟାଦି । ଓଡ଼ିଆଣୀ ମୁଖରୁ କେବଳଯେ ଉପରୋକ୍ତ ଭ ଛୁଟେ ତାହା ନୁହେଁ, ସେ ସାଂକେତିକ ଭାଷା ମଧ୍ୟ ଏହାର ଦୃଷ୍ଟାନ୍ତଟିଏ ନିମ୍ନରେ ଉଦ୍ଧାର କରାଯାଇପା

ଓଡ଼ିଆଣୀ ଗୃହଭିତରେ ଆବଦ୍ଧ ଥିଲେ ସୁଦ୍ଧା ସେ ବହୁ ଅନୁଭୂତି ସଂପନ୍ନ ବ୍ୟକ୍ତି ସଂସ୍ପର୍ଶରେ ଆସିଥା ପାଠ ନ ପଢ଼ି ମଧ୍ୟ ସେ ପାଠୋଇ । ସାଂକେତିକ ତା'ର ମତବ୍ୟକ୍ତକରି ଅଭିଳାଷ ପୂରଣ କରିବାରେ ନିପୁଣା, ସେହିପରି ଜଟିଳ ପ୍ରଶ୍ନ ଉପସ୍ଥାପନ କରି ଉ କରିବାରେ ସେହିପରି ଧୂରୀଣା । ଆଲୋଚ୍ୟ "ବାଳମୁକୁଳାଛାଇ" (ଲେ; ଗ; ସଂ– ପୃ ୪୯ ଜଣେ କୁମାରୀ ନଈରୁ ପାଣି ନେଇ ଘରକୁ ପ୍ରତ୍ୟାବର ସମୟରେ ରାସ୍ତାରେ ଜଣେ ଅପରିଚିତ ଯୁବକଟିକୁ ପାଇଲା । ଯୁବକର ସଂଦର୍ଶନରେ କୁମାରୀ ତା ସ କଥାଭାଷା ହେବାକୁ ମନ ହାଉଁପାଉଁହେଲା । ହେ ଫିଟିଲାନାହିଁ । କୋଉ ଦେଶର ଲୋକଟିଆ ସେ, ସେବି ସ୍ପୃହି ରହିଲା । ସତେ ଯେମିତି ତା'ରୂପକୁ ପିଇଯାଉଟି ଭୁଲିଯାଉଥିବା ଦେଖି ଯୁବକ ପଚାରିଲା ଗାଁରେ ରାତିକ କେଉଁଠି ଟିକିଏ ଥାନ ମିଳିବ ? ଯୁବତୀ କହିଲା–

"ବାଳ ମୁକୁଳା ଛାଇ
ଶୀତଳ ଛାମୁଣ୍ଡାଘର
ଶୀତ ନ ଛାଡ଼ିବା ନିଥାଁ ।"

(ବାଳମୁକୁଳାଛାଇ–ଲେ: ପ: ସଂ

ଯୁବକ ଯୁବତୀ ମୁଖରେ ଭାଷା ବୁଝିନପାରି ଏହାର ଅର୍ଥକ'ଣ ବୁଝାଇଦେବା ପାଇଁ ଅନୁରୋଧ କହିଲା–ବାଳମୁକୁଳା ଛାଇର ଅର୍ଥ ଶାଳୁରିଗଛ ଛାମୁଣ୍ଡାଘର ହେଉଛି, ଯାହା ଦୁଆରେ କୁଞ୍ଜଲତା ହୋଇଥିବା ଛାମୁଣ୍ଡିଆ ଅଛି । ଶୀତ ନଛାଡ଼ିବା ନି ଅଗ୍ନି ନିଆଁଥିବା ଲହେଇ । ଯୁବକ, ଯୁବତୀର ଜାଣିପାରି କୁମାରୀର ଗୃହରେ ପହଂଚିଗଲା । ନିଜକୁ ଧନ୍ୟ ମନେକଲା ।

ସେହିପରି ଓଡ଼ିଆଘରର ସ୍ତ୍ରୀ ତା'ନିଜର ଅପା ସ୍ୱାମୀଙ୍କୁ ଉପାର୍ଜନକ୍ଷମ କରାଇବାପାଇଁ କିପରି ଶି ତାହା "ଲୋକ କେ ମାତା, ଧନକେ ପିତା–ବେଳେ ବେ

ସେନେକେ ଭାର୍ଯ୍ୟା, ଅସମୟକେ ମିତ ।"(ସାଧବର ସାନପୁଅ– ଲୋ: ଗ: ସଂ–ପୃ ୫୦୪) ଉକ୍ତିରୁ ସ୍ପଷ୍ଟରୂପେ ଜଣାଯାଇଥାଏ । କେବଳ ଏତିକି ନୁହେଁ, ଓଡ଼ିଆଣୀ ମୁଖରୁ ସୃଷ୍ଟିଲାଭ କରିଥିବା ସଂଖ୍ୟାଧିକ ପ୍ରବଚନର ରୂପକୁ ଓଡ଼ିଆ ଲୋକଗଳ୍ପଗୁଡ଼ିକରୁ ଉଦ୍ଧାର କରାଯାଇପାରେ ।

ପ୍ରବାଦ–ପ୍ରବଚନ ଲୋକ ସାହିତ୍ୟର ଏକ ଅଂଶ ବିଶେଷ । ସାଧାରଣତଃ ଗ୍ରାମୀଣ ସମାଜରେ ଏହାର ବ୍ୟବହାର ବେଶୀ । ପ୍ରବଚନରୁ ଜାତିର ସଂସ୍କୃତିକୁ ସହଜରେ ଉପଲବ୍ଧି କରାଯାଇଥାଏ । ଏହି ପ୍ରବଚନ ଯଥାର୍ଥରେ ଲୋକମାନସର ଅନାବିଳ ପ୍ରକାଶ । ତେଣୁ ବେଦବାଣୀପରି ଏଗୁଡ଼ିକ ଯଥାର୍ଥରେ ଅପୌରୁଷେୟ" । (ପ୍ରବାଦ ଓ ପ୍ରବଚନ ସଂଗ୍ରହ–ସର୍ବେଶ୍ୱରଦାସ–ଭୂମିକା–୧) ପ୍ରତ୍ୟେକ ଭାଷାର ଲୋକେ ସେମାନଙ୍କ ଦୈନନ୍ଦିନ ଜୀବନ-ଯାପନ କ୍ଷେତ୍ରରେ ସଂଖ୍ୟାଧିକ ପ୍ରବାଦ–ପ୍ରବଚନ ବ୍ୟବହାର କରିଥାନ୍ତି । କିନ୍ତୁ ଦେଖାଯାଏ ଭାରତୀୟ ଅନ୍ୟାନ୍ୟ ଭାଷାରେ ବ୍ୟବହୃତ ପ୍ରବାଦ–ପ୍ରବଚନ ତୁଳନାରେ ଓଡ଼ିଆ ଭାଷାରେ ବ୍ୟବହୃତ ପ୍ରବାଦ–ପ୍ରବଚନର ପରିମାଣ କିଛି କମ୍ ନୁହେଁ । ସ୍ତ୍ରୀ-ପୁରୁଷ ଉଭୟେ ଏହାର ପ୍ରୟୋଗ କରିଥାନ୍ତି । ବର୍ତ୍ତମାନ ଓଡ଼ିଆ ଲୋକ ଗଳ୍ପଗୁଡ଼ିକରୁ ମିଳୁଥିବା ନାରୀମୁଖରେ ପ୍ରଚଳିତ ପ୍ରବାଦ–ପ୍ରବଚନଗୁଡ଼ିକୁ ଉଲ୍ଲେଖ କରାଯିବାର ପ୍ରୟାସ କରାଯାଉଛି ।

(୧) ଯାହା କରିବେ ସାଇଁ ତାହା କାହାରି ହାତରେ ନାହିଁ– ଆରେ ଆରେ କେଶରୀ–ଲୋ:ଗ: ସଂ–ପୃ–୧୧୮

(୨) ଅବିଶ୍ୱାସୀକି ପାଠଶିଖାଇ ଦେଲେ ଏଇ ଫଳମିଳେ– (ଲୋ: ଗ: ସଂ–ପୃ ୧୬୭)

(୩) ଖଡ଼ିକି ନୁହନ୍ତି କି ପେଡ଼ିକି ନୁହନ୍ତି–(ତତ୍ରୈବ–ପୃ୧୯୩)

(୪) ଖଜୁରୀ ଗଛର ବିଗୁଣ ଗାଇବି ମୂଳରୁ ପାହାଚ ପାହାଚ– (ତତ୍ରୈବ–ପୃ ୧୯୮)

(୫) ଯେତେହେଲେ ଗଛକୁ କ'ଣ ଫଳପିତା–ତତ୍ରୈବ ପୃ୩୨୫

(୬) ସଞ୍ଜେ ଫୁଟି ସକାଳେ ଯା–କହ୍ନିଫୁଲପରି ଆଉଷ ଯା– (ତତ୍ରୈବ–ପୃ ୩୫୮)

ଉପରୋକ୍ତ ପ୍ରବାଦ–ପ୍ରବଚନ ଓ ତା' ଅନ୍ତରର କଥାକୁ ଓଡ଼ିଆଣୀ ତା'ର ଦୈନନ୍ଦିନ ଜୀବନଯାପନ ମଧ୍ୟରେ ବ୍ୟବହାର କରୁଥିବା ଲକ୍ଷ୍ୟ କରାଯାଏ । ଏତଦ୍‌ବ୍ୟତୀତ ଓଡ଼ିଆ ପରିବାରର ନାରୀମାନେ ବିଭିନ୍ନ ପରିସ୍ଥିତିର ସମ୍ମୁଖୀନ ହୋଇ ନାନାଦି ଗାଳିଗୁଲଜ କରୁଥିବାର ଦୃଷ୍ଟି ଗୋଚର ହୁଏ । କେହିକେହି ସ୍ନେହରେ କିମ୍ବା ଥଟ୍ଟାରେ 'ଶାଶୁଖିଆ' ବୋଲି ଗାଳି କରିଥାଆନ୍ତି । ଆଉ କେହିକେହି କ୍ରୋଧାନ୍ୱିତହୋଇ ଗାଳିବର୍ଷଣ କରିଥାନ୍ତି । ଓଡ଼ିଆ ଲୋକଗଳ୍ପଗୁଡ଼ିକରୁ ମିଳୁଥିବା 'ଗାଳି'ଗୁଡ଼ିକ ଓଡ଼ିଆ ସମାଜର ସାଧାରଣ ପରିବାର ଓ ନୀଚମନା ନାରୀମାନଙ୍କର ମୁଖରୁ ଶୁଣିବାକୁ ମିଳିଥାଏ । ସେ ସବୁ ଗାଳିମଧ୍ୟରେ 'ରାଇକଳା' (ଲୋ: ଗ: ଓ ସଂ-ପୃ ୧୪୩ ସମ୍ବଲପୁର ଛିଦରଖିଆ, ବାରଦୁଆରିଆ (ତତ୍ରୈବ–ପୃ ୨୩୦ ସମ୍ବଲପୁର) ନଇଶୁଆ, (ତତ୍ରୈବ–ପୃ ୨୯୧ ଢେଙ୍କାନାଳ) ଗଛକଳା, ଗାତପଶା, (ତତ୍ରୈବ–ପୃଷ୍ଠା ୩୬୫ ପୁରୀ) ପୁତଖାଇ (ତତ୍ରୈବ–ପୃଷ୍ଠା ୩୬୬ ପୁରୀ) ଗାତଶୁଆ (ଓ: ଓ: ବ୍ରତକଥା ପୃ ୧୬ ) ଖଣ୍ଡାଖାଇ, ମଣ୍ଡାଛଳି ( ଓ. ଓ: ବ୍ରତକଥା-ପୃ ୧୩୬ ) ଅଳପେଇସିଆ (ଲୋ: ଗ: ସଂ ପୃଷ୍ଠା ୧୭୩ ଗଂଜାମ) ଇତ୍ୟାଦି ଉଲ୍ଲେଖନୀୟ ।

ଓଡ଼ିଆଘରର ନାରୀ ମୁଖ୍ୟତଃ ରକ୍ଷଣଶୀଳା ଥିବାରୁ ବାହ୍ୟଜଗତ ସହିତ ତା'ର ସଂପର୍କ ଘନିଷ୍ଠ ନୁହେଁ । ତେଣୁ ତା' ଭାଷାରେ କୌଣସି ପରିବର୍ତ୍ତନର ରୂପ ଦେଖିବାକୁ ମିଳେନାହିଁ । ଉପରୋକ୍ତ ଆଲୋଚନାରୁ ଓଡ଼ିଆଣୀର ଭାଷା ସଂପର୍କରେ ସମ୍ୟକ୍ ପରିଚୟ ଉପଲବ୍ଧି କରାଯାଇପାରେ ।

---

ଗବେଷକ, ଓଡ଼ିଆ ବିଭାଗ
ବ୍ରହ୍ମପୁର ବିଶ୍ୱବିଦ୍ୟାଳୟ
ଭଂଜବିହାର–୭୬୦୦୦୭






OGP—MP-VI (I.&P.R.) 67—10,000—19-1-1987



✽ ସଂସ୍କୃତ କାବ୍ୟକବିତାରେ ଆଧୁନିକ ସୌନ୍ଦର୍ଯ୍ୟବୋଧ :
ଆଲୋଚନା ଚକ୍ର ଉଦ୍‌ଘାଟନ...

✽ କେନ୍ଦୁଝରରେ ଲେଖକ ସାମ୍ବାଦ
ସମ୍ମିଳନୀ ଉଦ୍‌ଘାଟନ....

